

# ମୂକ ଜନତାର ନାୟକ
# ବାବା ସାହେବ ଆମ୍ବେଦକର

ସୌରୀବନ୍ଧୁ କର

ମହାବୀର ପ୍ରକାଶନ
ମ୍ୟୁନିସପାଲ ମାର୍କେଟ କମ୍ପ୍ଲେକ୍ସ,
ପୁରୁଣା ବସ୍‌ଷ୍ଟାଣ୍ଡ ସାମ୍ନା, ଭୁବନେଶ୍ୱର-୯

# ମୂକ ଜନତାର ନାୟକ
# ବାବା ସାହେବ ଆମ୍ବେଦକର
(ଜୀବନୀ)

ଲେଖକ : ସୌରୀବନ୍ଧୁ କର

ପ୍ରକାଶକ :
ମହାବୀର ପ୍ରକାଶନ,
ସପ୍ ନଂ-୪୦, ମ୍ୟୁନିସିପାଲ ମାର୍କେଟ୍ କମ୍ପ୍ଲେକ୍ସ,
ପୁରୁଣା ବସ୍‌ଷ୍ଟାଣ୍ଡ ପାଖ, ଭୁବନେଶ୍ୱର-୭୫୧୦୦୯

ଅକ୍ଷର : ଗୀତା ପ୍ରେସ୍ ଆଣ୍ଡ ପବ୍ଲିକେଶନ୍ସ,
୯- ଷ୍ଟେସନସ୍କୋୟାର, ଭୁବନେଶ୍ୱର-୯

ମୁଦ୍ରଣ : ପଦ୍ମା କର୍ମସିଆଲ ସେଣ୍ଟର, ଭୁବନେଶ୍ୱର

ପ୍ରଚ୍ଛଦ : ଶ୍ରୀ ବିଜୟ କୁମାର ପ୍ରଧାନ

ପ୍ରଥମ ପ୍ରକାଶ : ୨୦୦୩

ମୂଲ୍ୟ : ଟ ୭୫.୦୦

I.S.B.N. 81-87989-24-6

**MUKA JANATA RA NAYAKA**
**BABA SAHEB AMBEDKAR**
(A Life Sketch)

Author :
**Souribandhu Kar**

Published By :
**Mahavir Prakashan**
Shop No.40, Municipal Market Complex,
Near Old Bus Stand, Bhubaneswar-9

Laser Typeset :
**Gita Press & Publications,**
9-Station Square, Bhubaneswar-9

Printed at :
**Padma Commercial Centre, BBSR**

Cover Designed By :
**Shri Bijay Kumar Pradhan**

First Edition : **2003**

Price : **Rs. 75.00**

**I.S.B.N. 81-87989-24-6**

# ଏ ବହି ସମ୍ପର୍କରେ ମୋର କିଛି ବକ୍ତବ୍ୟ

ଆମ୍ବେଦକରଙ୍କ ସମ୍ପର୍କରେ ବହିଟିଏ ପ୍ରସ୍ତୁତ କରିବା ଏକ ମାମୁଲି ବା ସାଧାରଣ ଘଟଣା ନୁହେ । କାରଣ ସେଥିପାଇଁ ଲୋଡା କଠିନ ଅଧବସାୟ, ଅକ୍ଳାନ୍ତ ପରିଶ୍ରମ ଓ ଏକନିଷ୍ଠ ଭାବନା । ଛାତ୍ରଜୀବନରୁ ନିଜର ନିଷ୍ପେଷିତ ଜୀବନ ସଂଗ୍ରାମରେ ଯେଉଁମାନଙ୍କ ଜୀବନୀ ପଢ଼ି ପ୍ରେରଣା ପାଇବାର ସୁଯୋଗ ମିଳିଥିଲା ସେମାନେ ଥିଲେ ସ୍ୱାମୀ ବିବେକାନନ୍ଦ ଓ ମହାତ୍ମାଗାନ୍ଧି । ପରବର୍ତ୍ତୀ ସମୟରେ ଏହି ଦୁଇ ମହାପୁରୁଷଙ୍କ ସହିତ ମୋ ବିଚାର ପରିସରକୁ ଆସିଲେ କାର୍ଲ ମାର୍କସ ଓ ବାବା ସାହେବ ଆମ୍ବେଦକର । ବାବା ସାହେବ ଆମ୍ବେଦକରଙ୍କର ଜନ୍ମ ଶତବାର୍ଷିକୀ ଅବକାଶରେ ପିଲାଙ୍କ ପାଇଁ ଗୋଟିଏ କ୍ଷୁଦ୍ର ପୁସ୍ତକ ରଚନା କରିଥିଲି ଏବଂ ତାହା ଆଦୃତ ହୋଇଥିଲା । ତାକୁ ପରିବର୍ଦ୍ଧିତ କରି ଆଉ ଗୋଟିଏ ବହି ତାଙ୍କ ସମ୍ପର୍କରେ ଲେଖିଲି । କିନ୍ତୁ ସେ ବହିଟି ଆମ୍ବେଦକରଙ୍କର ସଂଗ୍ରାମମୟ ଜୀବନ ଓ ବହୁମୁଖୀ ପ୍ରତିଭାକୁ ପୂର୍ଣ୍ଣରୂପେ ପରିସ୍ଫୁଟ କରି ପାରିନଥିବାରୁ, ଏ ବହିଟି ଲେଖିବାକୁ ଚେଷ୍ଟା କଲି ।

ପ୍ରାୟ ଦେଢ଼ବର୍ଷ ତଳୁ ପାଣ୍ଡୁଲିପିଟି ଶେଷ ହୋଇଥିଲା, ଏହାକୁ ସଂଶୋଧନ କରି କିପରି ଅଧିକ ଶାଣିତ କରାଯାଇପାରିବ ସେଥିପାଇଁ, ବାରମ୍ବାର ଚେଷ୍ଟା କରିଚାଲିଲି । ଅନେକ କାର୍ଯ୍ୟବ୍ୟସ୍ତତା, ମାନସିକ ଉଦ୍‌ବେଳନ ହେତୁ ଏହା ଅଯଥାରେ ପ୍ରାୟ ଦେଢ଼ବର୍ଷ ଘଡିଗଲା । ବହିଟିକୁ ପ୍ରକାଶ କରିବା ପାଇଁ ବଦ୍ଧ ପରିକର ହୋଇ ଅଧିକ ମନୋନିବେଶ ସହ ଏ କାର୍ଯ୍ୟରେ ଲାଗିଲି । ପରିଶ୍ରମର ଫଳ ସ୍ୱରୂପ ପାଣ୍ଡୁଲିପିଟି ପ୍ରସ୍ତୁତ ହେଲା ।

ଏଥିରେ ମୋ ଝିଅ ଶ୍ରଦ୍ଧେୟା ସୁପ୍ରିୟା ତା'ର ପରୀକ୍ଷାରେ ପ୍ରସ୍ତୁତି ଥିବା ସତ୍ତ୍ୱେ ସାହାଯ୍ୟ କଲା ଏବଂ ଅମୃତାୟନର ଶ୍ରଦ୍ଧେୟ ନିରଞ୍ଜନ ଓ ମହାବୀର ପ୍ରକାଶନର ଶ୍ରଦ୍ଧେୟ ରମାକାନ୍ତ ଏହାକୁ ପ୍ରକାଶ କରିବା ପାଇଁ ଦାୟିତ୍ୱ ନେଲେ । ଗଭୀର ମାନସିକ ଉଦବେଳନ ମଧ୍ୟରେ କାର୍ଯ୍ୟ କରୁଥିବା ଜଣେ ଲେଖକଙ୍କ ପରିଶ୍ରମ ଯେ

ବୃଥା ଯାଏ ନାହିଁ, ଏହା ପୁଣି ଥରେ ଏ ବହି ପ୍ରକାଶିତ ହେବା ଦ୍ୱାରା ପ୍ରମାଣିତ ହେଲା । ଏ ବହିଟିକୁ ଓଡ଼ିଶାର ଓ ବିବେକୀ ପାଠକ ମାନଙ୍କ ପାଖରେ ଦେବାର ଉଦ୍ଦେଶ୍ୟ ହେଲା ସେମାନେ ଆମ୍ବେଦକରଙ୍କର ଜୀବନ ଦ୍ୱାରା ଉଦ୍‌ବୁଦ୍ଧ ହୁଅନ୍ତୁ ବା ନ ହୁଅନ୍ତୁ, କିନ୍ତୁ ତାଙ୍କର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ବିଚାର ସମ୍ପର୍କରେ ଅଭିହିତ ହେବେ ଏବଂ ନୂତନ ଭାରତ ଗଠନରେ ନିଜ ନିଜର ବିଚାରକୁ ଯୋଗ କରିବେ ।

ବୁଦ୍ଧପୂର୍ଣ୍ଣିମା-୨୦୦୨ ସୌରୀବଂଧୁ କର

# ସୂଚୀପତ୍ର

## ଏଇ ଲେଖକଙ୍କ କଲମରୁ :-

| | | | |
|---|---|---|---|
| ୧. | ଇଚ୍ଛାର ନାମ ପୁତ୍ର | - | ଅନୁବାଦ ଉପନ୍ୟାସ |
| ୨. | ପ୍ରତିଦ୍ୱନ୍ଦୀ | - | ଅନୁବାଦ ଉପନ୍ୟାସ |
| ୩. | ପ୍ରଥମା | - | ଗଳ୍ପ ସଂକଳନ |
| ୪. | ନିଷ୍ପ୍ରଭ ଏକଲବ୍ୟ | - | ଗଳ୍ପ ସଂକଳନ |
| ୫. | ନରୋତ୍ତମ ଷଡଙ୍ଗୀର ଡାଏରୀ | - | ଗଳ୍ପ ସଂକଳନ |
| ୬. | ବଉଳର ମହକ | - | ଗଳ୍ପ ସଂକଳନ |
| ୭. | ଶ୍ରୀମଦ୍ ଭଗବତ ଗୀତା, ଭୋଳାନାଥ ବାବୁ ଓ ନରିଆ ପାନ ଦୋକାନୀ | - | ଗଳ୍ପ ସଂକଳନ |
| ୮. | ବେଦାନ୍ତର ସ୍ୱର | - | ପ୍ରବନ୍ଧ |
| ୯. | ମୋ ଭାଷା ମୋ ସାହିତ୍ୟ | - | ପ୍ରବନ୍ଧ |
| ୧୦. | ରାଷ୍ଟ୍ରନିର୍ମାତା ନେହେରୁ | - | ପ୍ରବନ୍ଧ |
| ୧୧. | ଗୁଜୁରାଟ ନିଆଁ ମାନବତାର ଯୁଇ | - | ପ୍ରବନ୍ଧ |
| ୧୨. | ବିବେକାନନ୍ଦ ବିଚାରଧାରା | - | ପ୍ରବନ୍ଧ |
| ୧୩. | ପରମହଂସ ଶ୍ରୀ ରାମକୃଷ୍ଣ | - | ଜୀବନୀ - ତୃତୀୟ ସଂସ୍କରଣ |
| ୧୪. | ସ୍ୱାମୀ ବିବେକାନନ୍ଦ | - | ଜୀବନୀ - ଦ୍ୱିତୀୟ ସଂସ୍କରଣ |
| ୧୫. | ସାଧୁ ସନ୍ଥ ମହାତ୍ମା | - | ଜୀବନୀ |
| ୧୬. | ବାବା ସାହେବ ଆମ୍ବେଦକର | - | ଜୀବନୀ |
| ୧୭. | ଯୁଗ ପ୍ରବର୍ତ୍ତକ ସ୍ୱାମୀ ବିବେକାନନ୍ଦ | - | ଜୀବନୀ-ଶିଶୁ ସାହିତ୍ୟ |
| ୧୮. | ବାବା ସାହେବ ଆମ୍ବେଦକର | - | ଜୀବନୀ-ଶିଶୁ ସାହିତ୍ୟ |
| ୧୯. | ଟଙ୍କା କେଉଁଠି ରଖିବ | - | ନିରନ୍ତର ଶିକ୍ଷା |
| ୨୦. | ସଞ୍ଚୟରେ ବଞ୍ଚିବ | - | ନିରନ୍ତର ଶିକ୍ଷା |
| ୨୧. | Swami Vivekananda & Vedantic Socialism | - | English |

## ୧-ସାମାଜିକ ସ୍ଥିତି-ପୂର୍ବାଭାସ

ଭାରତରେ ବାସ କରୁଥିବା ଅଛବ ସମ୍ପ୍ରଦାୟର ଏକ ଗରିବ ପରିବାରରେ ଆମ୍ବେଦକରଙ୍କର ଜନ୍ମ । ୧୯୫୦ରେ ଭାରତର ସମ୍ବିଧାନ ପ୍ରଣୟନ ହେବାପୂର୍ବରୁ ଭାରତର ଏହି ଅଛବ ସମ୍ପ୍ରଦାୟକୁ ତିନିଗୋଟି ଭାଗରେ ବିଭକ୍ତ କରାଯାଏ । (କ) ଅସ୍ପୃଶ୍ୟ ବା ଅଛୁଆଁ, (ଖ) ଅଦେଖା (ଗ) ଅମଡ଼ା ଅର୍ଥାତ୍ ଯାହାକୁ ଛୁଆଁ ଯାଏନାହିଁ, ଆଖିରେ ଦେଖାଯାଏ ନାହିଁ ଏବଂ ପାଖରେ ଠିଆ କରାଯାଏନାହିଁ ବା ବସା ଯାଏନାହିଁ ।

ସେତେବେଳେ ଭାରତର ତିରିଶ କୋଟି ଲୋକଙ୍କ ମଧ୍ୟରୁ ସେମାନଙ୍କ ସଂଖ୍ୟା ପ୍ରାୟ ଛ' କୋଟି । ସମୁଦାୟ ଲୋକ ସଂଖ୍ୟାର କୋଡିଏ ଭାଗ ଲୋକ ଅସ୍ପୃଶ୍ୟ । ଦେଶର ବିଭିନ୍ନ ସ୍ଥାନରେ ଏମାନଙ୍କର ନାନା ପ୍ରକାର ନାମ ଯଥା - ଅଜାତି, ଅଛବ, ଅଛୁଆଁ, ପରିହା, ପନଚୁମାସ, ଅତିଶୂଦ୍ର, ଅସବର୍ଣ୍ଣ, ଅନ୍ତଜା, ନାମଶୂଦ୍ର ।

ସେମାନଙ୍କର ସାମାଜିକ ଅକ୍ଷମତା ନିର୍ଦ୍ଦିଷ୍ଟ, କ୍ରୂର ଓ ବ୍ୟାପକ । ସେମାନେ ଛୁଇଁଲେ, ସେମାନଙ୍କର ଛାଇ ପଡିଲେ କିମ୍ବା ସେମାନଙ୍କର ସ୍ୱର ଶୁଣାଗଲେ ସବର୍ଣ୍ଣ ହିନ୍ଦୁମାନଙ୍କର ସବୁ ଯେପରି ଗୋଳମାଳିଆ ହୋଇଯାଏ । ସେମାନେ ଅପବିତ୍ର ପାଲଟି ଯାଆନ୍ତି । ପବିତ୍ର ହେବା ପାଇଁ ଗଙ୍ଗାଜଳରେ ସ୍ନାନ କରିବାକୁ ହୋଇଥାଏ ।

ସବର୍ଣ୍ଣ ହିନ୍ଦୁ ମାନଙ୍କର ରାସ୍ତାରେ ଯିବା ସେମାନଙ୍କ ପାଇଁ ନିଷିଦ୍ଧ । ସବର୍ଣ୍ଣ ହିନ୍ଦୁ ରାସ୍ତାରେ ଆସୁଥିବାର ଦେଖିଲେ ସେମାନେ ବାଟ ଭାଙ୍ଗି ଅଲଗା ହୋଇ ଚାଲନ୍ତି ଯେପରି ସବର୍ଣ୍ଣ ହିନ୍ଦୁର ଛାଇ ମଧ୍ୟ ସେମାନଙ୍କୁ ସ୍ପର୍ଶ ନ କରେ ।

ସେମାନଙ୍କୁ ଘରେ ଗୃହପାଳିତ ପଶୁ ରଖିବାକୁ ମନା । ଗହଣା ନାଇବାକୁ ବାରଣ । ଅଧାଲଙ୍ଗଳା, ଫୁଙ୍ଗୁଳା ଦେହ । ଜାମା ପିନ୍ଧିବାକୁ ଆକଟ ।

ସେମାନେ ରୁହନ୍ତି ସହର ତଳି ଅଞ୍ଚଳ ବସ୍ତିରେ ଯେଉଁଠି ନାଳ ନର୍ଦ୍ଦମା ବହୁଥାଏ, ଯାହା ଗାଁର ମଶାଣି ନିକଟବର୍ତ୍ତୀ ଏକଣା କୋଣର ଚାଳିଆ । ଅସ୍ୱାସ୍ଥ୍ୟକର ପରିବେଶ, ଫୁଙ୍ଗୁଳା ଓ ଅଧା ଫୁଙ୍ଗୁଳା ଦେହ ନେଇ ବଞ୍ଚନ୍ତି । ସେମାନଙ୍କର ଦୁଃଖର କାହାଣୀ, ଦୈନ୍ୟର କାହାଣୀ, ଯନ୍ତ୍ରଣାର କାହାଣୀ ଅବର୍ଣ୍ଣନୀୟ । ଅକଥନୀୟ କୁବ୍ୟବହାର, ଅମାନବୀୟ ଅଛୁଆଁ ଭାବର ତାଡ଼ନା ଓ

ଶିକ୍ଷାର ଆଲୋକରୁ ବଞ୍ଚିତ ହୋଇ ସେମାନେ ଜନ୍ମ ଗ୍ରହଣ କରନ୍ତି, ଜୀବନ କାଟନ୍ତି ଓ ମୃତ୍ୟୁରେ ସେଇଠି ପୋତି ପାଉଁଶ ହୋଇଯା'ନ୍ତି ।

ଆଧୁନିକ ଇତିହାସରେ ଅସ୍ପୃଶ୍ୟତା ଏକ କଳଙ୍କ । ବୈଦିକ ଯୁଗରେ ଜାତିପ୍ରଥାର ବ୍ୟବସ୍ଥା ନ ଥିବାବେଳେ ସମୟକ୍ରମେ ଚାରିଗୋଟି ବର୍ଣ୍ଣ ସୃଷ୍ଟି ହେଲା । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର । ଏହି ବର୍ଣ୍ଣ ରୂପାନ୍ତରିତ ହେଲା ଜାତିରେ । ଜାତି ସୃଷ୍ଟି କଲା ତିନିହଜାର ଉପଜାତି । ବଢ଼ି ଚାଲିଲା ବ୍ରାହ୍ମଣ୍ୟବାଦର ପଣ୍ଡୁଚ୍ଚ । ସେମାନେ ସବର୍ଣ୍ଣ ଭାବରେ ଆରମ୍ଭ କଲେ ଅତ୍ୟାଚାର ଅସବର୍ଣ୍ଣଙ୍କ ଉପରେ । ଏହି ଅସବର୍ଣ୍ଣ ମାନେ ହେଲେ ଶୂଦ୍ର, ଅଛୁଁଆ ଓ ଅସ୍ପୃଶ୍ୟ ।

ଏ ପ୍ରକାର ସାମାଜିକ ସ୍ଥିତି ବିରୁଦ୍ଧରେ ପ୍ରଥମେ ବିଦ୍ରୋହ ଘୋଷଣା କଲେ ବୁଦ୍ଧ । ହିନ୍ଦୁ ସମାଜକୁ ଏ ଯନ୍ତାରୁ ଉଦ୍ଧାର କରିବା ହେଲା ତାଙ୍କର ମୂଳଲକ୍ଷ୍ୟ । ତାଙ୍କର ଧର୍ମ ବୌଦ୍ଧଧର୍ମ ସମସ୍ତଙ୍କ ପାଇଁ ଦ୍ୱାର ମେଲା କରିଦେଲା ।

ଏକାଦଶ ଶତାବ୍ଦୀରେ ରାମାନୁଜ ମଠ ଓ ମନ୍ଦିରର ଦ୍ୱାର ଅସବର୍ଣ୍ଣ ମାନଙ୍କ ନିମିତ୍ତ ଉନ୍ମୁକ୍ତ କରିଦେଲେ । ପରବର୍ତ୍ତୀ ସମୟ ଭକ୍ତି ଆନ୍ଦୋଳନ । ଚକ୍ରଧର, ରାମାନନ୍ଦ, କବୀର, ଚୈତନ୍ୟ, ଏକନାଥ, ତୁକାରାମ, ରୋହିଦାସ ଓ ଚୋକମେଲା ଆଦି ସନ୍ଥମାନେ ଭକ୍ତି ମାଧ୍ୟମରେ ଅସ୍ପୃଶ୍ୟତାର ବିଲୋପ ପାଇଁ ଚେଷ୍ଟା କଲେ ।

ସାମାଜିକ ଓ ରାଜନୈତିକ ଭାବରେ ରାଜା ରାମମୋହନ ରାୟ ଏହାକୁ ଏକ ଆନ୍ଦୋଳନରେ ପରିଣତ କଲେ । ୧୮୪୮ ମସିହାରେ ମହାତ୍ମା ଜ୍ୟୋତିବା ଫୁଲେ ପୁନା ଠାରେ ଅସବର୍ଣ୍ଣଙ୍କ ପାଇଁ ପ୍ରତିଷ୍ଠା କଲେ ଏକ ବିଦ୍ୟାଳୟ । ଏ କ୍ଷେତ୍ରରେ ସ୍ୱାମୀ ଦୟାନନ୍ଦ ସରସ୍ୱତୀଙ୍କ ଭୂମିକା ମଧ୍ୟ ଗୁରୁତ୍ୱପୂର୍ଣ୍ଣ ।

ଖ୍ରୀଷ୍ଟିଆନ ମାନଙ୍କର ଆବିର୍ଭାବ ଦ୍ୱାରା ଅସ୍ପୃଶ୍ୟମାନଙ୍କର ସ୍ଥିତିରେ ବିଶେଷ କିଛି ଫଳ ମିଳିଲା ନାହିଁ । ବ୍ରିଟିଶ ସରକାର ଏ ସମ୍ପର୍କରେ ଗୁରୁତ୍ୱଦେଇ ନିର୍ଯ୍ୟାତନାରୁ ସେମାନଙ୍କୁ ରକ୍ଷା କରିବାକୁ ଚେଷ୍ଟା କଲେ ନାହିଁ । ବ୍ରାହ୍ମଣ ସମ୍ପ୍ରଦାୟ ମାନଙ୍କ ଦ୍ୱାରା ଅସବର୍ଣ୍ଣମାନଙ୍କର ଶିକ୍ଷା ପାଇଁ ବିରୋଧଭାବ ପ୍ରକଟିତ ହେଉଥିଲେ ମଧ୍ୟ କ୍ରମଶଃ ଅନ୍ୟାନ୍ୟ ଜାତିମାନଙ୍କ ପାଇଁ ବିଦ୍ୟାଳୟମାନ ଖୋଲିବାକୁ ଲାଗିଲା ।

ଖ୍ରୀଷ୍ଟିଆନ ପ୍ରଚାରକମାନେ ଏ ସୁଯୋଗର ଫାଇଦା ନେବାକୁ ଚେଷ୍ଟା

କଲେ । ସେମାନେ ଦଳିତ ମାନଙ୍କର ଶିକ୍ଷା ପ୍ରତି ଗୁରୁତ୍ୱ ଦେଲେ କାରଣ ସେମାନଙ୍କର ଉଦ୍ଦେଶ୍ୟ ଥିଲା ଭିନ୍ନ । ଯଦିଓ ସବର୍ଣ୍ଣ ମାନଙ୍କର ଅତ୍ୟାଚାରରୁ ଅସବର୍ଣ୍ଣମାନଙ୍କୁ ରକ୍ଷା କରି ପାରିଲେ ନାହିଁ ।

୧୮୫୬ ମସିହାରେ ଧାରାଓ୍ୱାର ସରକାରୀ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଜଣେ ଅଛୁଆଁ ଜାତିର ଛାତ୍ରକୁ ବିଦ୍ୟାଳୟରେ ପ୍ରବେଶ ପାଇଁ ଅନୁମତି ନ ଦେବା ଫଳରେ ଏହା ତତ୍କାଳୀନ ବମ୍ବେ ସରକାରଙ୍କର ଦୃଷ୍ଟି ଆକର୍ଷଣ କଲା । ସରକାର ଘୋଷଣା କଲେ ଯେ ସରକାରଙ୍କ ଦ୍ୱାରା ପରିଚାଳିତ ବିଦ୍ୟାଳୟ ମାନଙ୍କରେ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ପାଠ ପଢ଼ିପାରିବେ ।

କିନ୍ତୁ ଏହା କେବଳ କାଗଜ କଲମରେ ଲିପିବଦ୍ଧ ହୋଇ ରହିଲା । ହୁଏତ ବ୍ରିଟିଶ ସରକାର ପ୍ରତ୍ୟକ୍ଷ ଭାବେ ସେପରି କିଛି କଠିନ ପଦକ୍ଷେପ ନେଲେ ନାହିଁ କିନ୍ତୁ ଏହି ସମୟରେ ଅସବର୍ଣ୍ଣମାନେ ହିନ୍ଦୁ ସାମାଜିକ ଅନୁଷ୍ଠାନ ପ୍ରତି ସମସ୍ୟା ହୋଇ ଛିଡା ହେଲେ ।

ସେତେବେଳେ ଭାରତର ସାମାଜିକ ଆନ୍ଦୋଳନ ଆରମ୍ଭ ହୋଇଯାଇଥାଏ । ନୂତନ ଗୋଷ୍ଠୀ ଗଠନ ହୋଇ ସ୍ୱାଧୀନତା ଓ ଗଣତନ୍ତ୍ର ଶାସନ ବ୍ୟବସ୍ଥାରେ ଆଇନ୍ ଓ ଈଶ୍ୱରଙ୍କ ନିକଟରେ ସମସ୍ତେ ସମାନ ବୋଲି ଏହି ସମ୍ପ୍ରଦାୟ ନେତାମାନଙ୍କର ହୃଦବୋଧ ହେଉଥାଏ । ସମାଜ ସଂସ୍କାରକ ମାନେ ଜାତିପ୍ରଥା ରାଜନୈତିକ ଗଣତନ୍ତ୍ର ପାଇଁ ଉପଯୁକ୍ତ ନୁହେ ବୋଲି ମତ ପ୍ରକାଶ ପାଇଥାଏ ।

ସବର୍ଣ୍ଣ ବର୍ଗର ନେତୃମଣ୍ଡଳୀ ବ୍ରିଟିଶ ଶାସନ ବ୍ୟବସ୍ଥାରେ ଆର୍ଥିକ ଓ ରାଜନୈତିକ ସୁବିଧା ଲାଭ କରିବା ପାଇଁ ଆନ୍ଦୋଳନ ଆରମ୍ଭ କରୁଥିଲେ ହେଁ ସେମାନେ ସାମାଜିକ ସ୍ତରରେ ରକ୍ଷଣଶୀଳ ଥିଲେ । ସେମାନେ ହରିଜନମାନଙ୍କ ଅବସ୍ଥାରେ ପରିବର୍ତ୍ତନ ଘଟୁ, ଏକଥା ଆଦୌ ଚାହୁଁ ନଥିଲେ । କାରଣ ହରିଜନ ମାନଙ୍କୁ ଅଜ୍ଞ ଓ ଦରିଦ୍ର କରି ରଖିବାରେ ସେମାନଙ୍କର ସ୍ୱାର୍ଥ ନିହିତ ଥାଏ । ସେମାନେ ଶିକ୍ଷିତ ଓ ଚେତନଶୀଳ ହେଲେ ସବର୍ଣ୍ଣମାନଙ୍କ ସହିତ ସମାନ ଅଧିକାର ଦାବି କରି ବସିବେ, ଏ ଭୟ ସେମାନଙ୍କର ଥାଏ ।

ବ୍ରିଟିଶ ଶାସନ ବ୍ୟବସ୍ଥା ଫଳରେ ପ୍ରଥମ କରି ସମଗ୍ର ଭାରତ ଏକ ରାଜନୈତିକ ରାଷ୍ଟ୍ରଭାବେ ଉଭା ହେଲା । ଭାରତର ବୁଦ୍ଧିଜୀବୀ ଗୋଷ୍ଠୀ ଭାରତରେ ବ୍ରିଟିଶ ସାମ୍ରାଜ୍ୟର ପ୍ରତିଷ୍ଠାଦ୍ୱାରା ଅତୀତ ସହିତ ଏ ଦେଶର ଯୋଗସୂତ୍ର ଛିନ୍ନ

ହୋଇଯାଇଛି ଏବଂ ଏକ ନୂତନ ଐତିହାସିକ ଯୁଗ ଆରମ୍ଭ ହୋଇଯାଇଛି ବୋଲି ଅନୁଭବ କରି ତାହାର ସୁବିଧା ଓ ସୁଯୋଗ ନେବାକୁ ଯଦ୍‌ପରୋନାସ୍ତି ଚେଷ୍ଟା କଲେ ।

ଭାରତରେ ବୌଦ୍ଧିକ ଅଭ୍ୟୁଦୟ ଭାରତୀୟ ଜାତୀୟତାବାଦ ଉତ୍‌ଥାନରେ ଏକ ବିଶେଷ ଘଟଣା ହେଲେ ହେଁ, ଲୋକମାନଙ୍କର ନୈତିକ ଓ ଆଧ୍ୟାତ୍ମିକ ଉନ୍ନତି ସମାଜ ଗଠନରେ ସାହାଯ୍ୟ କରିପାରିବ ଏବଂ ଭାରତୀୟ ସମାଜ ବ୍ୟବସ୍ଥାକୁ ବ୍ରିଟିଶ ଉପନିବେଶବାଦର ପ୍ରଭାବରୁ ମୁକ୍ତ କରିପାରିବ ବୋଲି ବିଶ୍ୱାସ ରଖି ବ୍ରାହ୍ମ ସମାଜ ଗଠନ ହେଲା । ଏହାର ସୂତ୍ରଧର ହେଲେ ରାଜା ରାମମୋହନ ରାୟ (୧୭୭୨-୧୮୩୩), ଦେବେନ୍ଦ୍ରନାଥ ଠାକୁର(୧୮୧୭-୧୯୦୫), କେଶବଚନ୍ଦ୍ର ସେନ (୧୮୩୮-୧୮୮୪) । ସେମାନେ ଜାତିଗତ ବିଭେଦ ଦ୍ୱାରା ମଣିଷ ମଣିଷ ଭିତରେ ସୃଷ୍ଟି ହୋଇଥିବା ବ୍ୟବଧାନକୁ ଦୂର କରି ଭ୍ରାତୃତ୍ୱ ପ୍ରତିଷ୍ଠା ପାଇଁ ଉଦ୍ୟମ କଲେ ।

ବମ୍ବେରେ ପ୍ରାର୍ଥନା ସମାଜର ପ୍ରତିଷ୍ଠା ହେବାରେ ଏ ଅନୁଷ୍ଠାନ ଜାତିଗତ ବ୍ୟବସ୍ଥାକୁ ଦୂର କରିବାକୁ କାର୍ଯ୍ୟ କଲେ । ସ୍ୱାମୀ ଦୟାନନ୍ଦ ସରସ୍ୱତୀ ଆରମ୍ଭ କଲେ ଆର୍ଯ୍ୟ ସମାଜ । ଥିଓସଫିକ୍ସ ସୋସାଇଟି ଓ ରାମକୃଷ୍ଣମିଶନ ଇତ୍ୟାଦି ହିନ୍ଦୁ ସମାଜ ବ୍ୟବସ୍ଥାର ପରିବର୍ତ୍ତନରେ ଘଟୁଥିବା ଆନ୍ଦୋଳନରେ ଯୋଗ ଦେଲେ । ସମାଜ ସଂସ୍କାର ଆନ୍ଦୋଳନରେ ଜାତିପ୍ରଥା ବିଲୋପ, ବାଲ୍ୟ ବିବାହ ବନ୍ଦ କରିବା, ବିଧବା ବିବାହ, ନାରୀ ମୁକ୍ତି ଇତ୍ୟାଦି କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ ଥିଲା । ରାଣାଡେ, ଅଗରକର ଡକ୍ଟର ଭଣ୍ଡାରକର ପ୍ରମୁଖ ସମାଜ ସଂସ୍କାରକୁ ଗୁରୁତ୍ୱ ଦେବାବେଳେ ତିଳକ ରାଜନୈତିକ ସଂଗ୍ରାମରେ ବ୍ରତୀ ରହିଲେ । ମହାରାଷ୍ଟ୍ରରେ ଜ୍ୟୋତିବା ଫୁଲେ ସାମାଜିକ ସମାନତା ପାଇଁ ତାଙ୍କର ଆନ୍ଦୋଳନକୁ ଜାରି ରଖିଲେ । ସେ ୧୮୭୩ ମସିହାରେ 'ସତ୍ୟ ଶୋଧକ ସମାଜ' ଆରମ୍ଭ କରିଥିଲେ । ଫୁଲେ ଜାତିଭେଦ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କରିଥିଲେ କାରଣ ଏହା ହିନ୍ଦୁ ସମାଜରେ ସାଧାରଣ ମଣିଷର ଅଧିକାରକୁ ଅସ୍ୱୀକାର କରୁଥିଲା ।

ବ୍ରିଟିଶ ସାମ୍ରାଜ୍ୟ ବିରୁଦ୍ଧରେ ଭାରତୀୟ ଜନଗଣଙ୍କର ଗଣତାନ୍ତ୍ରିକ ଚେତନାର ଅଭିବୃଦ୍ଧି, ସେମାନଙ୍କୁ ରାଜନୈତିକ ଆନ୍ଦୋଳନ ଆଡକୁ କ୍ରମଶଃ ଆକୃଷ୍ଟ କରୁଥିବାବେଳେ, ଦଳିତ ବର୍ଗ କ୍ରମଶଃ ନିଜ ନିଜର ଅଧିକାର ପ୍ରତି ସଚେତନ ହେଲେ । ଭାରତୀୟ ଜାତୀୟ କଂଗ୍ରେସର ଅଧିବେଶନରେ ଏକ ପ୍ରସ୍ତାବ ଗ୍ରହଣ

କରାଯାଇ ଭାରତ ସରକାରରେ ଓ କାଉନସିଲରେ ଭାରତୀୟମାନଙ୍କୁ ସ୍ଥାନ ଦେବାକୁ ଦାବି କରାଗଲା । ସେ ପର୍ଯ୍ୟନ୍ତ କଂଗ୍ରେସର ରାଜନୈତିକ ନେତୃତ୍ୱ ଅସ୍ପୃଶ୍ୟ ମାନଙ୍କ କଥା ଚିନ୍ତାକୁ ଆଣି ନଥିଲେ । ଅସ୍ପୃଶ୍ୟ ପାଇଁ ଆନ୍ଦୋଳନ ହେବା ତ ଦୂରର କଥା ।

ପ୍ରଥମ ଥର ପାଇଁ ଗାନ୍ଧିଜୀ 'ଅସ୍ପୃଶ୍ୟତା ନିବାରଣ' କଥା ଉଠାଇଲେ । ଅସ୍ପୃଶ୍ୟମାନଙ୍କୁ ସେ ନାମ ଦେଲେ ହରିଜନ । ସେ ନିଜର କଳ୍ପିତ ଭାରତ ସମ୍ବନ୍ଧରେ ଲେଖିଥିଲେ, "ମୁଁ ଏପରି ଗୋଟିଏ ଭାରତବର୍ଷ ପାଇଁ କାମ କରିବି ଯେଉଁଠାରେ ଦରିଦ୍ରତମ ବ୍ୟକ୍ତି ମଧ ଭାବିବ ଯେ, ସେ ବି ଦେଶର ଜଣେ ମାଲିକ ଏବଂ ଦେଶ ଗଠନରେ ତା'ର ମତାମତର ମୂଲ୍ୟ ରହିଛି; ଯେଉଁଠାରେ ଉଚ୍ଚନିମ୍ନ ଶ୍ରେଣୀ ଭେଦଭାବ ରହିବ ନାହିଁ, ସବୁ ସମ୍ପ୍ରଦାୟର ଲୋକେ ନିର୍ବିରୋଧରେ ବାସ କରିବେ । ଭାରତରେ ଅସ୍ପୃଶ୍ୟତା ପରି ଅଭିଶାପର ସ୍ଥାନ ରହିବ ନାହିଁ... ।" ୧୯୨୦ ମସିହାରେ ଅସ୍ପୃଶ୍ୟତା ନିବାରଣକୁ ଜାତୀୟ ଆନ୍ଦୋଳନ କାର୍ଯ୍ୟକ୍ରମର ଅଂଶ ବିଶେଷ ଭାବେ ଗ୍ରହଣ କରାଗଲା ।

୧୯୦୬ ମସିହା ଅକ୍ଟୋବର ୧୮ ତାରିଖରେ ବିଚାରପତି ଶ୍ରୀ ଏନ୍.ଜି. ଚନ୍ଦ୍ରଭରକରଙ୍କ ନେତୃତ୍ୱରେ "ଦି ଡିପ୍ରେସଡ୍ କ୍ଲାସେସ୍ ମିସନ୍ ସୋସାଇଟି ଅଫ୍ ଇଣ୍ଡିଆ" ଗଠନ କରାଗଲା । ନଭେମ୍ବର ୧୧ ତାରିଖ ୧୯୧୭ ମସିହାରେ ଏହାର ଏକ ସମ୍ମିଳନୀ ବସି ଅସ୍ପୃଶ୍ୟ ମାନଙ୍କର ଦାବିକୁ ସରକାରଙ୍କ ନିକଟରେ ଉପସ୍ଥାପିତ କରାଗଲା । ୧୯୧୭ କଂଗ୍ରେସ ଅଧିବେଶନରେ ଏକ ପ୍ରସ୍ତାବରେ ସେମାନଙ୍କର ଦାବିକୁ ଗ୍ରହଣ କରାଗଲା ।

ମହାରାଷ୍ଟ୍ରର ଏହିପରି ଏକ ସାମାଜିକ ରାଜନୈତିକ ବୌଦ୍ଧିକ ପରିବେଶରେ ଜନ୍ମ ଲାଭ କଲେ - ବାବା ସାହେବ ଆମ୍ବେଦକର । ତାଙ୍କର ପୁରାନାମ ଡକ୍ଟର ଭୀମରାଓ ରାମଜୀ ଆମ୍ବେଦକର ।

## ଖ) ଆମ୍ବେଦକରଙ୍କ ଜନ୍ମ- ଏକ ଦେଶପ୍ରେମୀର ହୃଦୟ

ଆମ୍ବେଦକର କୋଙ୍କଣ ଅଞ୍ଚଳର ଅଧିବାସୀ । ସେ ଅଞ୍ଚଳରୁ ବହୁ ଗଣ୍ୟମାନ୍ୟ, ଜ୍ଞାନୀ ବ୍ୟକ୍ତି ଓ ଯୋଦ୍ଧା ଜନ୍ମ ଗ୍ରହଣ କରିଥିଲେ । ସେମାନଙ୍କ ଭିତରେ ଥିଲେ ତିଳକ, କାର୍ଭେ ଓ ପରଞ୍ଜାପେ ପ୍ରମୁଖ । ରତ୍ନଗିରି ଜିଲ୍ଲାର ଆମ୍ବାଭାଡେ ଗ୍ରାମ ଆମ୍ବେଦକରଙ୍କର ପୈତୃକ ବାସସ୍ଥାନ । ଆମ୍ବେଦକରଙ୍କର ଜେଜେବାପା

ମାଲୋଜି ସକ୍‌ପାଲ ଏକ ସୁସମ୍ପନ୍ନ ମାହାର ପରିବାରରେ ଜନ୍ମଗ୍ରହଣ କରିଥିଲେ । ହିନ୍ଦୁ ସମାଜର ଅସ୍ପୃଶ୍ୟମାନଙ୍କ ମଧ୍ୟରୁ ମାହାର ଜାତି ଥିଲେ ସୁସ୍ଥ, ସବଳ, ବୁଦ୍ଧିମାନ, ସାହସୀ, ଯୋଦ୍ଧା ଏବଂ ଅଗ୍ରଗଣ୍ୟ । ମାହାର ଅର୍ଥ ମହା-ଅରି ଅର୍ଥାତ୍ ବିଶିଷ୍ଟ ଶତ୍ରୁ । ସେମାନେ ପ୍ରଥମେ ବ୍ରିଟିଶ ଲୋକମାନଙ୍କର ସଂସ୍ପର୍ଶରେ ଆସି ଇଷ୍ଟଇଣ୍ଡିଆ କମ୍ପାନୀରେ ସୈନିକ ଭାବରେ ଯୋଗ ଦେଇଥିଲେ ।

ମାହାର ମାନେ ମୂଳତଃ ମହାରାଷ୍ଟ୍ରର ଅଧିବାସୀ । ମହାରାଷ୍ଟ୍ର ଅର୍ଥ ହେଉଛି ମାହାର ମାନଙ୍କର ରାଷ୍ଟ୍ର ।

ମାଲୋଜି ସକ୍‌ପାଲ୍ ଥିଲେ ଜଣେ ଅବସରପ୍ରାପ୍ତ ସୈନିକ । ତାଙ୍କର ଦୁଇଟି ସନ୍ତାନ - ଗୋଟିଏ ପୁଅ ରାମଜୀ ଓ ଝିଅ ମୀରା । ରାମଜୀ ହେଉଛନ୍ତି ଭୀମରାଓଙ୍କର ପିତା । ରାମଜୀ ପରିବାର ଥିଲେ କବିରପନ୍ଥୀ । ଭକ୍ତି ଆନ୍ଦୋଳନର ଅନ୍ୟତମ ପ୍ରବକ୍ତା କବିର ଦୟା, ଅନୁକମ୍ପା ଓ ଈଶ୍ୱର ବିଶ୍ୱାସ ଉପରେ ଗୁରୁତ୍ୱ ଆରୋପ କରିଥିଲେ । ଭକ୍ତି ଆନ୍ଦୋଳନର ମୁଖ୍ୟ ଆଭିମୁଖ୍ୟ ଥିଲା ଜାତିପ୍ରଥାର କଠୋରତାକୁ ଲୋପକରିବା । ଏହି କାରଣରୁ ବହୁ ଅସ୍ପୃଶ୍ୟ ପରିବାର କବିରପନ୍ଥୀ ପାଲଟି ଯାଇଥିଲେ । କବିରଙ୍କର ଦୋହାଥିଲା,

"ଜାତ ପାତ ପୁଛୁ ନ କୋଇ,

ହରକୋ ଭଜେ ସୋ ହରକା ହୋଇ ।"

ରାମଜୀ ସକ୍‌ପାଲ ଚଉଦ ଗୋଟି ସନ୍ତାନର ଜନକ । ଭୀମରାଓ ଥିଲେ ତାଙ୍କ ପିତାଙ୍କର ଶେଷ ସନ୍ତାନ । ତାଙ୍କ ଜନ୍ମ ସମ୍ପର୍କରେ ଏକ କାହାଣୀ ଶୁଣାଯାଏ । ରାମ୍‌ଜୀ ସକ୍‌ପାଲ ମେହୋ ଠାରେ ପରିବାର ନେଇ ରହିବା ସମୟରେ କେତେକ ବୌଦ୍ଧ ସନ୍ୟାସୀ ସେଇ ବାଟ ଦେଇ ଯାଉଥିଲେ । ସେମାନଙ୍କ ମଧ୍ୟରେ ରାମ୍‌ଜୀଙ୍କ ପରିବାରର ଜଣେ ସମ୍ପର୍କୀୟ ଥିବାର କେହି ଜଣେ ସ୍ତ୍ରୀ ଲୋକ ଦେଖି ତାହା ରାମ୍‌ଜୀଙ୍କୁ ଜଣାଇଲେ । ରାମ୍‌ଜୀ ସକ୍‌ପାଲ ସେହି ବୌଦ୍ଧ ସନ୍ୟାସୀଙ୍କୁ ତାଙ୍କ ଘରକୁ ନିମନ୍ତ୍ରଣ କଲେ । କିନ୍ତୁ ସେ ସନ୍ୟାସୀ ହୋଇଥିବା ହେତୁ ଗୃହସ୍ଥ ଘରକୁ ଯିବା ନିଷିଦ୍ଧ ବୋଲି କହି ନମ୍ରଭାବରେ ନିମନ୍ତ୍ରଣକୁ ଏଡାଇ ଯିବାକୁ ଚାହିଁଲେ । ରାମ୍‌ଜୀ ସକ୍‌ପାଲଙ୍କର ସପ୍ରେମ ଅନୁରୋଧକୁ ଏଡାଇ ନ ପାରି ସେ ତାଙ୍କୁ ତାଙ୍କ ଘରେ ଏକ ଉଚ୍ଚକୋଟିର ସନ୍ତାନ ଜନ୍ମହେବ ବୋଲି ଆଶୀର୍ବାଦ କଲେ । ରାମ୍‌ଜୀ ସକ୍‌ପାଲ ଓ ତାଙ୍କ ସ୍ତ୍ରୀ ଥିଲେ ଅତ୍ୟନ୍ତ ଧାର୍ମିକ ।

୧୮୯୧ ମସିହା ଏପ୍ରିଲ୍ ୧୪ ତାରିଖ ମେହୋଠାରେ ରାମ୍‌ଜୀଙ୍କ ପରିବାରରେ ଜନ୍ମ ଲାଭ କଲେ ଭୀମ । ହିନ୍ଦୁସ୍ଥାନର ଇତିହାସରେ ଲିପିବଦ୍ଧ ହେଲା ଡକ୍ଟର ଭୀମରାଓ ରାମ୍‌ଜୀ ଆମ୍ବେଦକର ଭାବେ ।

ଭୀମଙ୍କର ମା ଭୀମାବାଈ ମୁରବାଦକର ଥାନା ଜିଲ୍ଲାର ମୁର୍ବାଦ ଗ୍ରାମର ଏକ ଧନୀ ଅସ୍ପୃଶ୍ୟ ପରିବାରରେ ଜନ୍ମ । ତାଙ୍କ ବର୍ଣ୍ଣ ଗୋରା, ତୀକ୍ଷ୍ଣ ନାକ, କୁଞ୍ଚୁକୁଞ୍ଚିଆ ବାଳ ଏବଂ ଡିମା ଡିମା ଆଖି ହେତୁ ଦେଖିବାକୁ ସେ ଥିଲେ ଅତ୍ୟନ୍ତ ସୁନ୍ଦରୀ ।

ତାଙ୍କ ବାପା ଓ ଛଅ କକା ଥିଲେ ସୈନ୍ୟବାହିନୀର ସୁବେଦାର । ସେମାନେ ମଧ ଥିଲେ କବିରପନ୍ଥୀ । ଭୀମଙ୍କୁ ଯେତେବେଳେ ଦୁଇବର୍ଷ ରାମ୍‌ଜୀ ସକ୍‌ପାଲ ସୈନ୍ୟବାହିନୀ ଚାକିରିରୁ ସ୍ୱେଚ୍ଛାରେ ଅବସର ନେଇ କୋଙ୍କଣର ଡାପୋଲି ଠାରେ ଆସି ବାସ କଲେ । ୫ ବର୍ଷ ବୟସରେ ଭୀମଙ୍କୁ ଡାପୋଲି ବିଦ୍ୟାଳୟରେ ପଢ଼ିବା ପାଇଁ ଭର୍ତ୍ତି କରାଗଲା । ସୁବେଦାର ରାମ୍‌ଜୀ ସକ୍‌ପାଲ କିନ୍ତୁ ଡାପୋଲିରେ ବେଶି ଦିନ ରହିଲେ ନାହିଁ । ଚାକିରି ଅନୁସନ୍ଧାନରେ ସେ ସତାରା ସୈନ୍ୟବିଭାଗ ଛାଉଣୀରେ ଯୋଗ ଦେଲେ । ସେହି ସମୟରେ ଭୀମାବାଈଙ୍କର ଦେହାନ୍ତ ହେଲା । ସେତେବେଳକୁ ଭୀମଙ୍କୁ ମାତ୍ର ଛଅବର୍ଷ ବୟସ । ତାଙ୍କର ଚଉଦ ଜଣ ଭାଇ ଭଉଣୀଙ୍କ ମଧ୍ୟରୁ କେବଳ ତିନିଗୋଟି ପୁଅ ଓ ଦୁଇଗୋଟି ଝିଅ ବଞ୍ଚିଥିଲେ । ବଳରାମ, ଆନନ୍ଦରାଓ, ମଞ୍ଜୁଳା ଓ ତୁଳସୀଙ୍କ ପରେ ଥିଲେ ଭୀମ । ଝିଅମାନେ ଯଦିଓ ବିବାହ କରି ସାରିଥିଲେ, ତଥାପି ଭାଇ ମାନଙ୍କର ଯତ୍ନ ନେଉଥିଲେ । ଏହା ବ୍ୟତୀତ ରାମ୍‌ଜୀଙ୍କର ଭଉଣୀ ମୀରାବାଈ ମଧ ସେମାନଙ୍କର ଦାୟିତ୍ୱ ବୁଝୁଥିଲେ । ଭୀମ ଥିଲେ ସମସ୍ତଙ୍କର ଶ୍ରଦ୍ଧାର ପାତ୍ର-ଗେହ୍ଲା ।

ରାମ୍‌ଜୀ ସକ୍‌ପାଲ ଥିଲେ କଠୋର ପରିଶ୍ରମୀ ଓ ଧାର୍ମିକ ବିଚାର ସମ୍ପନ୍ନ ବ୍ୟକ୍ତି । ପ୍ରତ୍ୟେକ ଦିନ ସକାଳ ଓ ସନ୍ଧ୍ୟାରେ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରିବା ତାଙ୍କର ଅଭ୍ୟାସରେ ପଡି ଯାଇଥିଲା । ଝରଣାରୁ ଜଳଧାର ନିର୍ଗତ ହେବାପରି ତାଙ୍କ ମୁହଁରୁ ଝରି ପଡୁଥିଲା ଭକ୍ତି ରସାତ୍ମକ ସଙ୍ଗୀତ । ସେ ପିଲାମାନଙ୍କୁ ରାମାୟଣ ଓ ମହାଭାରତ ପଢ଼ି ଶୁଣାଉଥିଲେ । ମୋରୋପନ୍ଥ, ମୁକ୍ତେଶ୍ୱର ଏବଂ ତୁକାରାମଙ୍କର ଭକ୍ତି ସଙ୍ଗୀତ ବୋଲୁଥିଲେ । ଦୈନନ୍ଦିନ ପଠନ, ଭଜନ ଓ କୀର୍ତ୍ତନ ଫଳରେ ପିଲାମାନଙ୍କ ଉପରେ ତାହାର ପ୍ରଭାବ ପଡିଥିଲା । ମେହୋଠାରେ ତାଙ୍କ ପରିବାର ରହୁଥିଲେ ସୈନିକ କ୍ୱାଟର୍ସରେ । ପ୍ରତ୍ୟେକ ଦିନ ମରାଠି ସଙ୍ଗୀତ ଗାଇବା ଦ୍ୱାରା

ମରାଠି ଭାଷାରେ ତାଙ୍କର ବ୍ୟୁତ୍ପତ୍ତି ଥିଲା । ରାମ୍‌ଜୀ ଥିଲେ ଶାକାହାରୀ ଓ ଖେଳପ୍ରେମୀ । ଫୁଟବଲ ଓ କ୍ରିକେଟ୍ ଥିଲା ତାଙ୍କର ପ୍ରିୟ । ଧାର୍ମିକ ଆଲୋଚନାରେ ତାଙ୍କର ରୁଚି ଥିଲା ।

ମହାତ୍ମା ଜ୍ୟୋତିବା ଫୁଲେଙ୍କର ସେ ଜଣେ ପ୍ରଶଂସକ ଥିବାରୁ ବିଭିନ୍ନ ସାମାଜିକ ସମସ୍ୟା ପ୍ରତି ତାଙ୍କର ସଚେତନତା ବୃଦ୍ଧି ପାଇଥିଲା । ୧୮୯୨ ମସିହାରେ ବ୍ରିଟିଶ ସରକାର ସୈନ୍ୟ ବିଭାଗରେ ମାହାରଙ୍କର ଯୋଗଦାନକୁ ବନ୍ଦ କରିବାକୁ ଘୋଷଣା କଲେ ।  ସେ ଏହା ବିରୁଦ୍ଧରେ ନେଇଥିଲେ ଏକ ଅଗ୍ରଣୀ ଭୂମିକା । ରାଣାଡେଙ୍କର ସହାୟତାରେ ସେ କେନ୍ଦ୍ର ସରକାରଙ୍କୁ ଆବେଦନ ପଠାଇ ଏ ପ୍ରକାର ଆଦେଶନାମାକୁ ରଦ୍ଦ କରିବାକୁ ଅନୁରୋଧ କରିଥିଲେ । ଏପରିକି ନିଜର ବୃଦ୍ଧକାଳରେ ରାମ୍‌ଜୀ ସବ୍‌ପାଲ ବମ୍ବେର ତତ୍କାଳୀନ ରାଜ୍ୟପାଳଙ୍କୁ ଅସ୍ପୃଶ୍ୟମାନଙ୍କୁ ଗୃହ ବିକାଶ ଯୋଜନାରେ ଘର ଦେବାକୁ ଅନୁରୋଧ କରିଥିଲେ । ଏହିପରି ଏକ ପରିବାରରେ ଜନ୍ମ ହୋଇ ଭୀମରାଓ ପିଲାଦିନରୁ ତାଙ୍କ ପିତାଙ୍କ ପରି ଏକ ଶକ୍ତିଶାଳୀ ମାନସିକତା, ଅସୀମ ଧୈର୍ଯ୍ୟ ଏବଂ ସମାଜର ମଙ୍ଗଳ ପାଇଁ ଅନେକ ଆକାଂକ୍ଷା ଓ ଇଚ୍ଛା ରଖିଥିଲେ ।

ସତାରା ଠାରେ ଭୀମ ନିଜର ପ୍ରାଥମିକ ଶିକ୍ଷା ଶେଷ କଲାପରେ ହାଇସ୍କୁଲରେ ତାଙ୍କ ବଡଭାଇଙ୍କ ସହିତ ଅଧ୍ୟୟନ କରିଥିଲେ । ବିଦ୍ୟାଳୟରେ ପଢ଼ିବା ସମୟରେ ସେ ଅସ୍ପୃଶ୍ୟମାନଙ୍କ ପ୍ରତି କରାଯାଉଥିବା ଦୁର୍ବ୍ୟବହାରର ସୂଚନା ପାଇଲେ । ଏକ ଗ୍ରୀଷ୍ମଛୁଟି ଅବକାଶରେ ସେ ତାଙ୍କର ବଡଭାଇ ଓ ପୁତୁରା ସହିତ ବାପାଙ୍କୁ ଭେଟିବା ପାଇଁ ସତାରାଠାରୁ ଗୋରେଗାଓଁ ଅଭିମୁଖେ ଯାତ୍ରା କରୁଥା'ନ୍ତି । ସୋନେ ପାଦାଲି ରେଳଷ୍ଟେସନରୁ ଟ୍ରେନ୍ ଯୋଗେ ମସର ପର୍ଯ୍ୟନ୍ତ ଗଲେ । ତାଙ୍କ ପିତା ସେମାନଙ୍କୁ ନେବାକୁ ଷ୍ଟେସନକୁ ଆସି ନଥିବାରୁ ସେମାନେ ଷ୍ଟେସନ ମାଷ୍ଟରଙ୍କ ସହାୟତାରେ ଏକ ବଳଦଗାଡି ଭଡା କଲେ ।

କିଛି ବାଟ ଯିବା ପରେ, ଗାଡିବାଲା ସେମାନଙ୍କୁ ଅସବର୍ଣ୍ଣ ବୋଲି ଜାଣି ପାରିଲା । ସେ ରାଗରେ ସେମାନଙ୍କୁ ଗାଡିରୁ ଟାଣି ତଳେ ପକାଇଦେଲା ଓ ଗାଡିଟିକୁ ଅପବିତ୍ର କରିଥିବାରୁ ଗାଳି ବି ଦେଲା । ପିଲା ଦୁହେଁ ଗାଡିଆଳକୁ ଦୁଇଗୁଣା ପଇସା ଦେଇ, ତାର ରାଗ ଶାନ୍ତ କଲେ । ଭୀମଙ୍କର ବଡଭାଇ ଗାଡିଟିକୁ ଚଳାଇଲେ, ଗାଡିଆଳ ପଛେ ପଛେ ଚାଲିଲା ।

ବାଟରେ ପିଲା ଦୁହେଁ ପିଇବାକୁ ପାଣି ବି ପାଇଲେ ନାହିଁ । ସେମାନଙ୍କୁ ଅତ୍ୟନ୍ତ ଅନୁପଯୁକ୍ତ ଦୁର୍ଗନ୍ଧ ଆବର୍ଜନା ପାଣି ପିଇବାକୁ ମିଳିଲା । ସେହିଦିନ ହିଁ ପ୍ରଥମ କରି ଭୀମ ଜାଣିଲେ ଯେ ସେ ଏକ ଅସ୍ପୃଶ୍ୟ ପରିବାରରେ ଜନ୍ମ ।

ଆଉ ଦିନକର ଘଟଣା । ସେ ଗୋଟିଏ ସର୍ବସାଧାରଣ କୂଅର ପାଣି କାଢ଼ି ପିଉଥିବା ସମୟରେ ଲୋକମାନେ ସେ କୂଅକୁ ଅପବିତ୍ର କରିଦେଲା ବୋଲି ତାଙ୍କୁ ବାଡିରେ ପିଟିଲେ ।

ବାରିକ ତାଙ୍କ ମୁଣ୍ଡରେ ବଢୁଥିବା ବାଳକୁ କାଟୁ ନଥିଲା । "ମଇଁଷିର ଲୁମକୁ କାଟିବା ବରଂ ଶ୍ରେୟସ୍କର କିନ୍ତୁ ଅଛୁଆଁ ଲୋକଙ୍କର ବାଳ କାଟିବା ପାପ ।" ବାରିକର ଏକଥା ତାଙ୍କ ମନରେ ସୃଷ୍ଟି କରିଥିଲା ଦୁଃଖର ଗଭୀର କ୍ଷତ ।

ଶୈଶବରୁ ଭୀମ ଥିଲେ ସାହସୀ, ଧୈର୍ଯ୍ୟଶୀଳ ଓ ନିଷ୍ଠାବାଦ । ସ୍କୁଲକୁ ଯିବାବେଳେ ସାଙ୍ଗ ପିଲାଏ ତାଙ୍କୁ ବର୍ଷାରେ ଯିବାକୁ ଆହ୍ୱାନ କଲେ । ସେ ବର୍ଷାରେ ତିନ୍ତି ତିନ୍ତି ସ୍କୁଲରେ ପହଞ୍ଚିଲେ । ତାଙ୍କର ସେହି ପ୍ରଚଣ୍ଡ ବର୍ଷାକୁ ଖାତିର ନଥାଏ । ବର୍ଷାରେ ଓଦା ହୋଇ ଯିବାରୁ ଲୁଗାରୁ ଥପ୍ ଥପ୍ ପାଣି ପଡୁଥାଏ । ତାଙ୍କର ଏ ଅବସ୍ଥା ଦେଖି ଶ୍ରେଣୀ ଶିକ୍ଷକ ପେଣ୍ଡସେ ତାଙ୍କ ଘରୁ ଲୁଗା ମଗାଇଦେଲେ । ମନେ ମନେ ଖୁସି ହେଲେ ଆମ୍ବେଦକର ମାତ୍ର ପରମୁହୂର୍ତ୍ତରେ ତାଙ୍କ ମନ ଦୁଃଖରେ ପୂରିଗଲା । କାରଣ ତାଙ୍କୁ ଅଧାଲଙ୍ଗଳା ହୋଇ ଶ୍ରେଣୀରେ ବସିବାକୁ ହୋଇଥିଲା ।

ସେହି ବିଦ୍ୟାଳୟରେ ଜଣେ ବ୍ରାହ୍ମଣ ଶିକ୍ଷକ ଥିଲେ । ଆମ୍ବେଦକରଙ୍କୁ ସେ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ । ଆମ୍ବେଦକରଙ୍କର ସାଙ୍ଗିଆ ଥିଲା ଆମ୍ବାଭାଦେକର । ଗାଁ ନାଁ ସାଙ୍ଗିଆ ଭାବେ ବ୍ୟବହାର କରାଯାଉଥିଲା । ଏହି ଶିକ୍ଷକ ତାଙ୍କର ସାଙ୍ଗିଆକୁ 'ଆମ୍ବେଦକର' କରିଦେଲେ । ଆମ୍ବେଦକର ଏହି ଶିକ୍ଷକଙ୍କୁ ସର୍ବଦା ମନେ ରଖିଥିଲେ । ପ୍ରଥମ ଗୋଲଟେବୁଲ ବୈଠକରେ ଯୋଗ ଦେବାକୁ ଇଂଲଣ୍ଡ ଯିବାବେଳେ ସେ ତାଙ୍କଠାରୁ ଏକ ପ୍ରେରଣାପ୍ରଦ ପତ୍ର ପାଇଥିଲେ । ତାହାକୁ ସାଇତି ରଖିଥିଲେ ଆମ୍ବେଦକର କୃତଜ୍ଞତାର ନିଦର୍ଶନ ସ୍ୱରୂପ ।

ଏସବୁ ସତ୍ତ୍ୱେ ବିଦ୍ୟାଳୟ ଜୀବନ ଥିଲା ତାଙ୍କ ପାଇଁ ଅସହ୍ୟ । ସେ ଶ୍ରେଣୀଗୃହର ଏକଣା କଣରେ ବସୁଥିଲେ । କେହି ତାଙ୍କୁ ପ୍ରଶ୍ନ ପଚାରୁ ନଥିଲେ କିମ୍ବା ଖାତା ଦେଖୁନଥିଲେ । ଶୋଷ କଲେ ତାଙ୍କ ପାଟିରେ କେହି ପାଣି ଢ଼ାଳି ଦେଉଥିଲା । ପାଠ ପଢ଼ାରେ ତାଙ୍କର ଆଦୌ ଅଭିରୁଚି ନଥିଲା ।

ତାଙ୍କ ପିତା ପୁନରାୟ ବିବାହ କଲେ । ଏହା ଭୀମଙ୍କ ପାଇଁ ଥିଲା ଶକ୍ତ ଆଘାତ । ପିତାଙ୍କ ଉପରେ ନିର୍ଭର କରି ବଞ୍ଚିବାକୁ ସେ ଚାହିଁଲେ ନାହିଁ । ବମ୍ବେ ଚାଲିଯାଇ ମିଲ୍‌ରେ କାମ କରିବାକୁ ଇଚ୍ଛା କଲେ । କିନ୍ତୁ ଯିବା ପାଇଁ ଅର୍ଥ କାହିଁ ? ବହୁ ଚେଷ୍ଟା ସତ୍ତ୍ୱେ ଅର୍ଥ ସଂଗ୍ରହ କରିପାରିଲେ ନାହିଁ ସେ ।

ସେଇଦିନରୁ ପାଠପଢ଼ା ତାଙ୍କର ଏକମାତ୍ର ଧ୍ୟେୟ ହେଲା ।

ସୁବେଦାର ରାମ୍‌ଜୀ ପିଲାମାନଙ୍କ ସହିତ ବମ୍ବେ ଯାଇ ଲୋୟର ପାରେଲଠାରେ ଏକ କ୍ଷୁଦ୍ର ଚାଳଘରେ ବାସ କଲେ । ସେ ମରଠା ହାଇସ୍କୁଲରେ ପଢ଼ିବା ପାଇଁ ଭର୍ତ୍ତି ହେଲେ । ପିତାଙ୍କଠାରୁ ଇଂରାଜୀ ଶିଖିଲେ । ତାଙ୍କର ପୁସ୍ତକ ପ୍ରତି ଆଗ୍ରହ ଛାତ୍ରଜୀବନରୁ ସୃଷ୍ଟି ହେବା ଫଳରେ ସେ ବହି ସଂଗ୍ରହ କରିବା ସହିତ ପୁସ୍ତକ ପଢ଼ିବାରେ ମନ ଦେଲେ । ବମ୍ବେରେ ପ୍ରତିଷ୍ଠା ଲାଭ କରିଥିବା ଏଲିଫିନ୍‌ଷ୍ଟୋନ୍ ହାଇସ୍କୁଲରେ ସେ ପଢ଼ିଲେ । ପ୍ୟାରେଲର ସେହି କ୍ଷୁଦ୍ର ଚାଳଘରେ, ସେମାନଙ୍କର କେବଳ ବାସସ୍ଥାନ ନଥିଲା, ତାହା ଥିଲା ତାଙ୍କ ଅଧ୍ୟୟନର କେନ୍ଦ୍ର । ସନ୍ଧ୍ୟାରେ ଶୀଘ୍ର ନିଦ୍ରାଯାଇ ରାତି ୨ଟା ବେଳୁ ଉଠି ପାଠ ପଢ଼ାରେ ସେ ମନ ଦେଉଥିଲେ । ଯଦିଓ ଏଲଫିନ୍‌ଷ୍ଟୋନ୍ ହାଇସ୍କୁଲ ସରକାରୀ ବିଦ୍ୟାଳୟ ଥିଲା, ତଥାପି ଭୀମଙ୍କୁ ସେହି ଲଜ୍ଜାକର ବ୍ୟବହାରର ସମ୍ମୁଖୀନ ହେବାକୁ ପଡିଲା ।

ସେଠାରେ ଦିନେ ଏକ ଅପ୍ରୀତିକର ଘଟଣା ଘଟିଲା । ଶ୍ରେଣୀ ଶିକ୍ଷକ ଭୀମଙ୍କୁ ବ୍ଲାକବୋର୍ଡ ନିକଟକୁ ଡାକି ଏକ ଅଙ୍କ କଷିବାକୁ କହିଲେ । ସବର୍ଣ୍ଣ ଜାତିର ଛାତ୍ରମାନେ ବ୍ଲାକବୋର୍ଡ ପଛରେ ସେମାନଙ୍କର ଟିଫିନ୍ ବାକ୍ସ ରଖିଥାନ୍ତି । ଭୀମ ବ୍ଲାକବୋର୍ଡ ଠାରେ ପହଞ୍ଚିବା ମାତ୍ରେ ସେମାନଙ୍କର ଖାଦ୍ୟ ନଷ୍ଟ ହେବ ଭାବି ସବର୍ଣ୍ଣ ଛାତ୍ରମାନେ ଟିଫିନ୍ ବାକ୍ସକୁ ସେଠାରୁ ଘୁଞ୍ଚାଇବା କାର୍ଯ୍ୟରେ ଲାଗିଗଲେ । ଏହା ଭୀମଙ୍କ ପାଇଁ ଥିଲା ଅତ୍ୟନ୍ତ ଲଜ୍ଜାଜନକ ଓ ଦୁଃଖଦାୟକ ଘଟଣା ।

ନିଜର ଚେଷ୍ଟା ଓ ଅଧ୍ୟବସାୟ ହେତୁ ସେ ପ୍ରତିବର୍ଷ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଉଥିଲେ ବି ବିଦ୍ୟାଳୟ ଜୀବନ ତାଙ୍କ ପାଇଁ ଥିଲା ଅସହ୍ୟ । ସେହି କ୍ଷତର ଚିହ୍ନ ପରବର୍ତ୍ତୀ ଜୀବନରେ ତାଙ୍କ କର୍ମ କ୍ଷେତ୍ରରେ ପ୍ରତିଫଳିତ ହୋଇଥିଲା । ସଂସ୍କୃତ ବିଷୟ ପଢ଼ିବାକୁ ଦିଆଯାଇ ନଥିଲା । ସଂସ୍କୃତ ବେଦ ଅଧ୍ୟୟନର ଭାଷା ହୋଇଥିବା କାରଣରୁ ଶୂଦ୍ର ଓ ଅତିଶୂଦ୍ରମାନେ ଏହାକୁ ଅଧ୍ୟୟନ କରିବା ବାରଣ କରାଯାଇଥିଲା ।

ତେଣୁ ଭୀମ ଶିଖିଲେ ପାର୍ଶିଭାଷା । ଅବଶ୍ୟ ନିଜ ଚେଷ୍ଟାରେ ପରେ ଆମ୍ବେଦକର ସଂସ୍କୃତ ଅଧ୍ୟୟନ କରିଥିଲେ । ବହୁ ଝଡ଼ଝଞ୍ଜା ମଧ୍ୟରେ, ଅସହ୍ୟ ଲାଞ୍ଛନା ଭୋଗ କରି ମଧ୍ୟ ସେ ନିଜ ପାଠପଢ଼ାରୁ ବିଚ୍ୟୁତ ହୋଇ ନଥିଲେ ଏବଂ ୧୯୦୭ ମସିହାରେ ଏଲିଫିନ୍‌ଷ୍ଟୋନ୍ ହାଇସ୍କୁଲରୁ ମାଟ୍ରିକ୍ ପରୀକ୍ଷାରେ ୭୫୦ ନମ୍ବରରୁ ୨୮୨ ରଖି କୃତକାର୍ଯ୍ୟ ହେଲେ ।

ଏହା ଅସ୍ପୃଶ୍ୟ ସମାଜ ପାଇଁ ଥିଲା ଏକ ବିରାଟ ସଫଳତା । ଭୀମଙ୍କୁ ଏଥିପାଇଁ ସମ୍ବର୍ଦ୍ଧନା କରାଗଲା । ସେହି ସଭାରେ ମରାଠି ସାହିତ୍ୟିକ କ୍ରିଷ୍ଣାଜୀ ଅର୍ଜୁନ କେଲୁସ୍କର ଉପସ୍ଥିତ ଥିଲେ । ସେ ଭୀମଙ୍କ ଅଧ୍ୟୟନ ପ୍ରତି ଆଗ୍ରହ ଥିବାର ଲକ୍ଷ୍ୟ ରଖି, ତାଙ୍କୁ ଗୌତମବୁଦ୍ଧଙ୍କର ଜୀବନୀ ପୁସ୍ତକ ଉପହାର ଦେଇଥିଲେ । କେଲୁସ୍କର ଏହି ସଭାରେ ଭୀମଙ୍କର ପ୍ରଶଂସା କରିବା ସଙ୍ଗେ ତାଙ୍କୁ ଉଚ୍ଚତର ଶିକ୍ଷା ଦେବାକୁ ତାଙ୍କ ପିତାଙ୍କୁ ପ୍ରବର୍ତ୍ତାଇ ଥିଲେ । ସେ ସମୟରେ ବାଲ୍ୟ ବିବାହର ବ୍ୟାପକ ପ୍ରଚଳନ ଥିଲା । ଭୀମଙ୍କ ବିବାହ ପାଇଁ ପ୍ରସ୍ତାବ ଆସିଲା । ଏହି ବିବାହ ବମ୍ବେର ବାଇକଲା ମାର୍କେଟର ଗୋଲାପଡିଆରେ ହୋଇଥିଲା । ସଂଧ୍ୟା ପରେ ମାର୍କେଟ ଠାରେ ବର ଓ କନ୍ୟାପକ୍ଷ ଏକାଠି ହେଲେ । ଦୋକାନର ପହଣ୍ଡି ବେଦୀ ଓ ବସିବା ସ୍ଥାନ ହେଲା । ସୂର୍ଯ୍ୟୋଦୟ ପୂର୍ବରୁ ମାଛବିକାଳି ସ୍ତ୍ରୀଲୋକ ସେଠାରେ ଆସି ଉପସ୍ଥିତ ହେବା ପୂର୍ବରୁ ବିବାହ ସମ୍ପନ୍ନ ହେଲା । ବିବାହ ବେଳକୁ ଭୀମରାଓଙ୍କର ବୟସ ସତର ଓ ସ୍ତ୍ରୀ ରାମିର ବୟସ ନଅ । ତାଙ୍କ ପତ୍ନୀଙ୍କର ନାମ ହେଲା ରମାବାଈ ।

ସେତେବେଳକୁ ମହାରାଷ୍ଟ୍ରରେ ଅସ୍ପୃଶ୍ୟ ମାନଙ୍କର ସମସ୍ୟା ମୁଣ୍ଡଟେକି ଉଠୁଥାଏ । ସିବରାମ୍ ଜାନବା କାମ୍ବଲେ ପ୍ରଥମ କରି ଅସ୍ପୃଶ୍ୟ ମାନଙ୍କର ଏକ ସମ୍ମିଳନୀ ଡାକନ୍ତି । ସେ "ସୋମାଭାନସିୟ ମିତ୍ର" ନାମକ ଏକ ପତ୍ରିକାର ସମ୍ପାଦକ ଥିଲେ ଓ ଏହା ପୁନାରୁ ପ୍ରକାଶ ପାଉଥିଲା । ସେ ୧୯୧୦ ମସିହାରେ ଅସ୍ପୃଶ୍ୟ ମାନଙ୍କର ସମସ୍ୟା ସମ୍ବଳିତ ଏକ ଦାବିପତ୍ର ବ୍ରିଟିଶ ସରକାରଙ୍କୁ ଦେଲେ । ଏହି ସମୟରେ ମରାଠି ସମ୍ପ୍ରଦାୟରୁ ଅନ୍ୟ ଜଣକ ଟାଣୁଆ ନେତାଙ୍କର ମଧ୍ୟ ଆବିର୍ଭାବ ଘଟିଥାଏ । ସେ ହେଉଛନ୍ତି କର୍ମବୀର ଭି.ଆର୍.ସିନ୍ଦେ । ସେ ସମାଜ ବିଜ୍ଞାନ ଓ ସାମ୍ପ୍ରତିକ ଧର୍ମ ସମ୍ପର୍କରେ ଅଧ୍ୟୟନ କରି ବିଭିନ୍ନ ସମାଜସେବୀ ଅନୁଷ୍ଠାନ ଗୁଡିକର କାର୍ଯ୍ୟ ପ୍ରଣାଳୀ ସମ୍ପର୍କରେ ଅବଧାରଣା କରିଥିଲେ । ୧୯୦୬ ମସିହାରେ ସାର୍ ନାରାୟଣ ଗଣେଶ ଚନ୍ଦ୍ରଭରକର ଡିପ୍ରେସଡ୍ କ୍ଲାସେସ୍ ମିଶନ ଅଫ୍ ଇଣ୍ଡିଆ ଗଠନ କରିଥିଲେ । ସିନ୍ଦେ ତାଙ୍କ ସହାୟତାରେ ଭାରତ ବୁଲିଲେ ।

ଗୋଖଲେ ଲୋକସେବକ ମଣ୍ଡଳ (The servants of peoples society) ପ୍ରତିଷ୍ଠା କରିଥାନ୍ତି ଓ ଅସ୍ପୃଶ୍ୟତା ନିବାରଣ ଦାବିକୁ ସମର୍ଥନ ଜଣାଉଥାନ୍ତି ।

ଭୀମରାଓ ଏଲ୍‌ଫିନ୍‌ଷ୍ଟୋନ୍ କଲେଜରୁ ଇଣ୍ଟର ମିଡଏଟ୍ ପାଶ୍ କରିଥା'ନ୍ତି । କିନ୍ତୁ ପିତାଙ୍କର ଆର୍ଥିକ ଅସ୍ୱଚ୍ଛଳତା ତାଙ୍କୁ ଉଚ୍ଚ ଶିକ୍ଷାର ବାଧକ ହୋଇଥାଏ । କେଲୁସ୍କର ଭୀମରାଓଙ୍କୁ ସାହାଯ୍ୟ କରିବା ପାଇଁ ବରୋଦା ମହାରାଜଙ୍କୁ ଅନୁରୋଧ କଲେ । ରାଜାଙ୍କ ନିର୍ଦ୍ଦେଶରେ ଭୀମରାଓଙ୍କୁ ମାସିକ ୨୫ଟଙ୍କା ସରକାରୀ ବୃତ୍ତି ମିଳିଲା । ୧୯୧୨ ମସିହାରେ ସେ ବି.ଏ. ପାଶ୍ କଲେ ।

ସେତେବେଳକୁ ବ୍ରିଟିଶ ସରକାରର କଠୋର ଦମନନୀତି ଯୋଗୁ ମହାରାଷ୍ଟ୍ରରେ ସ୍ୱାଧୀନତା ଆନ୍ଦୋଳନ ତୀବ୍ରରୂପ ଧାରଣ କରିଥାଏ । ଅଧିକାଂଶ ସଂଗ୍ରାମୀ ନେତାମାନଙ୍କୁ ବନ୍ଦି କରି ନିଆଯାଉଥାଏ । ଦେଶପ୍ରେମୀ ତରୁଣ ମାନଙ୍କୁ ଫାଶୀଖୁଣ୍ଟରେ ଝୁଲିବାକୁ ପଡୁଥାଏ । ତିଳକ ଓ ସଭରକର ବ୍ରିଟିଶ ସରକାରଙ୍କ କ୍ରୋଧର ଶିକାର ହୋଇ ଜେଲରେ ଥାନ୍ତି । ମହାରାଷ୍ଟ୍ରରେ ଚାରିଆଡେ ବ୍ୟାପିଯାଇଥାଏ ଏକ ଅଜବ ନିରବତା ।

ତରୁଣ ଆମ୍ବେଦକରଙ୍କ ମନ ଉପରେ ଦେଶପ୍ରେମର ଏହି ବହ୍ନି ପ୍ରଭାବ ପକାଉଥାଏ । ତେଣୁ ପରବର୍ତ୍ତୀ ସମୟରେ ଆମ୍ବେଦକର ତାଙ୍କର ଐତିହାସିକ ସନ୍ଦର୍ଭ, "ଦି ଇଭୋଲ୍ୟୁସନ୍ ଅଫ୍ ପ୍ରଭିନ୍‌ସିଆଲ ଫାଇନାନ୍‌ସ ଇନ୍ ବ୍ରିଟିଶ ଇଣ୍ଡିଆ" ପୁସ୍ତକରେ କିପରିଭାବେ ବ୍ରିଟିଶ ଶାସନ ଦେଶପ୍ରେମୀମାନଙ୍କ ପ୍ରତି ଅତ୍ୟାଚାର କରିଥିଲା, ତାହା ବର୍ଣ୍ଣନା କରିଥିଲେ । ସେଥିରେ ବ୍ରିଟିଶ ଶାସନ ବ୍ୟବସ୍ଥାର ସମାଲୋଚନା କରାଯାଇ ରକ୍ଷଣଶୀଳ ଓ ଦାୟିତ୍ୱହୀନ ହୋଇଥିବା ହେତୁ ଶିକ୍ଷା ଓ ଶିଳ୍ପ ପ୍ରତି ସେମାନେ ଗୁରୁତ୍ୱ ଦେଉ ନଥିଲେ ବୋଲି ଉଲ୍ଲେଖ କରାଯାଇଥିଲା ।

ବି.ଏ. ପାସ୍ କରିବାପରେ ଭୀମରାଓ ବରୋଦା ରାଜାଙ୍କ ଅଧୀନରେ ଚାକିରି କଲେ । ଲେଫଟ୍‌ନାଣ୍ଟ ପଦବୀରେ ତାଙ୍କୁ ଅଧିଷ୍ଠିତ କରାଗଲା । କିନ୍ତୁ ମାତ୍ର ତେର ଦିନ ଚାକିରି କରିବା ସମୟରେ ତାଙ୍କ ପିତାଙ୍କର ଅସୁସ୍ଥତାର ଖବର ପାଇ ସେ ବମ୍ବେ ଚାଲି ଆସିଲେ । ପିତା ଯେପରି ଅପେକ୍ଷା କରିଥିଲେ ପୁତ୍ର ଭୀମରାଓଙ୍କୁ । ପିତାଙ୍କର କମ୍ପିତ ହସ୍ତ ପୁତ୍ରର ପିଠି ଆଉଁଷି ଦେବାକୁ ଉଠି ନିଷ୍ପନ୍ଦ ହୋଇଗଲା ।

ସୁବେଦାର ରାମଜୀ ଭୀମରାଓଙ୍କୁ ଛାଡି ଚାଲି ଗଲେ ଆର ପାରିକୁ । ସେଦିନ ଥିଲା ୧୯୧୩ ମସିହା ଫେବୃୟାରୀ ୨ ତାରିଖ ।

ତାହା ଥିଲା ଆମ୍ବେଦକରଙ୍କ ଜୀବନର ଅନ୍ୟ ଏକ ଦୁଃଖଦ ଘଟଣା । ଉଚ୍ଚ ଆକାଂକ୍ଷା ଓ ଜ୍ଞାନ ଆହରଣର ପିପାସା ତାଙ୍କୁ ଅସ୍ଥିର କରି ପକାଇଲା । ସେ ବରୋଦା ଫେରିଯାଇ ଚାକିରି କରିବାକୁ ଆଗ୍ରହ କଲେ ନାହିଁ । ବରୋଦା ମହାରାଜା ରାଜ୍ୟ ତରଫରୁ ଚାରିଜଣ ଛାତ୍ରଙ୍କୁ ଛାତ୍ରବୃତ୍ତି ପ୍ରଦାନ କରି କଲମ୍ବିଆ ବିଶ୍ୱ ବିଦ୍ୟାଳୟରେ ପଢ଼ାଇବାର ଜାଣି ସେ ସେଥିପାଇଁ ଆବେଦନ କଲେ ଓ ୧୯୧୩ ଜୁନ୍ ୪ ତାରିଖରେ ଚୁକ୍ତି ପତ୍ର ସ୍ୱାକ୍ଷରିତ କଲେ । ଏଥିରେ ସର୍ତ୍ତ ରହିଲା ଯେ ଶିକ୍ଷା ସମାପ୍ତ ପରେ ଦଶବର୍ଷ ବରୋଦା ରାଜାଙ୍କ ଅଧୀନରେ କାର୍ଯ୍ୟ କରିବେ । ଏହା ଥିଲା ଆମ୍ବେଦକରଙ୍କ ପାଇଁ ଏକ ସୁବର୍ଣ୍ଣ ସୁଯୋଗ । ଅସ୍ପୃଶ୍ୟ ମାନଙ୍କ ମଧ୍ୟରୁ ସେ ଥିଲେ ପ୍ରଥମ ଭାରତୀୟ ଯେ କି ଲିଙ୍କନ୍ ଓ୍ୱାଶିଂଟନଙ୍କ ରାଜ୍ୟରେ ଶିକ୍ଷା ପାଇବା ପାଇଁ ପଦାର୍ପଣ କରିଥିଲେ ।

୧୯୧୩ ଜୁଲାଇରେ ଆମ୍ବେଦକର ନିଉୟର୍କରେ ପହଞ୍ଚି ପ୍ରଥମେ ହାର୍ଟଲେ ହଲ ଠାରେ ଅବସ୍ଥାନ କଲେ । ମାତ୍ର ସେଠାକାର ଖାଦ୍ୟ ତାଙ୍କ ଦେହ ପ୍ରତି ଅନୁପଯୁକ୍ତ ହେବାରୁ ସେ ବହୁ ଭାରତୀୟ ଛାତ୍ର ରହୁଥିବା କସ୍‌ମୋପଲିଟାନ୍ କ୍ଲବକୁ ଚାଲିଗଲେ । ସେଠାରେ ମଧ ବେଶି ଦିନ ରହି ନ ପାରି ସେ ଲିଭିଂଷ୍ଟୋନ ହଲରେ ପାର୍ଶି ଛାତ୍ର ନାବାଲ ଭଖେନାଙ୍କ ସହିତ ରହିଲେ ।

କଲମ୍ବିଆ ବିଶ୍ୱବିଦ୍ୟାଳୟର ଜୀବନ ଥିଲା ତାଙ୍କ ପାଇଁ ଏକ ଆବିଷ୍କାର । ଏହି ନୂତନ ପୃଥିବୀରେ ସେ ଥିଲେ ସମ୍ପୂର୍ଣ୍ଣ ମୁକ୍ତ । ସେଠାରେ ଜାତିଗତ, ଧର୍ମ ବା ବର୍ଣ୍ଣଗତ ବିଦ୍ୱେଷ ନଥିଲା । ନିୟମିତ ସମୟରେ ପରିଷ୍କାର ଭାବେ ସଫାକନା ଟେବୁଲରେ ପକାଇ ରୁମାଲ ଧରି ଖାଇବା ଟେବୁଲରେ ବସିବା ଇତ୍ୟାଦି ଆଦବ୍ କାଇଦା ତାଙ୍କ ମାନସିକ ଚିନ୍ତାଧାରାର ଦିଗ୍‌ବଳୟକୁ ବ୍ୟାପକ କଲା ।

ତାଙ୍କ ଜୀବନରେ ଏକ ନୂତନତା, ଏକ ନୂତନ ମୂଲ୍ୟବୋଧ ଜାଗ୍ରତ ହେଲା । ସେ ସେଠାରୁ ତାଙ୍କ ପିତାଙ୍କ ବନ୍ଧୁଙ୍କ ନିକଟକୁ ଏକ ପତ୍ରରେ ଲେଖିଥିଲେ, ''ଆମ ମନରେ ଧାରଣା ଯେ ପିତାମାତା କେବଳ ଜନ୍ମ ଦେଇଛନ୍ତି, କର୍ମ ନୁହେ ଏହି ଧାରଣାକୁ ପରିବର୍ତ୍ତନ କରିବାକୁ ହେବ । ସନ୍ତାନର ଭାଗ୍ୟ ପରିବର୍ତ୍ତନର ଏକମାତ୍ର ମାଧ୍ୟମ ହେଉଛି ଶିକ୍ଷା ଯାହା ସେମାନଙ୍କର ଭବିଷ୍ୟତକୁ ଆଲୋକିତ କରିବ । ଏଥି

ପାଇଁ ପୁରୁଷମାନଙ୍କ ସହିତ ନାରୀ ଶିକ୍ଷା ଦେବାର ଆବଶ୍ୟକତା ରହିଛି । ଆମର ଲକ୍ଷ୍ୟ କେବଳ ଶିକ୍ଷା ଦେବା ଓ ଶିକ୍ଷାର ଆଦର୍ଶକୁ ଆମ ଲୋକମାନଙ୍କ ମଧ୍ୟରେ ପ୍ରଚାର କରିବା ।''

ଏହା ଥିଲା ଆତ୍ମ ସମ୍ମାନ ଓ ଆତ୍ମ ସାହାଯ୍ୟର ମୂଳମନ୍ତ୍ର । ଅସହାୟ ଲୋକଙ୍କ ପ୍ରତି ସଂଗ୍ରାମ କରିବାର ଆହ୍ୱାନର ଦର୍ଶନ । ସବୁ କଥାକୁ ଭାଗ୍ୟ ଉପରେ ନ ଛାଡିଦେଇ ପ୍ରତ୍ୟେକ ସୁବିଧା ଓ ସୁଯୋଗର ସଦୁପଯୋଗ କରିବାକୁ ସେ ଆହ୍ୱାନ ଦେଇ ସେକ୍ସପିଅରଙ୍କର ଏକ କବିତାକୁ ଆବୃତ୍ତି କରୁଥିଲେ ।

"There is a tide in affairs of men,
which, taken at the flood, leads on to the fortune."

ଅର୍ଥାତ୍ ମଣିଷର ସବୁ ସଙ୍କଳ୍ପ ଓ ସାଧନାରେ ଏକ ଅନ୍ତଃସ୍ରୋତ ରହିଥାଏ, ଯାହାକୁ ପ୍ରଖର ଥିବା ସମୟରେ କାର୍ଯ୍ୟରେ ଲଗାଇଲେ, ସୌଭାଗ୍ୟ ପ୍ରାପ୍ତ ହୁଏ ।''

ନୂତନ ଚିନ୍ତାଧାରା ଓ ନୂତନ ଆଲୋକ ସମ୍ପର୍କରେ ସଚେତନ ହୋଇ ଆମ୍ବେଦକର ଜାଣିଲେ ଯେ ତାଙ୍କ ନିକଟରେ ନାମ ଓ ଯଶ ନାହିଁ । ତାଙ୍କୁ ନିଜ ଜୀବନକୁ ଗଢ଼ିବାକୁ ହେବ । ତାଙ୍କ ଭିତରେ ଥିବା ଗୁଣକୁ ବିକଶିତ କଲେ, ସେ ପ୍ରଗତି କରିପାରିବେ । ସେଥିପାଇଁ ଲୋଡା କଠିନ ପରିଶ୍ରମ ।

ବିଶ୍ୱବିଦ୍ୟାଳୟର ଅଧିକାଂଶ ଛାତ୍ର ଥିଲେ ଧନୀ, ସେମାନେ ସୌଖିନ ଜୀବନ ଓ ଥିଏଟର ଦେଖାରେ ସମୟ କାଟିବାବେଳେ ଆମ୍ବେଦକର କପେ କଫି, ଦୁଇଖଣ୍ଡ ରୁଟି ଓ ମାଛଖଣ୍ଡେ ଏକ ଡଲାର ବିନିମୟରେ ଖାଇ କଠିନ ଅଧ୍ୟୟନରେ ଲାଗି ଯାଉଥିଲେ । ତାଙ୍କର ଲକ୍ଷ୍ୟ କେବଳ ୟୁନିଭରସିଟିର ଗୋଟିଏ ସର୍ବୋଚ୍ଚ ଡିଗ୍ରୀ ପାଇବାକୁ ନଥିଲା, ସେ ଇଚ୍ଛା କରୁଥିଲେ ବିଜ୍ଞାନରେ, ରାଜନୀତି ବିଜ୍ଞାନରେ ସମାଜ ବିଜ୍ଞାନରେ, ଅର୍ଥନୀତିରେ ମଧ୍ୟ ସର୍ବୋଚ୍ଚ ଡିଗ୍ରୀ ହାସଲ କରିବା । ଭାରତରେ ପଢ଼ିବା ସମୟରେ ସେ ଇଂରାଜୀ ଓ ପାର୍ଶିରେ ବି.ଏ. ଡିଗ୍ରୀ ପାଇଥିଲେ । ସେ ବର୍ତ୍ତମାନ ଅଧ୍ୟୟନ କଲେ ରାଜନୀତିବିଜ୍ଞାନ, ନୈତିକ ଦର୍ଶନ, ନୃତତ୍ତ୍ୱ, ସମାଜବିଜ୍ଞାନ ଏବଂ ଅର୍ଥନୀତି । ତାଙ୍କର ପରିଚୟ ହେଲା ପ୍ରଫେସର ଇଡଉଇନ୍.ଆର୍.ଏ. ସେଲିଗ୍‌ମ୍ୟାନଙ୍କ ସହ । ସେ ଥିଲେ ଲାଲା ଲଜପତ୍ ରାୟଙ୍କ ବନ୍ଧୁ ।

ଆମ୍ବେଦକର ସେଲିଗ୍‌ମ୍ୟାନଙ୍କର ଅନୁମତି ନେଇ ତାଙ୍କ ଶ୍ରେଣୀରେ ବସିଲେ ।

ଏହି ପ୍ରଫେସର ଛାତ୍ରମାନଙ୍କୁ ଶିକ୍ଷାଦେବାରେ ଥିଲେ ଶ୍ରଦ୍ଧାଶୀଳ ଓ କୁଶଳୀ । ଆମ୍ବେଦକରଙ୍କ ଜୀବନ ଉପରେ ତାଙ୍କର ଅମାପ ପ୍ରଭାବ ପଡ଼ିଲା । ଗବେଷଣାର ଧାରା କିପରି ହେବ ସେ ସମ୍ପର୍କରେ ଆମ୍ବେଦକର ପ୍ରଶ୍ନ କରିବା ସମୟରେ ସେ କହିଥିଲେ ଯେ ନିଷ୍ଠାର ସହ କାର୍ଯ୍ୟ କଲେ ଆପେ ଆପେ ସେ ଗବେଷଣାର ଧାରା ପାଇ ପାରିବେ ।

ପ୍ରତ୍ୟେକ ଦିନ ସେ ଅଠରଘଣ୍ଟା ସମୟ ପରିଶ୍ରମ କଲେ । ୧୯୧୫ରେ ଆମ୍ବେଦକର ତାଙ୍କର ସନ୍ଦର୍ଭ, "ଆନସିୟାଣ୍ଟ ଇଣ୍ଡିୟାନ କମର୍ସ" ପାଇଁ ପି.ଏଚ.ଡି. ଉପାଧି ଲାଭ କଲେ । ସେ ସେଠାରେ 'ଭାରତରେ ଜାତି' ଶୀର୍ଷକ ଗୋଟିଏ ପ୍ରବନ୍ଧ ପାଠ କଲେ । ସେ ସମୟରେ ସେ ଅନ୍ୟ ଏକ ସନ୍ଦର୍ଭ ଉପରେ ମଧ୍ୟ କାର୍ଯ୍ୟ କରୁଥିଲେ । ବହୁଶ୍ରମ ଫଳରେ ତାଙ୍କର ଏହି ସନ୍ଦର୍ଭ "ନ୍ୟାସନାଲ ଡିଭିଡେଣ୍ଡ ଅଫ ଇଣ୍ଡିଆ - ଏ ହିଷ୍ଟୋରିକ୍ ଆଣ୍ଡ ଆନାଲିଟିକାଲ ଷ୍ଟଡି" କଲମ୍ବିଆ ବିଶ୍ୱବିଦ୍ୟାଳୟ ଦ୍ୱାରା ଗୃହୀତ ହେଲା । ଏହାର ଆଠବର୍ଷ ପରେ ଏହି ସନ୍ଦର୍ଭ ପୁସ୍ତକ ଆକାରରେ M/s P.S. King & Sons Ltd., Londonଙ୍କ ଦ୍ୱାରା "ଦି ଇଭୋଲ୍ୟୁସନ୍ ଅଫ୍ ପ୍ରଭିନ୍‌ସିଆଲ୍ ଫାଇନାନ୍ସ ଇନ୍ ବ୍ରିଟିଶ ଇଣ୍ଡିଆ" ପ୍ରକାଶିତ ହୋଇଥିଲା । ଏହି ସନ୍ଦର୍ଭ ପାଇଁ କଲମ୍ବିଆ ବିଶ୍ୱବିଦ୍ୟାଳୟ ତାଙ୍କୁ ପି.ଏଚ୍.ଡି. ପ୍ରଦାନ କଲେ । ସେ ଏହି ବହିଟିକୁ ବରୋଦାର ମହାରାଜା ଶ୍ରୀ ସୟାଜୀ ରାଓ ଗାଇକୋଓ୍ୱାଡିଙ୍କୁ ଉତ୍ସର୍ଗ କରିଥିଲେ । ଏହା ଯେତେବେଳେ ବହି ହେଲା ମଣ୍ଟେଗୁ-ଚେମସ୍‌ଫୋର୍ଡ ସଂସ୍କାରର ଅର୍ଥନୈତିକ ଦିଗକୁ ଏଥିରେ ସନ୍ନିବେଶିତ କରାଗଲା । ଏହି ପୁସ୍ତକରେ ସେ ସମୟର ବ୍ରିଟିଶ ଶାସନତନ୍ତ୍ର, ଉପନିବେଶବାଦ ପ୍ରଣାଳୀ ଏବଂ ଦେଶରେ ଥିବା ପ୍ରତିକ୍ରିୟାଶୀଳ ଶକ୍ତିମାନଙ୍କର ପୁଙ୍ଖାନୁପୁଙ୍ଖ ଆଲୋଚନା କରାଯାଇଥିଲା ।

ପୁସ୍ତକ ପ୍ରକାଶ ହେବା ପରେ ଆମ୍ବେଦକରଙ୍କୁ ରୟାଲ କମିଶନ ସମ୍ମୁଖରେ ଭାରତୀୟ ମୁଦ୍ରା ସମ୍ପର୍କରେ ସାକ୍ଷ୍ୟ ଦେବା ପାଇଁ ଡକରା ଆସିଲା । ଆମେରିକାରେ ଥିବା ବେଳେ ଆମ୍ବେଦକର ଆମେରିକାର ସମ୍ବିଧାନ ବିଶେଷ କରି ଚତୁର୍ଦ୍ଦଶ ସଂଶୋଧନ ପ୍ରତି ଆକୃଷ୍ଟ ହୋଇଥିଲେ । ଏହି ସମ୍ବିଧାନ ସଂଶୋଧନରେ ନିଗ୍ରୋମାନଙ୍କୁ ସ୍ୱାଧୀନତା ଦିଆଯାଇଥିଲା । କଲମ୍ବିଆ ବିଶ୍ୱବିଦ୍ୟାଳୟରେ ସଫଳତା ପାଇବା ପରେ, ତାଙ୍କର ଦୃଷ୍ଟି ଲଣ୍ଡନ ପରେ ନିବଦ୍ଧ ହେଲା । ଲଣ୍ଡନ ଆନ୍ତର୍ଜାତୀୟ ଶିକ୍ଷା ପାଇଁ ପ୍ରସିଦ୍ଧ ଥିଲା । ଜୁନ୍ ୧୯୧୬ ମସିହାରେ ଆମ୍ବେଦକର ଆମେରିକାରୁ ଲଣ୍ଡନ ଅଭିମୁଖେ ଯାତ୍ରା କଲେ । ସେ ଅକ୍ଟୋବର ୧୯୧୬ରେ ଆଇନଡିଗ୍ରୀ ପାଇଁ

'ଗ୍ରେଇନ୍'ରେ ନାମ ଲେଖାଇଲେ ଏବଂ ଅର୍ଥନୀତି ନିମନ୍ତେ ଲଣ୍ଡନ ସ୍କୁଲ ଅଫ୍ ଇକୋନମିକ୍ସ ଆଣ୍ଡ ପଲିଟିକାଲ ସାଇନ୍ସ ଡିପାର୍ଟମେଣ୍ଟରେ ଯୋଗ ଦେଲେ । ସେ ବରୋଦାର ମହାରାଜଙ୍କୁ ଚିଠି ଲେଖି ତାଙ୍କୁ ଲଣ୍ଡନରେ ପଢ଼ିବାର ସୁଯୋଗ ଦେବାକୁ ଅନୁରୋଧ କଲେ । ସେଠାରେ ସେ ଏକ ସନ୍ଦର୍ଭ ଲେଖିବା କାର୍ଯ୍ୟରେ ବ୍ୟସ୍ତ ଥିବାବେଳେ, ତାଙ୍କର ବୃତ୍ତି ଶେଷ ହୋଇଯିବା କାରଣରୁ ତାଙ୍କୁ ଭାରତ ଫେରି ଆସିବାକୁ ତକରା ପଡିଲା ।

କଲମ୍ବୋ ଦେଇ ୧୯୧୭ ଅଗଷ୍ଟ ୨୧ ତାରିଖ ଦିନ ଆମ୍ବେଦକର ବମ୍ବେଠାରେ ପହଞ୍ଚିଲେ । ସେତେବେଳେ ଭାରତ ଶାସନ ବ୍ୟବସ୍ଥାରେ କିଛି ପରିବର୍ତ୍ତନ ପାଇଁ ମଣ୍ଟେଗୁ ଚେଷ୍ଟା କରୁଥାନ୍ତି । ବିଭିନ୍ନ ସଙ୍ଗଠନ, ରାଜନୈତିକ ଦଳ ଓ ମତବାଦର ଲୋକମାନେ ସେମାନଙ୍କର ଦାବି ତାଙ୍କ ନିକଟରେ ଉପସ୍ଥାପିତ କରୁଥାନ୍ତି ।

ପ୍ରଥମ ଥର ପାଇଁ ଅସ୍ପୃଶ୍ୟମାନଙ୍କର ଏକ ପ୍ରତିନିଧି ଦଳ ସେମାନଙ୍କର ଦାବି ତାଙ୍କ ନିକଟରେ ଉପସ୍ଥାପିତ କଲେ । ମାଡ୍ରାଜ ପ୍ରେସିଡେନ୍ସିରେ ଥିବା ଅସ୍ପୃଶ୍ୟ ଆସୋସିଏସନ୍‌ର 'ପୁନ୍‌ଛାମା କଲାଭି ଅଭିଭର୍ଦ୍ଧି - ଅଭିମାନ ସଂଘ' ଏଥିରେ ପ୍ରତିନିଧିତ୍ୱ କରି ସେମାନଙ୍କୁ ବ୍ରାହ୍ମଣ ମାନଙ୍କର ଦୌରାତ୍ମ୍ୟରୁ ରକ୍ଷା କରିବାକୁ ଅନୁରୋଧ କଲେ । ମାଡ୍ରାଜ ଆଦି ଦ୍ରାବିଡ ଜନସଂଘ ଯେଉଁମାନଙ୍କର ସଂଖ୍ୟା ଥିଲା ପ୍ରାୟ ୬୦ ଲକ୍ଷ, ସେମାନେ ସବର୍ଣ୍ଣମାନଙ୍କ ଅତ୍ୟାଚାର ବିରୁଦ୍ଧରେ ବିଦ୍ରୋହ କଲେ ।

ଆମ୍ବେଦକର ବମ୍ବେ ପହଞ୍ଚିବା ପରେ ତାଙ୍କୁ ସମ୍ବର୍ଦ୍ଧିତ କରିବା ପାଇଁ ଏକ ସଭାର ଆୟୋଜନ କରାଗଲା । ବମ୍ବେର ମୁଖ୍ୟ ଜିଲ୍ଲାଧିକାରୀ ରାଓ ବାହାଦୂର ଚୁନିଲାଲ ଶିତଲବାଦ ଏଥିରେ ଅଧ୍ୟକ୍ଷତା କରିଥିଲେ । ବମ୍ବେରୁ ବରୋଦା ଯିବା ପାଇଁ ଆମ୍ବେଦକର ସ୍ଥିର କରି ବହି ନଷ୍ଟ ହୋଇଥିବା କାରଣରୁ ଥୋମାସ୍ କୁକ୍ କମ୍ପାନୀ ଠାରୁ କ୍ଷତି ପୂରଣ ପାଇଥିବା ଟଙ୍କା ଧରି ବରୋଦା ଅଭିମୁଖେ ଯାତ୍ରା କଲେ ।

ବରୋଦା ମହାରାଜା ତାଙ୍କୁ ଷ୍ଟେସନରୁ ପାଛୋଟି ଆଣିବାକୁ ନିର୍ଦ୍ଦେଶ ଦେଇଥିଲେ ମଧ୍ୟ କେହି ଏହି ଅସ୍ପୃଶ୍ୟଙ୍କୁ ଆଣିବାକୁ ଷ୍ଟେସନରେ ନଥିଲେ । ତାଙ୍କର ଆସିବା ଖବର ଚାରିଆଡେ ପ୍ରଚାରିତ ହେବା ଫଳରେ ତାଙ୍କୁ ହୋଟେଲ ବା

ହଷ୍ଟେଲ କେଉଁଠାରେ ରହିବାକୁ ମିଳିଲା ନାହିଁ । ଶେଷରେ ସେ ଏକ ପାର୍ଶି ପାନ୍ଥ ଶାଳାରେ ଅଜଣା ଲୋକଭାବରେ ରହିଲେ ।

ମହାରାଜା ତାଙ୍କୁ ଅର୍ଥମନ୍ତ୍ରୀ କରିବା ଉଦ୍ଦେଶ୍ୟରେ ପ୍ରଥମେ ମିଲଟାରି ସେକ୍ରେଟାରୀଭାବେ ନିଯୁକ୍ତି କଲେ । କିନ୍ତୁ ଅଧସ୍ତନ କର୍ମଚାରୀ ଓ ପିଅନମାନେ ତାଙ୍କ ଟେବୁଲ ଉପରକୁ ଫାଇଲ ଫିଙ୍ଗିଲେ ଯେପରି ସେ କୁଷ୍ଠରୋଗୀ । ଦିନେ ଦଳେ ପାର୍ଶି ଏକାଠି ହୋଇ ଠେଙ୍ଗାବାଡି ଧରି ତାଙ୍କୁ ପଚାରିଲେ "ସେ କିଏ ?" ସେ ନିଜକୁ ହିନ୍ଦୁ ପରିଚୟ ଦେବା ସତ୍ତ୍ୱେ ଅସ୍ପୃଶ୍ୟଙ୍କ ପ୍ରତି ବ୍ୟବହାର ପାଇଲେ । ସେ ମହାରାଜାଙ୍କୁ ଏ ବିଷୟରେ ଜଣାଇଲେ । ଅନୁସନ୍ଧାନ ପାଇଁ ଦେୱାନଙ୍କୁ କୁହାଗଲେ ମଧ ସେ ନିଜର ଅକ୍ଷମତା ପ୍ରକାଶ କଲେ । କ୍ଳାନ୍ତ, ଅବସନ୍ନ, କ୍ଷୁଧାର୍ତ୍ତ ଆମ୍ବେଦକର ଦୁଃଖ, ଗ୍ଲାନି ଓ ଲଜ୍ଜାରେ ଗୋଟିଏ ଗଛତଳେ ବସି କାନ୍ଦିବାକୁ ଲାଗିଲେ । ବ୍ୟକ୍ତିଗତ ସ୍ତରରେ ପାଣ୍ଡିତ୍ୟ ଲାଭ କରି ମଧ ସବର୍ଣ୍ଣ ହିନ୍ଦୁ ମାନଙ୍କର ଅତ୍ୟାଚରରୁ ନିଜକୁ ରକ୍ଷା କରି ପାରିଲେ ନାହିଁ ।

ଅସହାୟ ଅବସ୍ଥାରେ ୧୯୧୭ ନଭେମ୍ବର ମାସରେ ସେ ଫେରିଆସିଲେ ବମ୍ବେକୁ ।

ସେତେବେଳକୁ ଭାରତୀୟ ଜାତୀୟ କଂଗ୍ରେସ ଦଳିତ ବର୍ଗ ପ୍ରତି କ୍ରମଶଃ ସଚେତନ ହେବାକୁ ଲାଗିଥାଏ । କାରଣ କଂଗ୍ରେସ-ଲିଗ୍ ସ୍କିମରେ ସେମାନଙ୍କର ସହଯୋଗ କଂଗ୍ରେସ ଉପଲବ୍ଧି କରେ । ୧୯୧୭ ନଭେମ୍ବର ମାସରେ ଶ୍ରୀ ନାରାୟଣ ଗଣେଶ ଚନ୍ଦ୍ରଭରକରଙ୍କ ସଭାପତିତ୍ୱରେ ଦଳିତବର୍ଗଙ୍କର ଏକ ସଭା ଅନୁଷ୍ଠିତ ହୋଇ ଅସ୍ପୃଶ୍ୟ ମାନଙ୍କର ସୁରକ୍ଷା ପାଇଁ ସରକାରଙ୍କ ନିକଟରେ ଦାବି କରାଯାଏ ଏବଂ ସେମାନଙ୍କର ପ୍ରତିନିଧି ନିର୍ବାଚନ କରିବାକୁ ଚାହାନ୍ତି । ଅନ୍ୟ ଏକ ପ୍ରସ୍ତାବରେ କଂଗ୍ରେସ ସବର୍ଣ୍ଣ ହିନ୍ଦୁମାନଙ୍କ ଅତ୍ୟାଚାରରୁ ଅସବର୍ଣ୍ଣ ମାନଙ୍କୁ ରକ୍ଷା କରିବା ପାଇଁ ଏକ ପ୍ରସ୍ତାବ ନେବାକୁ ଅନୁରୋଧ କରାଯାଇଥାଏ । କଂଗ୍ରେସ ତା'ର ଡିସେମ୍ବର କଲିକତା ଅଧିବେଶନରେ ଅସବର୍ଣ୍ଣଙ୍କର ସୁରକ୍ଷା ପାଇଁ ଏକ ପ୍ରସ୍ତାବ ପାସ୍ କଲା ।

୧୯୧୮ ମାର୍ଚ୍ଚ ୨୩ ଓ ୨୪ ତାରିଖରେ ଡ୍ରିପେସଡ୍ କ୍ଳାସ୍ ମିଶନ୍ ସୋସାଇଟି ଅଫ୍ ଇଣ୍ଡିଆ (Depressed class mission society of India) ଦ୍ୱାରା ବମ୍ବେଠାରେ ଏକ ସର୍ବଭାରତୀୟ ସମ୍ମିଳନୀ ଅନୁଷ୍ଠିତ ହେଲା । ବରୋଦା ମହାରାଜ ସୟାଜୀରାଓ ଗାଇକୋୱାଡ ଏଥିରେ ସଭାପତିତ୍ୱ କରିଥିଲେ ।

ଏହି ସମ୍ମିଳନୀରେ ଭିଥଲ ଭାଇ ପଟେଲ, ଏମ୍.ଆର ଜୟକର, ବିପିନ ଚନ୍ଦ୍ର ପାଲ ଇତ୍ୟାଦି ଯୋଗ ଦେଇଥିଲେ । ତିଳକ, ଖାପାର୍ଡେ ଏବଂ ଏ.ଭି. କ୍ଲେର ଦ୍ୱିତୀୟ ଦିନ ଯୋଗ ଦେଲେ । ତିଳକ ତାଙ୍କ ଭାଷଣରେ ଈଶ୍ୱର ଯଦି ଅସ୍ପୃଶ୍ୟତାକୁ ଗ୍ରହଣ କରନ୍ତି, ତେବେ ସେ ସେହି ଈଶ୍ୱରଙ୍କୁ ମାନିବେ ନାହିଁ ବୋଲି କହିଲେ । ଅସ୍ପୃଶ୍ୟତା ଏକ ମାରାତ୍ମକ ବ୍ୟାଧି ଓ ଏହା ଦୂର ହେବା ଉଚିତ ବୋଲି ମତ ପ୍ରକାଶ ପାଇଲା । ସମ୍ମିଳନୀ ଶେଷକୁ ଅଲ୍ଇଣ୍ଡିଆ ଆଣ୍ଟି-ଅନ୍‌ଟଚେବିଲିଟି ମାନିଫେଷ୍ଟ ପ୍ରକାଶିତ ହେଲା । ସେଥିରେ ଅଧିକାଂଶ ନେତା ସ୍ୱାକ୍ଷର କଲେ । କର୍ମଚାରୀ ଭି.ଆର.ସିନ୍ଦେ ଥିଲେ ଏହାର ଆୟୋଜକ । ସବର୍ଣ୍ଣ ମାନଙ୍କ ଦ୍ୱାରା ଏପ୍ରକାର ସମ୍ମିଳନୀ ଆୟୋଜନ ସମ୍ପର୍କରେ ଆମ୍ବେଦକର କେବଳ ସନ୍ଦିହାନ ନଥିଲେ ବରଂ ମୌଳିକଭାବେ ଏହାକୁ ବିରୋଧ କରୁଥିଲେ । ସେ ପ୍ରଥମେ ନିଜ ପାଇଁ ଜୀବିକା ନିର୍ବାହର ଏକ ପନ୍ଥା ବାହାର କରିବାକୁ ଇଚ୍ଛା କରୁଥିଲେ । ଆଇନ ବ୍ୟବସାୟ ଦ୍ୱାରା କିଛି ରୋଜଗାର ହେବ ଓ ଲୋକମାନଙ୍କର ଦୃଷ୍ଟିକୁ ମଧ୍ୟ ଆସିବେ ।

ସେ ପ୍ରଥମେ ବ୍ୟବସାୟୀମାନଙ୍କ ସେୟାର ମାର୍କେଟ ସମ୍ପର୍କରେ ଉପଦେଶ ଦେବାକୁ ଆରମ୍ଭ କଲେ । କିନ୍ତୁ ଅସ୍ପୃଶ୍ୟର ଅଫିସ୍‌କୁ କିଏ ଆସିବ ? ଅଫିସ୍ ବନ୍ଦ ହୋଇଗଲା । ଏହି ସମୟରେ ସେ ବିଭିନ୍ନ ପତ୍ରପତ୍ରିକାରେ ଲେଖାମାନ ଲେଖିଲେ । ମାନସିକ ଦୋଦୁଲ୍ୟମାନ ଅବସ୍ଥା ଦେଇ ଗତି କରୁଥିବାବେଳେ ସେ ସିଡିନ୍‌ହାମ୍ କଲେଜରେ ଏକ ଅଧ୍ୟାପକ ଚାକିରି ଖାଲି ଥିବାର ଶୁଣିବାକୁ ପାଇଲେ । ସେହି ଅଧ୍ୟାପକ ଚାକିରି ପାଇଁ ସେ ବମ୍ବେର ପୂର୍ବତନ ଗଭର୍ଣ୍ଣର ଲଡ ସିଡିନ୍‌ହମ୍‌ଙ୍କୁ ଏକ ପତ୍ର ଲେଖିଥିଲେ । ଇଣ୍ଟରଭ୍ୟୁରେ ସଫଳ ହୋଇ ସେ କଲେଜରେ ଅଧ୍ୟାପକ ଭାବେ ନିଯୁକ୍ତ ହେଲେ । ୧୯୧୮ ନଭେମ୍ବର ମାସରେ ଏହି ଚାକିରିରେ ଯୋଗ ଦେଇ କିଛି ଅର୍ଥ ରୋଜଗାର କରି ଲଣ୍ଡନ ଯାଇ ତାଙ୍କର ଅବଶିଷ୍ଟ ପାଠପଢ଼ାକୁ ଶେଷ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା ।

ପ୍ରଥମେ ପ୍ରଥମେ ଛାତ୍ରମାନେ ଏହି ଅଧ୍ୟାପକଙ୍କ ପ୍ରତି ଗୁରୁତ୍ୱ ଦେଇନଥିଲେ । କ୍ରମଶଃ ସେମାନେ ତାଙ୍କର ପ୍ରଖର ବାଗ୍ମିତା ଓ ଜ୍ଞାନର ପରିଚୟ ପାଇଲେ । ତାଙ୍କ ଶ୍ରେଣୀରେ ଛାତ୍ରମାନଙ୍କର ବୃଦ୍ଧି ଘଟିବାକୁ ଲାଗିଲା । ଅଧ୍ୟାପକ ଭାବରେ ତାଙ୍କର ସଫଳତା ମଧ୍ୟ ତାଙ୍କ ଅସ୍ପୃଶ୍ୟତା ଦୋଷକୁ ଦୂର କରି ପାରିଲାନାହିଁ । କେତେକ ଗୁଜୁରାଟି ପ୍ରଫେସର କଳସିରୁ ସେ ପାଣି ପିଇବାରେ ବାଧା ଦେଲେ । ଅଧ୍ୟାପକ ଚାକିରି ଥିଲା ଗୌଣ । ସେ ଅସ୍ପୃଶ୍ୟତାର ମୂଳ ଚେର ଖୋଜିବାରେ ଲାଗିଥିଲେ ।

ସେ ତାଙ୍କ ଚିନ୍ତାଧାରା ପ୍ରତି ସହାନୁଭୂତିଶୀଳ ବ୍ୟକ୍ତିମାନଙ୍କ ସହିତ ସମ୍ପର୍କ ସ୍ଥାପନ କରିବାରେ ଲାଗିଥିଲେ ।

ଏହି ସମୟରେ ମଣ୍ଟେଗୁ-ଚେମସ୍‌ଫୋର୍ଡ ସଂସ୍କାରର କାର୍ଯ୍ୟକାରୀତା ପାଇଁ ସାଉଥବୋରୋ କମିଟି କର୍ମବୀର ସିନ୍ଧେ ଓ ଆମ୍ବେଦକରଙ୍କୁ ସାକ୍ଷ୍ୟ ପ୍ରଦାନ କରିବାକୁ ଡାକିଲେ । ଆମ୍ବେଦକର ଅସ୍ପୃଶ୍ୟମାନଙ୍କ ପାଇଁ ସେମାନଙ୍କ ଲୋକସଂଖ୍ୟା ଅନୁପାତରେ ଅଲଗା ନିର୍ବାଚନମଣ୍ଡଳୀ ଦାବି କଲେ । ହୋମରୁଲ୍ ଦାବି କରିବା ପୂର୍ବରୁ ଏକା ଧର୍ମର ଲୋକମାନଙ୍କ ମଧ୍ୟରେ ସାମାଜିକ ନ୍ୟାୟ ଓ ସମାନତା ପ୍ରତିଷ୍ଠା ହେବାର ଆବଶ୍ୟକତା ଉପରେ ସେ ଗୁରୁତ୍ୱ ଦେଲେ । ୧୯୧୯ ମସିହାରେ ଆମ୍ବେଦକରଙ୍କ ସମ୍ପର୍କ କୋହ୍ଲାପୁର ମହାରାଜଙ୍କ ସହିତ ସ୍ଥାପିତ ହେଲା ଯାହା ଅସ୍ପୃଶ୍ୟ ମାନଙ୍କର ଶିକ୍ଷା ଉପରେ ଗୁରୁତ୍ୱ ଦେବା ସହିତ ବ୍ରାହ୍ମଣ୍ୟବାଦର ବିଲୋପ ପାଇଁ ଉଦ୍ୟମ କରିଥିଲା ।

କୋହ୍ଲାପୁର ମହାରାଜାଙ୍କ ଆର୍ଥିକ ସହାୟତାରେ ସେ ଆରମ୍ଭ କଲେ ଏକ ପାକ୍ଷିକ ପତ୍ରିକା 'ମୂକ ନାୟକ' । ସେ ତାହାର ପ୍ରଥମ ସଂଖ୍ୟା ସମ୍ପାଦକୀୟରେ ପତ୍ରିକାର ଆଭିମୁଖ୍ୟ ସମ୍ପର୍କରେ ପ୍ରାଞ୍ଜଳ ଭାଷାରେ ଉଲ୍ଲେଖ କରିଥିଲେ । ସେ ଲେଖିଥିଲେ ''ଭାରତ ହେଉଛି ଅସମାନତାର ଦେଶ । ହିନ୍ଦୁ ସମାଜ ଏକ ବିରାଟ ଟାୱାର ଯେଉଁଥିରେ ରହିଛି ଅନେକ ମହଲା କିନ୍ତୁ ସେଠାକୁ ପ୍ରବେଶ କରିବାକୁ ସିଡି ବା ଦ୍ୱାର ନାହିଁ । ଯିଏ ଯେଉଁ ମହଲାରେ ଜନ୍ମ ହୋଇଛି, ସେ ସେଠାରେ ହିଁ ମୃତ୍ୟୁଲାଭ କରିବ । ବ୍ରାହ୍ମଣ, ଅବ୍ରାହ୍ମଣ ଓ ଶୂଦ୍ର ଏମାନଙ୍କୁ ନେଇ ହିନ୍ଦୁ ସମାଜ । ଈଶ୍ୱର ପ୍ରତ୍ୟେକଙ୍କ ଦେହରେ ସମାନ ଭାବରେ ବିଦ୍ୟମାନ ବୋଲି କହି ସମଧର୍ମୀ ଲୋକମାନଙ୍କୁ ଅସ୍ପୃଶ୍ୟ କହିବାର କୌଣସି କାରଣ ନାହିଁ । ଦଳିତ ଜାତି ମାନଙ୍କର ଶିକ୍ଷା ଓ କ୍ଷମତାର ଅଭାବ ହିଁ ଏହାର ମୂଳ କାରଣ । ସେମାନଙ୍କୁ ଚିର ଦାସତ୍ୱ ଓ ଦାରିଦ୍ର୍ୟରୁ ରକ୍ଷା କରିବା ପାଇଁ ସେମାନଙ୍କ ଚେତନାର ବିକାଶ କରିବା ଆବଶ୍ୟକ ।''

ମୂକନାୟକର ଅନ୍ୟ ଏକ ଲେଖାରେ ସେ ଲେଖିଥିଲେ, ''ଭାରତ କେବଳ ସ୍ୱାଧୀନ ହେଲେ ହେବ ନାହିଁ । ତାକୁ ବିଭିନ୍ନ ଧର୍ମ, ସାମାଜିକ ଅର୍ଥନୈତିକ ଓ ରାଜନୈତିକ ବ୍ୟବସ୍ଥା ପାଇଁ ସମସ୍ତଙ୍କୁ ଜାତି,ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ସୁବିଧା ଓ ସୁଯୋଗ ଦେବାକୁ ହେବ ।'' ସେତେବେଳ ପର୍ଯ୍ୟନ୍ତ ଆମ୍ବେଦକର ହିନ୍ଦୁ ସମାଜ ଉପରେ ଆଘାତ କରିବାକୁ ପ୍ରସ୍ତୁତ ହୋଇ ନଥିଲେ ।

୧୯୨୦ ମାର୍ଚ୍ଚ ୨୧ ତାରିଖରେ ଆମ୍ବେଦକର ମାଗାଁଓ ଠାରେ ଅସ୍ପୃଶ୍ୟ ମାନଙ୍କର ଏକ ସମ୍ମିଳନୀରେ ସଭାପତିତ୍ୱ କଲେ । ସାହୁ ମହାରାଜ ଏହି ସମ୍ମିଳନୀରେ ଯୋଗଦେଇ କହିଲେ, "ଆମ୍ବେଦକରଙ୍କ 'ଭିତରେ ଆପଣ ଜଣେ ତ୍ରାଣକର୍ତ୍ତା ପାଇଛନ୍ତି । ମୁଁ ନିଶ୍ଚିତ ଯେ ସେ ଦଳିତମାନଙ୍କୁ ବନ୍ଧନରୁ ମୁକ୍ତି କରିବେ । ଏବଂ ଏପରି ଏକ ସମୟ ଆସିବ, ଯେତେବେଳେ ଆମ୍ବେଦକର ଜଣେ ପ୍ରସିଦ୍ଧ ନେତା ଭାବରେ ଉଭା ହେବେ ।" ୧୯୨୦ ମେ ମାସରେ ନାଗପୁର ଠାରେ ଅନୁଷ୍ଠିତ ଅନ୍ୟ ଏକ ସର୍ବଭାରତୀୟ ସମ୍ମିଳନୀରେ ସେ ସିନ୍ଧେଙ୍କର ମନୋବୃତ୍ତିକୁ ନାପସନ୍ଦ କରି ଭାଷଣ ଦେଇଥିଲେ । ତାଙ୍କ ମତରେ ସବର୍ଣ୍ଣ ହିନ୍ଦୁମାନେ ଯେତେ ଅସବର୍ଣ୍ଣଙ୍କ ଉନ୍ନତି ପାଇଁ କାର୍ଯ୍ୟ କଲେ ମଧ, ପ୍ରକୃତ ପକ୍ଷେ ସେମାନଙ୍କ ମନ ଜାଣିବା ତାଙ୍କ ପାଇଁ ସମ୍ଭବ ନୁହେ । ସମ୍ମିଳନୀ ଶେଷ ହେବାବେଳକୁ ସେ ସମସ୍ତ ଅସବର୍ଣ୍ଣ ସମ୍ପ୍ରଦାୟକୁ ଏକାଠି କରିବାକୁ ଚେଷ୍ଟା କଲେ । କେନ୍ଦ୍ରୀୟ ପ୍ରଦେଶରେ ମାହାର କମ୍ୟୁନିଟ୍‌ର ଅଠରଟି ସମ୍ପ୍ରଦାୟ ଥିଲେ । ସେ ସେହି ସମସ୍ତ ସମ୍ପ୍ରଦାୟର ମୁଖିଆ ମାନଙ୍କୁ ଡାକି ଏକ ଭୋଜିରେ ମିଳିତ ହେଲେ । ସେତେବେଳେ ମଧ ସମସ୍ତ ଅସ୍ପୃଶ୍ୟ ସମ୍ପ୍ରଦାୟର ଲୋକଙ୍କୁ ଡାକି ଏକାଠି କରିବା ସମ୍ଭବ ନଥିଲା ।

ଆମ୍ବେଦକରଙ୍କର ଏ ପ୍ରକାର କାର୍ଯ୍ୟରେ କୋହ୍ଲାପୁର ମହାରାଜା ନିଜର ପ୍ରସନ୍ନତା ପ୍ରକାଶ କରି ଦିନେ ଆମ୍ବେଦକରଙ୍କର ଘରେ ଆସି ପହଞ୍ଚିଲେ । ପ୍ରଫେସର ଭାବରେ ଆମ୍ବେଦକର ଭଲ ବେତନ ପାଉଥିଲେ ମଧ ତାଙ୍କର ଜୀବନଯାପନ ପ୍ରଣାଳୀ ଥିଲା ସରଳ । ସେ ପାରେଲର ସେହି ଶ୍ରମିକ ବସ୍ତି ନିକଟରେ ବସବାସ କରି ରହୁଥିଲେ । ଦରମାର ଗୋଟିଏ ଅଂଶ ଘର ଚଳାଇବା ପାଇଁ ତାଙ୍କ ସ୍ତ୍ରୀଙ୍କୁ ଦେଉଥିଲେ ।

ସ୍ତ୍ରୀ ରମାବାଈ ଥିଲେ କର୍ତ୍ତବ୍ୟନିଷ୍ଠ, ସ୍ୱାଭିମାନୀ, ଧୀର, ନମ୍ର ଓ ସାଧ୍ୱୀ । ଜୀବନର ପ୍ରଥମ ପର୍ଯ୍ୟାୟରେ ସେ ଅନେକ ସଂଘର୍ଷର ସମ୍ମୁଖୀନ ହୋଇଥିଲେ । ପ୍ରଥମେ ତାଙ୍କ ଭାଇଙ୍କର ପିଲା ଦୁହିଁଙ୍କର ଦାୟିତ୍ୱ ନେବାକୁ ହୋଇଥିଲା । ଧାର୍ମିକ ପ୍ରଥାକୁ ପାଳନ କଲାବେଳେ ସେ କେବେକେବେ ଋକ୍ଷଣଶୀଳ ହୋଇ ପଡୁଥିଲେ । ଆମ୍ବେଦକରଙ୍କର ଆମେରିକାରେ ରହଣି ସମୟରେ ଏହି ମହୀୟସୀ ମହିଳା ଈଶ୍ୱରଙ୍କୁ ତାଙ୍କ ସ୍ୱାମୀଙ୍କ ପାଇଁ ପ୍ରାର୍ଥନା କରି ନିରବରେ ସମୟ କଟାଉଥିଲେ । ଆମ୍ବେଦକର ଆମେରିକା ଯିବାବେଳେ ସେ ଥିଲେ ଗର୍ଭବତୀ । ସେହି ଜନ୍ମିତ ସନ୍ତାନ ରମେଶର ଶୈଶବରୁ ମୃତ୍ୟୁ ହୋଇଥିଲା । ସ୍ୱାମୀଙ୍କ ପ୍ରତ୍ୟାବର୍ତ୍ତନ ପରେ

ଅନ୍ୟ ଏକ ପୁତ୍ର ଗଙ୍ଗାଧର ଜନ୍ମ ହୋଇ ମୃତ୍ୟୁବରଣ କଲା । ତାଙ୍କ ପାଖରେ କେବଳ ଥିଲେ ଯଶୋବନ୍ତ । ତାଙ୍କର ସ୍ୱାସ୍ଥ୍ୟ ଭଲ ରହୁ ନ ଥିବା ହେତୁ ମା ରମାବାଈ ସଦାସର୍ବଦା ଚିନ୍ତିତ ରହୁଥିଲେ । ପରିବାରର ଦୁଃଖ, ରୋଗ ଇତ୍ୟାଦି ସେ ତାଙ୍କ ସ୍ୱାମୀଙ୍କୁ ଜଣାଉନଥିଲେ ଏବଂ ଆମ୍ବେଦକରଙ୍କ ପଢ଼ିବାରେ ଆଦୌ ଅସହଯୋଗ କରୁନଥିଲେ । ତାଙ୍କ ପତିଙ୍କ ସହାୟତା ଯୋଗୁ ସେ ଅଳ୍ପ କିଛି ପଢ଼ି ଲେଖି ଶିଖିଥିଲେ । ତିଳକ, ଗାନ୍ଧି ଓ ସଭରକରଙ୍କ ପରି ଆମ୍ବେଦକର ମଧ୍ୟ ଏକ ଉତ୍ତମ ସହଯୋଗୀ ପତ୍ନୀ ପାଇଥିଲେ ।

ସେ କିଛି ଟଙ୍କା ଏକାଠି କଲେ । କୋହ୍ଲାପୁର ମହାରାଜା ତାଙ୍କୁ କିଛି ଅର୍ଥ ଦାନ କଲେ । ତାଙ୍କର ବନ୍ଧୁ ନାଭାଲ ବାଥେନାଙ୍କ ଠାରୁ ପାଞ୍ଚ ହଜାର ଟଙ୍କା ଋଣନେଇ ସେ ୧୯୨୦ ଜୁନ୍ ମାସରେ ଲଣ୍ଡନ ଅଭିମୁଖେ ଯାତ୍ରା କଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ଆଇନ୍ ଓ ଅର୍ଥନୀତିରେ ସେ ବ୍ୟୁତ୍ପତ୍ତି ଲାଭ କରି ଫେରିବେ ।

ଏ ସମୟରେ ବରୋଦା ରାଜ୍ୟ ଆମ୍ବେଦକର ନେଇଥିବା ବୃତ୍ତିଟଙ୍କା ଫେରାଇବା ପାଇଁ ସିଡ଼ିନ୍‌ହାମ କଲେଜ, ବମ୍ବେ ପ୍ରଦେଶ ଶିକ୍ଷା କର୍ତ୍ତୃପକ୍ଷ ଓ ଶ୍ରୀ ଏନ୍.ଏମ୍ ଯୋଶୀଙ୍କ ନିକଟକୁ ପତ୍ର ଲେଖିଲେ । ମହାରାଜ ଏ ସମ୍ପର୍କରେ କିଛି ଜାଣି ନଥିଲେ । ଦାୟିତ୍ୱରେ ଥିବା କର୍ମଚାରୀମାନେ ଈର୍ଷାନ୍ୱିତ ହୋଇ ଏପରି କାର୍ଯ୍ୟାନୁଷ୍ଠାନ କରିଥିଲେ । ବରୋଦା ମହାରାଜାଙ୍କ ବ୍ୟକ୍ତିଗତ ହସ୍ତକ୍ଷେପ ଫଳରେ ୧୯୩୨ ମସିହାରେ ଏହି ଋଣ ପରିଶୋଧ କରିବାର ଆଇନ୍‌ଗତ କାର୍ଯ୍ୟ ବନ୍ଦ କରି ଦିଆଗଲା ।

ସେପ୍ଟମ୍ବର ୧୯୨୦ରେ ଆମ୍ବେଦକର ଲଣ୍ଡନରେ ପହଞ୍ଚି ଲଣ୍ଡନ ସ୍କୁଲ ଅଫ୍ ଇକୋନମିକ୍ସ ଆଣ୍ଡ ପଲିଟିକାଲ ସାଇନ୍ସରେ ଅର୍ଥନୀତି ଓ 'ଗ୍ରେଇନ୍'ରେ ଆଇନ୍ ଅଧ୍ୟୟନ କରିବାକୁ ଲାଗିଲେ । ଲଣ୍ଡନ ମ୍ୟୁଜିୟମରେ ତାଙ୍କର ସମୟ ଦିନ ୮ ଘଣ୍ଟାରୁ ସନ୍ଧ୍ୟା ୫ ଘଣ୍ଟା ପର୍ଯ୍ୟନ୍ତ ବିତିବାକୁ ଲାଗିଲା । ଏହି ମ୍ୟୁଜିୟମ୍‌ରେ ବସି ମାର୍କସଙ୍କର 'ଦାସ କ୍ୟାପିଟାଲ୍'କୁ ଅନୁଶୀଳ କରିଥିଲେ । ତାଙ୍କ ପାଇଁ ସମୟ ଥିଲା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଟଙ୍କା ପଇସାର ଅଭାବ ହେତୁ ସେ ସମୟ ସମୟରେ ଦିନର ଲଞ୍ଚ ଖାଉ ନ ଥିଲେ ।

ସେ ଜଣେ ଭଦ୍ରମହିଳାଙ୍କ ଦ୍ୱାରା ପରିଚାଳିତ ହଷ୍ଟେଲରେ ଭଡାରେ ରହୁଥିଲେ । ଏହି ଭଦ୍ରମହିଳା ଥିଲେ ରୁକ୍ଷ ଓ କଠୋର ପ୍ରକୃତିର । ସେ ଅନ୍ତେବାସୀ ମାନଙ୍କୁ ପ୍ରାତଃଭୋଜନରେ ଖଣ୍ଡେ ପାଉରୁଟି, ଟିକେ ଜାମ୍, ମାଛ ଖଣ୍ଡେ ଓ କପେ

ଚା’ ଦେଉଥିଲେ । ଆମ୍ବେଦକର ଏହି ପ୍ରାତଃ ଭୋଜନ ସାରି ଦୌଡୁଥିଲେ ମ୍ୟୁଜିୟମ ଅଭିମୁଖେ ଏବଂ ପ୍ରାୟ ପ୍ରଥମ ବ୍ୟକ୍ତି ଥିଲେ ସେଠାରେ ପହଞ୍ଚିବାରେ । ଦିନ ତମାମ ଭୋକଶୋଷ ଭୁଲି ନିଜକୁ ତା’ ଭିତରେ ବୁଡାଇ ରଖୁଥିଲେ । କେବଳ ମ୍ୟୁଜିୟମ୍ ନୁହେ ସେ ଇଣ୍ଡିଆନ୍ ଅଫିସ୍ ଲାଇବ୍ରେରୀ, ଲଣ୍ଡନ ବିଶ୍ୱବିଦ୍ୟାଳୟ ଲାଇବ୍ରେରୀ, ସିଟି ଲାଇବ୍ରେରୀ ମାନଙ୍କରେ ବୁଲି ବୁଲି ତାଙ୍କ ସନ୍ଦର୍ଭ ସମ୍ପର୍କୀୟ ବିଷୟରେ ନୋଟ ନେଉଥିଲେ ।

ଦିନସାରା ଅକ୍ଲାନ୍ତ ପରିଶ୍ରମ କରିବା ପରେ ସେ ଫେରି ଆସୁଥିଲେ ହଷ୍ଟେଲକୁ । ତାଙ୍କର ରାତ୍ରି ଭୋଜନ ଥିଲା କେତେ ଖଣ୍ଡି ବିସ୍କୁଟ ଓ କପେ ବୋଭରିଲ । ପୁଣି ଅଧ୍ୟୟନ । ରାତି ଦଶଟା ବେଳକୁ ଭୋକରେ ତାଙ୍କ ପେଟର ଜ୍ୱାଳା ଅସହ୍ୟ ହୋଇଉଠୁଥିଲା । ତାଙ୍କର ଜଣେ ଭାରତୀୟ ବନ୍ଧୁ ଦେଇଥିବା ପାମ୍ପଡରୁ ୪ ଖଣ୍ଡ ଭାଜି ଚା’ କପେ ପିଇ ନିଜର ସାମୟିକ କ୍ଷୁଧା ନିବାରଣ କରି ପୁଣି ଲାଗି ଯାଉଥିଲେ ଅଧ୍ୟୟନରେ । ତାହା ଥିଲା ତାଙ୍କର ଧ୍ୟାନଯଜ୍ଞ । ସକାଳ ପର୍ଯ୍ୟନ୍ତ ତାଙ୍କର ଏହି ଅଧ୍ୟୟନ ଚାଲୁ ରହୁଥିଲା । ତାଙ୍କ ରୁମ୍‌ର ସହପାଠୀ ତାଙ୍କୁ ବିଶ୍ରାମ ନେବାକୁ ଅନୁରୋଧ କରିବାବେଳେ ଦାରିଦ୍ର୍ୟ ଓ ସମୟର ସ୍ୱଳ୍ପତା ହେତୁ ତାଙ୍କୁ ଖୁବ୍ ଶୀଘ୍ର ଏ କାର୍ଯ୍ୟ ସମାପ୍ତ କରିବାକୁ ହେବବୋଲି କହି ସେ ବାହାରି ଯାଉଥିଲେ ମ୍ୟୁଜିୟମ୍ ଅଭିମୁଖେ ।

ବମ୍ବେଠାରେ ଥିବା ତାଙ୍କର ବନ୍ଧୁ ଭାଥେନାଙ୍କୁ ସେ ଆର୍ଥିକ ସହାୟତା ପାଇଁ ଚିଠି ଲେଖୁଥିଲେ । ଥରେ ତାଙ୍କୁ ଏକ ପତ୍ରରେ ଲେଖିଥିଲେ, ‘‘ବିଶ୍ୱାସ କର ମୋ ପାଇଁ ତମକୁ ବ୍ୟସ୍ତ କରୁଥିବା କାରଣରୁ ମୁଁ ଦୁଃଖିତ । ମୁଁ ଅନୁଭବ କରେ ଯେ ତୁମ ଉପରେ ମୋର ଚିନ୍ତା ନିଗୂଢ଼ ବନ୍ଧୁତ୍ୱ ମଧ୍ୟ ସହ୍ୟ କରି ପାରିବ ନାହିଁ । ମୁଁ ଆଶାକରେ ମୋର ବାରମ୍ବାର ତୁମକୁ କିଛି ମାଗିବା ଦ୍ୱାରା ମୋର ଏକମାତ୍ର ବନ୍ଧୁଠାରୁ ମୋତେ ଅଲଗା କରି ପାରିବ ନାହିଁ ।’’ ସେ ଭାଥେନାଙ୍କୁ ୨୦୦୦ ଜର୍ମାନ ବିନିମୟ ମୁଦ୍ରା ବଦଳାଇବା ପାଇଁ ଚିଠି ଲେଖିଥିଲେ ।

ଜୀବନରେ ସଫଳତା ସେଇମାନଙ୍କୁ ମିଳେ, ଯେଉଁମାନେ କଠିନ ପରିଶ୍ରମ ଏବଂ ସୀମିତ ସମ୍ବଳ ନେଇ ଦୃଢ଼ ଭାବରେ କାର୍ଯ୍ୟ କରିବାରେ ବ୍ୟାପୃତ ରହନ୍ତି । ଆମ୍ବେଦକର ଏହି ପ୍ରକାର ଏକ କଠିନ ଜୀବନକୁ ସାଦରେ ଗ୍ରହଣ କରି ନେଇଥିଲେ । ମାତ୍ର ଆଠ ପାଉଣ୍ଡରେ ତାଙ୍କର ମାସକ ଖର୍ଚ୍ଚ ଚଳିଯାଉଥିଲା । ସେ ନିଜର ପୋଷାକ ପାଇଁ, ଯାତାୟାତ ପାଇଁ ଖୁବ୍ କମ୍ ଖର୍ଚ୍ଚ କରୁଥିଲେ । ନଗରର

ଏ ପ୍ରାନ୍ତରୁ ସେ ପ୍ରାନ୍ତ ପର୍ଯ୍ୟନ୍ତ ପାଦରେ ସେ ବୁଲୁଥିଲେ । ରେଷ୍ଟୁରାଣ୍ଟକୁ ଯିବା ଥିଲା ତାଙ୍କ ପାଇଁ ସ୍ୱପ୍ନ । ଭୋଜିଭାତ ଥିଲା ବିଳାସ ଓ ଥିଏଟର ସୌଖୀନ ଜୀବନ । ମହାନ୍ ବ୍ୟକ୍ତି ମାନଙ୍କର ଜୀବନର ଘଟଣାବଳୀ ପ୍ରାୟ ଏହିପରି ଥିଲା । ସେମାନେ ଇତିହାସରେ ନିଜ ନାମକୁ ଲିପିବଦ୍ଧ କରିବାପାଇଁ ବହୁ ସମୟ ଧରି କଠୋର ପରିଶ୍ରମ, ଏବଂ ଉନ୍ନତ ଚିନ୍ତା ନେଇ କାର୍ଯ୍ୟ କରିଥିବା ହେତୁ, ସଫଳତା ତାଙ୍କ ମୁକୁଟରେ ଶୋଭା ପାଉଥିଲା ।

ଶିକ୍ଷା କ୍ଷେତ୍ରରେ ସଫଳତା ଅର୍ଜ୍ଜନ କରିବା ପାଇଁ, ତାଙ୍କର ପରିଶ୍ରମ ତାଙ୍କୁ ତାଙ୍କ ଲକ୍ଷ୍ୟରୁ ବିଚ୍ୟୁତ କରି ପାରି ନଥିଲା । ପ୍ରତ୍ୟେକ ବଡ ମଣିଷ ଆନନ୍ଦ ଉପଭୋଗ ପାଇଁ ଜନ୍ମ ହୁଅନ୍ତି ନାହିଁ, ଜନ୍ମ ହୁଅନ୍ତି କର୍ମ ପାଇଁ । କର୍ମ ହିଁ ଜୀବନର ଏକମାତ୍ର ମାନଦଣ୍ଡ । ଲଣ୍ଡନରେ ସେ ଭାରତ ପାଇଁ ଥିବା ସେକ୍ରେଟାରୀଙ୍କୁ ସାକ୍ଷାତ କଲେ ଓ ଭିଥଲଭାଇ ପଟେଲଙ୍କ ସହିତ ଅସ୍ପୃଶ୍ୟମାନଙ୍କ ସମ୍ପର୍କରେ ଆଲୋଚନା କଲେ ।

'ମୂକ ନାୟକ'ର ପ୍ରକାଶନ ଉପରେ ସେ ଗୁରୁତ୍ୱ ଦେଉଥିଲେ ଏବଂ ତାହା ଯେପରି ଅକାଳରେ ମରିନଯାଏ, ସେଥିପାଇଁ ଚେଷ୍ଟା କରୁଥିଲେ । ତେଣୁ ସେ କାଗଜର କର୍ମକର୍ତ୍ତାମାନଙ୍କୁ ଏହି ଚିଠିରେ କାଗଜ ସହିତ ସମ୍ପୃକ୍ତ ଲୋକମାନେ ପୃଥକ୍ ହୋଇଯିବା ଏକ ଦୁଃଖଦାୟକ ଘଟଣା ବୋଲି କହି ଏହି କାର୍ଯ୍ୟକୁ ସମ୍ପାଦନ କରିବାକୁ କହିଥିଲେ । ''ଏଥିରେ ସଫଳତା ବା ବିଫଳତା ମିଳିପାରେ । କାର୍ଯ୍ୟର ପ୍ରଶଂସା ବା ନିନ୍ଦା ହୋଇପାରେ । ଯେତେବେଳେ ଜଣେ ବ୍ୟକ୍ତିର ଉଦ୍ଦେଶ୍ୟ ମହତ୍ ହୁଏ ଏବଂ କାର୍ଯ୍ୟ କରିବାର ସଫଳତା ପ୍ରମାଣିତ ହୁଏ, ଏପରିକି ତା'ର ଶତ୍ରୁମାନେ ମଧ ତାଙ୍କୁ ପ୍ରଶଂସା ଓ ସମ୍ମାନ ନ କରି ରହି ପାରନ୍ତି ନାହିଁ । ସମ୍ମାନ ପାଇବା ପାଇଁ ଆଶା କରିବାରେ କୌଣସି ଭୁଲ ନଥାଏ । ଯଦି ସମ୍ମାନ ତୁମ ରାସ୍ତାରେ ନ ଆସେ, ତେବେ ହତୋତ୍ସାହ ହୋଇ ସଂଘର୍ଷରୁ ଓହରିଯିବା ଉଚିତ ହେବ ନାହିଁ । ତୁମକୁ ତୁମ ସମ୍ମାନ ଦିଆ ନ ଗଲେ କିମ୍ବା ଅବାଞ୍ଛିତ ଭାବରେ ଉପେକ୍ଷା କରାଗଲେ, ତୁମେ ସେହି ସଂଗ୍ରାମରୁ ଓହରିଯିବା ଉଚିତ ହେବନାହିଁ ।

ନୂଆବର୍ଷର ସମ୍ପାଦକୀୟରେ ସମ୍ପାଦକ ନିଜ ଆତ୍ମ ପ୍ରଶଂସାରେ ମଗ୍ନ ହୋଇ ଆମ୍ବେଦକରଙ୍କୁ ଉପେକ୍ଷା କରିଥିଲେ । ତଥାପି କାଗଜଟି ପ୍ରକାଶ ପାଇଥିବା କାରଣରୁ ସେ ଖୁସି ହେଲେ । ପ୍ରତ୍ୟେକ ଚିଠିରେ ସେ ଏକତା ଉପରେ ଗୁରୁତ୍ୱ ଆରୋପ କରୁଥିଲେ ଏବଂ ଏହି ଏକତା ହିଁ ସମସ୍ତ ଅସ୍ପୃଶ୍ୟମାନଙ୍କୁ ସେମାନଙ୍କର ସମସ୍ୟାକୁ ସମାଧାନ କରି ସଫଳତା ଆଣି ଦେବ ବୋଲି ତାଙ୍କର ବିଶ୍ୱାସ ଥିଲା ।

ସେ ଲଣ୍ଡନରେ ପହଞ୍ଚିବା ପରେ ପରେ ଲୋକମାନ୍ୟ ତିଳକଙ୍କର ଦେହାନ୍ତ ହୋଇଥିଲା । ଗାନ୍ଧିଜୀଙ୍କର ଅସହଯୋଗ ଆନ୍ଦୋଳନ ରାଜନୀତିକୁ ତୀବ୍ର ବେଗରେ ପରିବର୍ତ୍ତନ କରି ଚାଲିଥିଲା । ଆମ୍ବେଦକର ଏହି ସମୟକୁ "ଭାରତର କାଳିମାମୟ ଯୁଗ"(dark age of India) ବୋଲି ବର୍ଣ୍ଣନା କରିଥିଲେ । ଅସ୍ପୃଶ୍ୟତା ନିବାରଣ ପାଇଁ ସେପରି କିଛି ବିପ୍ଳବାତ୍ମକ ପରିବର୍ତ୍ତନ ସେତେବେଳେ ସଙ୍ଘଟିତ ହୋଇନଥିଲା ଯଦିଓ ଗାନ୍ଧିଜୀ "ତିଳକ ସ୍ୱରାଜ ଫଣ୍ଡ" ସଂଗ୍ରହ ବେଳେ କଂଗ୍ରେସର ଅସ୍ପୃଶ୍ୟତା ନିବାରଣ ଏକ ନୀତି ହେବ ବୋଲି ଘୋଷଣା କରିଥିଲେ । କଂଗ୍ରେସ ମଧ୍ୟରେ ସମବେଦନା ଓ କାମ କରିବା ପାଇଁ ଆଗ୍ରହ ନହେବା ହେତୁ, କଂଗ୍ରେସ କାର୍ଯ୍ୟକାରୀ କମିଟି ଅସ୍ପୃଶ୍ୟ ମାନଙ୍କର ଉନ୍ନତି ପାଇଁ ହିନ୍ଦୁ ମହାସଭା ଉପରେ ଛାଡି ଦେଇଥିଲେ କାରଣ ସମସ୍ତେ ଭାବୁଥିଲେ ହିନ୍ଦୁ ମହାସଭା କେବଳ ଏହି ସମସ୍ୟା ପ୍ରତି ସଚେତନ ।

୧୯୧୯ ମସିହାର ଆଇନ୍ ପ୍ରଥମ ଥର ପାଇଁ ଭାରତୀୟ ଇତିହାସରେ ଅସ୍ପୃଶ୍ୟ ଶ୍ରେଣୀ ଥିବାର ଉଲ୍ଲେଖ କଲା । କେନ୍ଦ୍ରୀୟ ଆଇନ୍ ସଭାକୁ ଗଭର୍ଣ୍ଣର ଜେନେରାଲଙ୍କ ଦ୍ୱାରା ଯେଉଁ ଚଉଦଜଣ ସଭ୍ୟ ମନୋନୀତ ହେଲେ, ସେମାନଙ୍କ ମଧ୍ୟରୁ ଜଣେ ଥିଲେ ଅନୁନ୍ନତ ଶ୍ରେଣୀର । ସେହିପରି ଭାବରେ ରାଜ୍ୟମାନଙ୍କରୁ ଯେଉଁ ପ୍ରତିନିଧିମାନେ ମନୋନୀତ ହେଲେ ସେଥିରେ କେନ୍ଦ୍ରୀୟ ରାଜ୍ୟମାନଙ୍କରୁ ଚାରିଜଣ, ବମ୍ବେକୁ ଦୁଇଜଣ, ବିହାର ଦୁଇଜଣ ଏବଂ ବଙ୍ଗ ଓ ୟୁନାଇଟେଡ୍ ପ୍ରଭିନିସ୍‌ରୁ ଜଣେ ଲେଖାଁଏ । ମାନ୍ଦ୍ରାଜରୁ ଦଶଟି ଅନୁନ୍ନତ ଶ୍ରେଣୀ ପାଇଁ ନଅ ଜଣ ସଭ୍ୟ ମନୋନୀତ ହୋଇଥା'ନ୍ତି ।

ଆମ୍ବେଦକରଙ୍କର ରିସର୍ଚ୍ଚ କାର୍ଯ୍ୟ ଖୁବ୍ ଜୋରସୋରରେ ଆଗେଇ ଚାଲିଥାଏ । ସେ ସେତେବେଳକୁ "Provincial decentralisation of imperial finance in British India" ସନ୍ଦର୍ଭ ଲେଖି ଜୁନ ୨୧ରେ ମାଷ୍ଟର ଅଫ୍ ସାଇନ୍‌ସ ଡିଗ୍ରୀ ଲାଭ କରିଥାନ୍ତି । ୧୯୨୨ ଅକ୍ଟୋବର ବେଳକୁ ତାଙ୍କର ପ୍ରସିଦ୍ଧ ସନ୍ଦର୍ଭ "ଟଙ୍କାର ସମସ୍ୟା" ( The problem of rupee) ଶେଷ ହୋଇଥାଏ ଏବଂ ତାହାକୁ ସେ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଉପସ୍ଥାପିତ କରିଥାନ୍ତି । ଏହି ସମୟରେ ସେ ଅନ୍ୟ ଏକ ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟ ଜର୍ମାନୀର 'ବନ୍' ୟୁନିଭରସିଟିରେ ଯୋଗ ଦେବାକୁ ଇଚ୍ଛା କରୁଥାନ୍ତି । ଲଣ୍ଡନ ବିଶ୍ୱବିଦ୍ୟାଳୟରେ ନିଜର ସନ୍ଦର୍ଭ ଉପସ୍ଥାପିତ କରି 'ବନ୍' ୟୁନିଭରସିଟିକୁ

ଚାଲି ଯାଇଥାନ୍ତି । ଏ ସମୟରେ ତାଙ୍କୁ ଲଣ୍ଡନ ବିଶ୍ୱବିଦ୍ୟାଳୟର ଡକରା ପଡେ । କାରଣ ତାଙ୍କର ସନ୍ଦର୍ଭରେ ସେ ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ କେତେକ କଥା ଉପସ୍ଥାପିତ କରିଥାନ୍ତି ଯାହା ପରୀକ୍ଷକମାନଙ୍କୁ ଅପମାନ ସୂଚକ ହୋଇଥାଏ । ତେଣୁ ସନ୍ଦର୍ଭର ଶେଷ ବକ୍ତବ୍ୟକୁ ପରିବର୍ତ୍ତନ ନ କରି କିଛି ପରିବର୍ତ୍ତନ କରି ଲେଖିବାକୁ ସେମାନେ ଆଗ୍ରହ ପ୍ରକାଶ କରିଥାନ୍ତି ।

ସେ ଲଣ୍ଡନଠାରେ ରହି ତାଙ୍କର ସନ୍ଦର୍ଭ ଶେଷ କରିବାକୁ ତାଙ୍କ ହାତରେ ଅର୍ଥ ନଥାଏ । ଯାହା କିଛି ଅର୍ଥ ସେ ସଞ୍ଚୟ କରିଥିଲେ, ବହିକିଣାରେ ସେତକ ଶେଷ କରି ଦେଇଥିଲେ । ତେଣୁ ସେ ୧୯୨୩ ଏପ୍ରିଲ୍ ମାସରେ ବମ୍ବେ ପ୍ରତ୍ୟାବର୍ତ୍ତନ କଲେ ଏବଂ ବମ୍ବେଠାରେ ସନ୍ଦର୍ଭକୁ ଶେଷ କରି ପୁଣି ଥରେ ପରୀକ୍ଷା ପାଇଁ ପଠାଇଲେ । କଠିନ ପରିଶ୍ରମ, ଲୌହ ସଦୃଶ ଇଚ୍ଛାଶକ୍ତି ଓ ବୁଦ୍ଧିମତା ତାଙ୍କୁ ଡକ୍ଟର ଅଫ୍ ସାଇନ୍ସ ଉପାଧିରେ ଭୂଷିତ କରିବାରେ ସାହାଯ୍ୟ କରିଥିଲା । ଏହି ପୁସ୍ତକ ମେସର୍ସ ପି.ଏସ୍.କଙ୍ଗ ଆଣ୍ଡ ସନ୍ସ ଲିମିଟେଡ୍, ଲଣ୍ଡନଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା ଯାହାକୁ ସେ ପିତାମାତାଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରିଥିଲେ । ତାଙ୍କର ଶିକ୍ଷକ ପ୍ରଫେସର ଏଡଉଇନ୍ କାନନ ଆମ୍ବେଦକରଙ୍କୁ ଉଚ୍ଛ୍ୱସିତ ପ୍ରଶଂସା କରି କହିଥିଲେ, "Stimulating freshness in his views and reasons", ଅର୍ଥାତ "ବିଚାରଧାରାରେ ନୂତନତ୍ୱ ରହିଛି ଯାହାକି ମନକୁ ଆନ୍ଦୋଳିତ କରେ ।"

ବର୍ତ୍ତମାନ ଆମ୍ବେଦକର ଲଣ୍ଡନ ବିଶ୍ୱବିଦ୍ୟାଳୟର ଡକ୍ଟର ଅଫ ସାଇନ୍ସ ଆମେରିକାରୁ ଡକ୍ଟର ଇନ ଫିଲୋସଫି ଏବଂ ବନ୍ ବିଶ୍ୱ ବିଦ୍ୟାଳୟରେ ଅଧ୍ୟୟନ ସହିତ ଜଣେ ଓକିଲ ଭାବରେ ଭାରତର ପ୍ରବୀଣ ଶିକ୍ଷକମାନଙ୍କୁ ସମ୍ମୁଖୀନ ହେବା ପାଇଁ ସମ୍ପୂର୍ଣ୍ଣ ଭାବରେ ଉପଯୁକ୍ତ ହୋଇ ଯାଇଥିଲେ ।

ଆମ୍ବେଦକର ଓକିଲାତି କରିବାକୁ ଚେଷ୍ଟା କଲେ କାରଣ ତାଙ୍କୁ ତାହା ସୁବିଧା, ସୁଯୋଗ ଓ ସମ୍ମାନ ଦେବା ସହ ଅର୍ଥ ମଧ ଦେବ ଏବଂ ଅସ୍ପୃଶ୍ୟ ମାନଙ୍କର କାର୍ଯ୍ୟ କରିବାପାଇଁ ସୁଯୋଗ ସୃଷ୍ଟି ହେବ । ବନ୍ଧୁ ନାଭାଲ ଭାଥେନାଙ୍କ ସହଯୋଗର ଅର୍ଥ ପାଇ ସେ ୧୯୨୩ ଜୁନ୍ ମାସରେ ସନନ୍ଦ ପ୍ରାପ୍ତ ହୋଇ ଓକିଲାତି ଆରମ୍ଭ କଲେ ।

ତାଙ୍କ ଆଗରେ ଥିଲା ଅନେକ ଝଡଝଞ୍ଜା । ତାଙ୍କର ଅସ୍ପୃଶ୍ୟ ଜନ୍ମ, ଦେହର ରଙ୍ଗ, ଅନୁଭୂତି ବିହୀନ ଆଇନମନ ଏବଂ କୋର୍ଟ ପରିସରରେ ଅନ୍ୟାନ୍ୟ ଓକିଲ ମାନଙ୍କର ବ୍ୟବହାର ତାଙ୍କ ରାସ୍ତାରେ ପର୍ବତ ପରି ଠିଆ ହୋଇଥିଲେ ମଧ ସେ ତାକୁ ପରିବର୍ତ୍ତନ କରି ଆଗକୁ ଯିବାକୁ ବଦ୍ଧ ପରିକର ହେଲେ । ସେତେବେଳେ ବିଲାତି ଓକିଲମାନେ ବ୍ରିଫ୍ (କେଶ୍ ସମ୍ବନ୍ଧୀୟ କାଗଜପତ୍ର) ବିଲାତି ଜଜ୍‌ମାନଙ୍କୁ ପ୍ରଭାବିତ କରି ପାରୁଥିବା ହେତୁ ଅନେକ ମହକିଲ ସହଜରେ ପାଇ ପାରୁଥିଲେ । ସରକାରୀ ଓକିଲ ମଧ ତାଙ୍କୁ ସାହାଯ୍ୟ କରୁନଥିଲେ କାରଣ ସେ ଥିଲେ ଅସ୍ପୃଶ୍ୟ । ସେହି କାରଣରୁ ଗ୍ରାମାଞ୍ଚଳର ଯେଉଁ କେତେଗୋଟି କେଶ ମିଳିଲା, ତାକୁ ହିଁ ପାଥେୟ କରି ସେ ହାଇକୋର୍ଟ ବେଞ୍ଚର ଆଗଧାଡିରେ ବସିବାର ପ୍ରଚେଷ୍ଟା ଜାରି ରଖିଲେ ।

ସେତେବେଳକୁ ଅସ୍ପୃଶ୍ୟ ମାନଙ୍କର ଚିନ୍ତାଧାରାରେ ପରିବର୍ତ୍ତନ ହେବାକୁ ଲାଗିଥାଏ । ଶିକ୍ଷାର ପ୍ରସାର, ଯାତାୟାତର ସୁବିଧା, ଜାତୀୟତାବୋଧର ଉନ୍ମେଷ ଇତ୍ୟାଦି ଅସ୍ପୃଶ୍ୟ ମାନଙ୍କ ସମ୍ପର୍କରେ ଥିବା କୁସଂସ୍କାର ମନୋବୃତ୍ତିରେ ପରିବର୍ତ୍ତନ ଘଟାଉଥାଏ ।

ଲୁଗା ଶିଳ୍ପର ଅଭ୍ୟୁଦ୍‌ଥାନ, ଅସ୍ପୃଶ୍ୟ ଶ୍ରେଣୀକୁ ଅନ୍ୟ ଶ୍ରମଜୀବୀ ଶ୍ରେଣୀ ସହିତ ମିଶି କାମ କରିବାର ସୁଯୋଗ ଏବଂ ଜୀବନ ନିର୍ବାହର ଉନ୍ନତି ପାଇଁ ପ୍ରଚେଷ୍ଟା ଇତ୍ୟାଦି ସେମାନେ ଅନୁଭବ କରୁଥାନ୍ତି । ପ୍ରଥମ ବିଶ୍ୱଯୁଦ୍ଧ ପରେ ଗଣତାନ୍ତ୍ରିକ ଚିନ୍ତାଧାରା ଓ ସାମାଜିକ ପୁନରୁଦ୍ଧାରର ବ୍ୟାପକ କାର୍ଯ୍ୟକ୍ରମ ସମଗ୍ର ବିଶ୍ୱକୁ ବ୍ୟାପି ଯାଇଥାଏ । ଭାରତୀୟ ଅସ୍ପୃଶ୍ୟ ଶ୍ରେଣୀମାନେ ଏହି ସବୁରେ ପ୍ରଭାବିତ ହେଉଥାନ୍ତି । ସଂସ୍କାରକ ମାନେ ନିଜ ସଂସ୍କାର ପାଇଁ ଯେଉଁ ଚେଷ୍ଟା ଚଳାଇଥାନ୍ତି, ବିଭିନ୍ନ ଆନ୍ଦୋଳନ ମାଧ୍ୟମରେ ଜନଜାଗୃତି ସୃଷ୍ଟି କରୁଥାନ୍ତି କିନ୍ତୁ ତା'ର ଫଳ ଯେତେଶୀଘ୍ର ମିଳୁନଥିଲା, ଯେତେବେଳେ ଦଳିତ ଶ୍ରେଣୀ ନିଜର ନ୍ୟାଯ୍ୟଦାବିକୁ ପାଇବା ପାଇଁ ସଂଘବଦ୍ଧ ସଂଗ୍ରାମ କରିବାକୁ ଆଗେଇ ଆସନ୍ତି, ତାର ଫଳ ବେଶୀ ଭାବରେ ତ୍ୱରାନ୍ୱିତ ହୁଏ ।

ସେହି ସମୟରେ ବମ୍ବେ ଲେଜିସ୍‌ଲେଟିଭ କାଉନ୍‌ସିଲରେ ସଭ୍ୟଥିବା ଡି.ଡି ଘୋଲାପ ପ୍ରାଥମିକ ଶିକ୍ଷା ବାଧ୍ୟତାମୂଳକ ଭାବେ ଦେବା ପାଇଁ ଏକ ପ୍ରସ୍ତାବ ଆଣି ତାହା ଅସ୍ପୃଶ୍ୟମାନଙ୍କ ନିକଟରୁ ପହଞ୍ଚାଇବାର ଚେଷ୍ଟା ଚଳାଇଥାନ୍ତି । ୧୯୨୩

ଅଗଷ୍ଟ ୪ ତାରିଖରେ ବମ୍ବେ ଲେଜିସ୍‌ଲେଟିଭ କାଉନ୍‌ସିଲରେ ଏସ୍.କେ ବୋଲ୍ଲେ ଏକ ପ୍ରସ୍ତାବ ଉପସ୍ଥାପିତ କରି ଏହାକୁ ପାଶ୍ କରିବାକୁ ସକ୍ଷମ ହୋଇଥିଲେ । ଏହି ପ୍ରସ୍ତାବ ଅନୁସାରେ ସରକାରୀ ସଂସ୍ଥା ଦ୍ୱାରା ପରିଚାଳିତ ଯେ କୌଣସି ଶିକ୍ଷାଳୟ, ଜଳାଶୟ, କୂପ, ଧର୍ମଶାଳା, ଡାକ୍ତରଖାନା, କୋର୍ଟ, ଅଫିସ ଇତ୍ୟାଦିକୁ ଅସବର୍ଣ୍ଣମାନେ ଅନ୍ୟମାନଙ୍କ ସହିତ ବ୍ୟବହାର କରିପାରିବେ । କାଉନ୍‌ସିଲର ଏହି ପ୍ରସ୍ତାବ ପାଶ୍ ହେବା ମାତ୍ରେ ଅସ୍ପୃଶ୍ୟ ଲୋକମାନଙ୍କ ମଧ୍ୟରେ ଆନନ୍ଦର ଢେଉ ଖେଳିଗଲା । ସେମାନେ ଶ୍ରୀ ବୋଲେଙ୍କୁ ସମ୍ବର୍ଦ୍ଧିତ କରି ଏକ ସ୍ୱର୍ଣ୍ଣପଦକ ପ୍ରଦାନ କଲେ ।

୧୯୨୪ ଜାନୁୟାରୀ ୬ ତାରିଖରେ ବୀର ସାବରକର ଓ ୧୨ ଫେବୃୟାରୀରେ ମହାତ୍ମାଗାନ୍ଧି ଯାରଭେଡ଼ା ଜେଲରୁ ମୁକ୍ତ ହେଲେ । ସାବରକର ହିନ୍ଦୁ ସଙ୍ଗଠନ ଗଠନ କରି ଅସ୍ପୃଶ୍ୟ ମାନଙ୍କର ଉନ୍ନତି ପାଇଁ ଚେଷ୍ଟା ଚଳାଇବାବେଳେ ଗାନ୍ଧିଜୀ ସବର୍ଣ୍ଣ ଅସବର୍ଣ୍ଣ ମାନଙ୍କର ଏକତ୍ରୀକରଣ ଉପରେ ଜୋରଦେଇ କାର୍ଯ୍ୟ କରୁଥିଲେ ।

ଆମ୍ବେଦକର ମାର୍ଚ୍ଚ ୯ ତାରିଖରେ ବମ୍ବେର ଦାମୋଦର ହଲଠାରେ ଏକ ବୈଠକ ଡାକିଲେ । ଏ ବୈଠକର ଉଦ୍ଦେଶ୍ୟ ଥିଲା ଏକ ସଙ୍ଗଠନ ଗଠନ କରି ଅସ୍ପୃଶ୍ୟ ମାନଙ୍କର ସମସ୍ୟାକୁ ସରକାରଙ୍କ ନିକଟରେ ଉପସ୍ଥାପିତ କରିବା । ବହୁ ଆଲୋଚନା ପରେ ସଙ୍ଗଠନ ପ୍ରତିଷ୍ଠା କରାଯାଇ ନାମ ଦିଆଗଲା "ବହିଷ୍କୃତ ହିତକାରିଣୀ ସଭା" ଏବଂ ୧୮୬୦ ମସିହାର ଆଇନ୍ ଅନୁସାରେ ରେଜେଷ୍ଟ୍ରିଭୁକ୍ତ କରାଗଲା । । ଏହାର ସଭାପତି ହେଲେ ବାବାସାହେବ ଆମ୍ବେଦକର । ଏହି ସଙ୍ଗଠନର ଉଦ୍ଦେଶ୍ୟ ହେଲା ଦଳିତ ଶ୍ରେଣୀକୁ ସେମାନଙ୍କ ସ୍ଥିତିରୁ ଉନ୍ନୀତ କରି ଭାରତୀୟ ସମାଜରେ ଥିବା ଅନ୍ୟାନ୍ୟ ଶ୍ରେଣୀମାନଙ୍କ ସହିତ ସାମାଜିକ ଓ ରାଜନୈତିକ ସମାନତା ପ୍ରଦାନ କରିବା । ଏହି ସଭାର ଉଦ୍ଦେଶ୍ୟକୁ ସଫଳ କରିବା ପାଇଁ ଆବଶ୍ୟକ ହେଉଥିବା ସଦିଚ୍ଛା ଓ ସହଯୋଗ ଉଚ୍ଚବର୍ଗ ମାନଙ୍କଠାରୁ ନ ଆସିଲେ ଏହା ସଫଳ ହେବ ନାହିଁ ବୋଲି ମଧ୍ୟ ମତ ପ୍ରକାଶ ପାଇଲା ।

ଆମ୍ବେଦକର ଏପରି ସଙ୍ଗଠନ ଗଠନ କରିବା ମୂଳରେ ଥିଲା ହିନ୍ଦୁ ସମାଜଭିତରେ ସାମାଜିକ ପରିବର୍ତ୍ତନ ଓ ପୁନର୍ଗଠନ କରିବାର ପରିକଳ୍ପନା । ସାମାଜିକ ପରିବର୍ତ୍ତନ ପୁନର୍ଗଠନ ସଂସ୍କାର ଠାରୁ ଭିନ୍ନ ବୋଲି ସେ ବେଶ୍ ହୃଦୟଙ୍ଗମ କରିଥିଲେ । ତେଣୁ ଯେତେଗୁଡ଼ିଏ ସଙ୍ଗଠନ ଗଢ଼ି ଉଠିଥିଲା, ସେଗୁଡ଼ିକ ଥିଲା ସାମାଜିକ ସଂସ୍କାର ପାଇଁ ଉଦ୍ଦିଷ୍ଟ । ରାଣାଡେଙ୍କ ନେତୃତ୍ୱରେ ସେତେବେଳକୁ

ସଂସ୍କାର କାର୍ଯ୍ୟ ଖୁବ୍ ଜୋରସୋରରେ ଚାଲୁଥିଲା । ସେହି ସଂସ୍କାରରେ ଅନ୍ତର୍ଭୁକ୍ତ ଥିଲା ବିଧବା ବିବାହ, ସ୍ତ୍ରୀମାନଙ୍କର ସଂପତ୍ତି ଉପରେ ଅଧିକାର, ସ୍ତ୍ରୀ ଶିକ୍ଷା ଓ ବାଲ୍ୟ ବିବାହ ଉଚ୍ଛେଦ ଇତ୍ୟାଦି । କିନ୍ତୁ ଆମ୍ବେଦକରଙ୍କର ସାମାଜିକ ପରିବର୍ତ୍ତନ ଥିଲା ଜାତି ପ୍ରଥାର ବିଲୋପ ଏବଂ ସମାନତା ଭିତ୍ତିରେ ହିନ୍ଦୁସମାଜର ପୁନର୍ଗଠନ । ସଂସ୍କାରକମାନେ ସାଧାରଣତଃ ଉଚ୍ଚବର୍ଗର ପ୍ରତିନିଧିତ୍ୱ କରୁଥିଲେ ଏବଂ ଜାତି ପ୍ରଥାର ବିଲୋପ ପାଇଁ କାର୍ଯ୍ୟ କରିବାକୁ ଆଗ୍ରହୀ ନଥିଲେ ।

ସେ ସମୟରେ ପ୍ରାର୍ଥନା ସମାଜ ଓ ବ୍ରାହ୍ମ ସମାଜର ମଧ୍ୟ ଅଭ୍ୟୁଦ୍ଥାନ ହୋଇଥିଲା । ସେମାନଙ୍କର ଆଭିମୁଖ୍ୟ ଥିଲା ମାନବବାଦୀ ସଂସ୍କାର କାର୍ଯ୍ୟକ୍ରମ । ବିଭିନ୍ନ ଭାବରେ ଦେଶପ୍ରେମୀମାନେ, ରାଜାମାନେ, ସଂସ୍କାରକମାନେ, ମାନବବାଦୀମାନେ ନିଜ ନିଜ ଦୃଷ୍ଟିକୋଣରୁ ସଂସ୍କାର ଚାଲୁ ରଖିଥିଲେ ମଧ୍ୟ, ଏହାର ସମାଧାନ ହୋଇ ପାରିନଥିଲା । ରୋଗ ଥିଲା ପେଟ ଭିତରେ କିନ୍ତୁ ଅଧିକାଂଶ ସମୟରେ ମୁଣ୍ଡ ପାଇଁ ସଂସ୍କାରର ଔଷଧ ଦିଆଯାଉଥିଲା । ସେମାନଙ୍କ ପାଇଁ ଓ ସେମାନଙ୍କ ପ୍ରତି ବିଭିନ୍ନ ପ୍ରକାର ସେବା କରାଯାଉ ଥିଲେ ହେଁ ସେମାନଙ୍କ ମନରେ ଆତ୍ମପ୍ରତ୍ୟୟ ସୃଷ୍ଟି କରିବାରେ କେହି ସମର୍ଥ ହୋଇ ପାରିନଥିଲେ । ସାହାଯ୍ୟ ଓ ସହାନୁଭୂତି ବଦଳରେ ଆତ୍ମସାହାଯ୍ୟ ଥିଲା ସେମାନଙ୍କର ଆବଶ୍ୟକତା ।

୧୯୨୩ ମସିହା ବେଳକୁ ହିନ୍ଦୁ 'ମହାସଭା ମନ୍ଦିରରେ ଅସବର୍ଣ୍ଣମାନଙ୍କର ପ୍ରବେଶ' ନେଇ ଏକ ପ୍ରସ୍ତାବ ପାଶ୍ କରିଥିଲେ । କିନ୍ତୁ ସେମାନଙ୍କ ପ୍ରଚେଷ୍ଟାର ଅବହେଳା ହେତୁ ବହୁ ସଂଖ୍ୟକ ରକ୍ଷଣଶୀଳ ହିନ୍ଦୁ ଏହାକୁ ଗ୍ରହଣ କରିନଥିଲେ । ଅନ୍ୟ ପକ୍ଷରେ ବହୁ ସଂଖ୍ୟକ ଲୋକ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଥିଲେ ଏବଂ ଲୋକମାନଙ୍କର ସମବେଦନା ଓ ସମର୍ଥନର ପାତ୍ର ହୋଇଥିଲେ । ସେମାନଙ୍କର ପ୍ରସ୍ତାବ କେବଳ ଲୋକ ଦେଖାଣିଆ ହୋଇଥିବା କାରଣରୁ ଦଳିତ ଶ୍ରେଣୀକୁ ସେମାନଙ୍କର ବନ୍ଧନରୁ ମୁକ୍ତ କରିବାରେ ଯେଉଁ ସଙ୍କଳ୍ପବଦ୍ଧ ସଂଗ୍ରାମ ଲୋଡା ତାହା କରି ପାରିନଥିଲେ । ହିନ୍ଦୁ ମହାସଭାର ନେତାମାନେ ଥିଲେ ରକ୍ଷଣଶୀଳ ଓ ପ୍ରତିକ୍ରିୟାଶୀଳ ।

ଏ ବିଷୟ ପ୍ରତି କଂଗ୍ରେସର ଦୃଷ୍ଟିକୋଣରେ ମଧ୍ୟ ବିଶେଷ କିଛି ପରିବର୍ତ୍ତନ ଦେଖାଯାଇନଥିଲା । ସେମାନେ ଭାରତୀୟ ମୁସଲମାନଙ୍କ ପ୍ରତି ବିଶେଷ ଗୁରୁତ୍ୱ

ଆରୋପ କରୁଥିଲେ । ଅସ୍ପୃଶ୍ୟ ମାନଙ୍କର ଉନ୍ନତି ପାଇଁ ଗାନ୍ଧିଜୀଙ୍କର ଆନ୍ଦୋଳନକୁ ଆଗେଇ ନେବାରେ ମଧ୍ୟ ସାହାଯ୍ୟ କରୁନଥିଲେ । ସେତେବେଳକୁ କଂଗ୍ରେସର ଚାଳିଶଗୋଟି ଅଧିବେଶନ ସରି ଯାଇଥାଏ । ସେମାନେ ଦଳିତ ଶ୍ରେଣୀ ପିଇବା ପାଇଁ ପାଣି ମୁନ୍ଦେ ପାଇବେ କି ନାହିଁ, ସେଥିପ୍ରତି ନଜର ବି ଦେଇ ନଥାଏ ।

ଗାନ୍ଧି, ସଭରକର ଓ ଆମ୍ବେଦକର ଦଳିତଶ୍ରେଣୀର ଉନ୍ନତି ପାଇଁ କାର୍ଯ୍ୟ କରିଥିଲେ । ଗାନ୍ଧିଜୀ ଜାତିପ୍ରଥାରେ ବିଶ୍ୱାସ କରୁଥିଲେ ଏବଂ ଚାରିଗୋଟି ବର୍ଣ୍ଣାଶ୍ରମକୁ ଗ୍ରହଣ କରୁଥିଲେ । ତାଙ୍କ ଦୃଷ୍ଟିକୋଣ ଥିଲା ଜାତି ପ୍ରଥାକୁ ଠିକ୍ ସେହିପରି ରଖି ଦଳିତ ଶ୍ରେଣୀରୁ ଅସ୍ପୃଶ୍ୟତାକୁ ନିବାରଣ କରି ଏକ ପଞ୍ଚମ ବର୍ଣ୍ଣଭାବରେ ରଖିବା । ଜଣେ ମାନବବାଦୀ ଭାବରେ, ସେ ଅସ୍ପୃଶ୍ୟମାନଙ୍କ ପ୍ରତି ଗଭୀର ସମବେଦନା ପୋଷଣ କରୁଥିଲେ ଏବଂ ସେମାନେ ଉଚ୍ଚବର୍ଣ୍ଣର ଲୋକମାନଙ୍କ ଦ୍ୱାରା ନିର୍ଯ୍ୟାତିତ ହେଉଛନ୍ତି, ତାହା ଅନୁଭବ କରିଥିଲେ । ହିନ୍ଦୁ ସମାଜ ବ୍ୟବସ୍ଥା ମଧ୍ୟରେ ସଂସ୍କାର କରି ଅସ୍ପୃଶ୍ୟ ମାନଙ୍କୁ ଉଠାଇବା ବେଳେ ଉଚ୍ଚବର୍ଣ୍ଣ ପ୍ରତି କୌଣସି ଅସୂୟା ପୋଷଣ କରିବା ଗାନ୍ଧିଜୀଙ୍କର କାର୍ଯ୍ୟପ୍ରଣାଳୀରେ ନଥିଲା । ସେ ଥିଲେ ସେ ଦୃଷ୍ଟିକୋଣରୁ ସଂସ୍କାରକ । ସାବରକର ଥିଲେ ଜାତୀୟତାବାଦୀ, ବାସ୍ତବବାଦୀ ଓ ଚିନ୍ତାଧାରାରେ ବିପ୍ଲବୀ । ସେ ହିନ୍ଦୁ ସମାଜକୁ ଏକ ଶ୍ରେଣୀହୀନ ସମାଜ ମଧ୍ୟରେ ଦେଖିବାକୁ ଇଚ୍ଛା କରି ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଦୃଷ୍ଟିକୋଣରୁ ସମସ୍ତେ ସମାନ ହେବାକୁ ଚାହିଁଥିଲେ । କିନ୍ତୁ ତାଙ୍କର ଏହି ପ୍ରଗତିଶୀଳ ଚିନ୍ତାଧାରା କେବଳ ରତ୍ନଗିରି ଜିଲ୍ଲା ମଧ୍ୟରେ ସୀମାବଦ୍ଧ ହୋଇ ସର୍ବବ୍ୟାପକ ହୋଇ ପାରିନଥିଲା ।

ଏମାନଙ୍କ ଠାରୁ ଆମ୍ବେଦକର ଥିଲେ ଭିନ୍ନ । ସେ ସେହି ଅସ୍ପୃଶ୍ୟ ସମାଜରୁ ଉଭା ହୋଇଥିଲେ । ସେ ସେମାନଙ୍କର ଭାବନାକୁ ଓ ଅନୁଭବକୁ ବୁଝିଥିଲେ । ନିଃସ୍ୱାର୍ଥପର ଭାବରେ ସେମାନଙ୍କର ସ୍ନେହ ଓ ଶ୍ରଦ୍ଧା କିପରି ପାଇବାକୁ ହେବ, ତାହା ଜାଣିଥିଲେ । ସେମାନଙ୍କର ନିମ୍ନ ଜୀବନଯାପନ, ଅସ୍ୱାସ୍ଥ୍ୟ ବାତାବରଣ ମଧ୍ୟରେ ବଞ୍ଚିବା ଇତ୍ୟାଦିକୁ ସେ ଅଧ୍ୟୟନ କରି, ଅନୁଭବ କରି, ଦେଖି ବୁଝି ପାରିଥିଲେ । ସେମାନଙ୍କ ଆଗରେ ସେ ଶିକ୍ଷିତ ଭାବରେ ଉଭା ହେଲେ । ସେମାନେ ତାଙ୍କର ନିର୍ଯ୍ୟାତନାକୁ ଅନୁଭବ କରିଥିଲେ, ଦୁଃଖ ଦୈନ୍ୟ ପ୍ରତି ସଚେତନ ଥିଲେ । ତାଙ୍କର ନୈତିକ ମୂଲ୍ୟବୋଧ ପ୍ରଜ୍ୱଳିତ ହୋଇ ତାଙ୍କ ବ୍ୟକ୍ତିତ୍ୱକୁ ଗାରିମାମୟ କରୁଥିଲା । ବିଶ୍ୱର ତିନିଗୋଟି ବିଶ୍ୱ ବିଦ୍ୟାଳୟରୁ ସେ ଉପାଧି ପ୍ରାପ୍ତ ହୋଇ ଶିକ୍ଷିତ ବର୍ଗମାନଙ୍କ

ନିକଟରେ ଗଣ୍ୟମାନ୍ୟ ହୋଇଥିଲେ । ନିମ୍ନଜାତିର, ଅସ୍ପୃଶ୍ୟ ଜାତିର ଦୁଃଖ, ଦୁର୍ଦ୍ଦଶା ଓ ତିରସ୍କାରକୁ ସେ ନିଜର ଦୁଃଖ ଦୁର୍ଦ୍ଦଶାଭାବରେ ଗ୍ରହଣ କରୁଥିଲେ । ତେଣୁ ସେ ଏହି ସହୁଥିବା, କ୍ରୀତଦାସ ସଦୃଶ ବଞ୍ଚୁଥିବା ମଣିଷମାନଙ୍କୁ ଆତ୍ମ ସମ୍ମାନବୋଧ ଦେବାକୁ ବଦ୍ଧ ପରିକର ହୋଇଥିଲେ ।

ବହିସ୍କୃତ ହିତକାରିଣୀ ସଭାର ଆରମ୍ଭ ଏକ ନୂତନ ଆତ୍ମସମ୍ମାନବୋଧ ଯୁଗର ଅୟମାରମ୍ଭ ହେଲା । ଏହି ସଭା ଶୋଲାପୁରଠାରେ ଅସ୍ପୃଶ୍ୟମାନଙ୍କ ନିମିତ୍ତ ଏକ ହଷ୍ଟେଲ, ସରସ୍ୱତୀ ବିକାଶ ନାମକ ଏକ ଲାଇବ୍ରେରୀ, ମାହାର ବକି କ୍ଲବ ଇତ୍ୟାଦି ସ୍ଥାପନ କରି ସେମାନଙ୍କ ମଧ୍ୟରେ ଶିକ୍ଷା, ସ୍ୱାସ୍ଥ୍ୟ ଓ ଉନ୍ନତମାନର ସାଂସ୍କୃତିକ ଜୀବନଯାପନ ପାଇଁ ଚେତନା ଜନ୍ମାଇବାକୁ ଆରମ୍ଭ କଲେ । ଅସ୍ପୃଶ୍ୟ ଶ୍ରେଣୀର ଲୋକମାନେ ଆମ୍ବେଦକରଙ୍କ ବ୍ୟକ୍ତିତ୍ୱ ପ୍ରତି ଆକୃଷ୍ଟ ହେଲେ । ପ୍ରଥମେ ପ୍ରଥମେ ଲୋକମାନେ ତାଙ୍କ ସଭାରେ ଯୋଗ ଦେଉନଥିଲେ । କ୍ରମଶଃ ଲୋକମାନଙ୍କ ମଧ୍ୟରେ ତାଙ୍କ ପ୍ରତି ଶ୍ରଦ୍ଧା ଜାଗ୍ରତ ହେବା ଦ୍ୱାରା ସେମାନେ ବହୁ ସଂଖ୍ୟାରେ ଯୋଗ ଦେବାକୁ ଲାଗିଲେ । ୧୯୨୫ ମସିହାରେ ରାମସ୍ୱାମୀ ନାଇକରଙ୍କ ନେତୃତ୍ୱରେ ଏକ ଜନ ଆନ୍ଦୋଳନ ତ୍ରାଭାଙ୍କୋର ଠାରେ ଆରମ୍ଭ ହେଲା । ସେତେବେଳେ ଏକ ସର୍ବସାଧାରଣ ରାସ୍ତାକୁ ଅସ୍ପୃଶ୍ୟମାନେ ବ୍ୟବହାର କରିବା ଉପରେ ନିଷେଧାଜ୍ଞା ଥିଲା ।

ଏହି ଆନ୍ଦୋଳନ ଆରମ୍ଭ ହେବାମାତ୍ରେ ସବର୍ଣ୍ଣ ମାନଙ୍କ ମନରେ ମାନବିକ ଚେତନା ଜାଗ୍ରତ ହେଲା ଓ ସେମାନେ ଏହି ରାସ୍ତା ଅସବର୍ଣ୍ଣମାନଙ୍କ ନିମିତ୍ତ ଖୋଲିଦେଲେ । ଏ ସମୟରେ ମାନ୍ଦ୍ରାଜ ଠାରେ ଅନ୍ୟ ଏକ ଘଟଣା ଘଟିଲା । ମୃଗସେନ ନାମକ ଜଣେ ଅସ୍ପୃଶ୍ୟ ମାନ୍ଦ୍ରାଜ ଠାରେ ଥିବା ଏକ ମନ୍ଦିରକୁ ପ୍ରବେଶ କଲେ । ତାଙ୍କର ପ୍ରବେଶ ଫଳରେ ତାଙ୍କୁ ବନ୍ଦି କରାଗଲା ଏବଂ ହିନ୍ଦୁ ମନ୍ଦିର ଅପବିତ୍ର କରିବା ଅପରାଧରେ ତାଙ୍କୁ ଦଣ୍ଡ ଦିଆଗଲା ।

ଆମ୍ବେଦକର ଏହି ଘଟଣା ଗୁଡିକୁ ସାବଧାନତାର ସହ ଲକ୍ଷ୍ୟ କରୁଥିଲେ । ସେ ଏହି ଘଟଣାଟିକୁ ତାଙ୍କ ପତ୍ରିକାରେ ପ୍ରକାଶ କଲେ । ସେତେବେଳକୁ ଓକିଲ ଭାବରେ ତାଙ୍କର ଖ୍ୟାତି ବଢ଼ିବାକୁ ଆରମ୍ଭ କରି ଦେଇଥାଏ । ହିନ୍ଦୁ ସମାଜ ରକ୍ଷଣଶୀଳ ଓ ପ୍ରତିକ୍ରିୟାଶୀଳ ହିନ୍ଦୁମାନଙ୍କ ହାତରୁ କ୍ରମଶଃ ହୁଗୁଳା ହେବାକୁ ଆରମ୍ଭ କରିଥାଏ । ଏବଂ ଏହି କାର୍ଯ୍ୟକୁ ସଫଳତାର ସହ କରିବାପାଇଁ ଅଦମ୍ୟ ସାହସ, ଗଭୀର ବିଶ୍ୱାସ ଓ ଅମାପ ଶକ୍ତି ଆବଶ୍ୟକ କରୁଥାଏ ।

ଆମ୍ବେଦକର ତାଙ୍କର ଦିନଗୁଡିକୁ ଇମ୍ପ୍ରୁଭମେଣ୍ଟ ଟ୍ରଷ୍ଟର ସେହି ତିନି ମହଲା କୋଠାଘରେ ବିତାଉଥାନ୍ତି । କୋଠାଘରର ପ୍ରତ୍ୟେକ ମହଲାରେ ଅଶିଟି ଲେଖାଁଏ ରୁମ୍ ଥାଏ । ପ୍ରତ୍ୟେକ ମହଲାରେ ଦୁଇଟି ପାଣି ଟ୍ୟାପ୍, ଦୁଇଟି ପାଇଖାନା, ସମସ୍ତଙ୍କର ଗାଧୋଇବା, ଲୁଗା ସଫାକରିବା ଓ ବାସନ ମାଜିବା ପାଇଁ ଥାଏ । ସେହି ଘର ମାନଙ୍କରେ ଅସ୍ପୃଶ୍ୟ ଜାତିର ଶ୍ରମିକମାନେ ବସବାସ କରି ରହିଥାନ୍ତି । ଆମ୍ବେଦକର ପାଖ ଏକ କୋଠାରେ ଏକ କ୍ଷୁଦ୍ର ଗୃହରେ ଅଫିସ୍ କାର୍ଯ୍ୟ ଚଳାଉଥାନ୍ତି । କେହି ଦେଖା କରିବାକୁ ଆସିଲେ ଅଫିସ ବାରଣ୍ଡାରେ ହାତ ନଥିବା ଚେୟାରରେ ବସି ଆଲୋଚନା ହୁଏ ।

ସେହି ସମୟରେ ରମାବାଈ ପୁଣି ଏକ ପୁତ୍ରକୁ ଜନ୍ମ ଦିଅନ୍ତି ଯେକି ଅଳ୍ପଦିନ ପରେ ମୃତ୍ୟୁବରଣ କରେ । ଦୁଃଖରେ ଆମ୍ବେଦକର ଭାଙ୍ଗି ପଡନ୍ତି । ମନରେ ନିରୁତ୍ସାହ ଭାବ ମଧ୍ୟ ଜାଗ୍ରତ ହୁଏ । ସେ ମନେ ମନେ ଏକ ନୂତନ ଆଲୋକର ସନ୍ଧାନରେ ଲାଗିଥାନ୍ତି ।

ପ୍ରତ୍ୟେକ ବିଶିଷ୍ଟ ଲୋକ ଜୀବନରେ ଏପରି ସମୟ ଆସେ । କାର୍ଯ୍ୟ କ୍ଷେତ୍ରରେ ଭମ୍ପ ପ୍ରଦାନ କରିବା ପୂର୍ବରୁ ଯେମିତି ସବୁ କିଛି ସ୍ଥିର ଜଣାଯାଏ । କିନ୍ତୁ ଯେଉଁମାନେ ପ୍ରକୃତ ନେତା ସେମାନଙ୍କର କାର୍ଯ୍ୟ କରିବାର ଆଗ୍ରହ ଓ ଲୋକମାନଙ୍କ ପାଇଁ ହୃଦୟରୁ ପ୍ରବାହିତ ଫଲ୍‌ଗୁଧାରା ସେମାନଙ୍କୁ ଆଗକୁ ନେବାରେ ସାହାଯ୍ୟ କରେ ଓ ଲୋକଙ୍କର ହୃଦୟରେ ବସାଇବାକୁ ସକ୍ଷମ ହୁଏ ।

## ଗ) ସଂଗ୍ରାମ ପଥେ

ଆମ୍ବେଦକରଙ୍କର ଜୀବନ ସଂଗ୍ରାମର ଜୀବନ । ନିଜ ଲୋକମାନଙ୍କ ପାଇଁ ଗଭୀର ସମବେଦନା, ପ୍ରୀତି ଓ ପ୍ରେମର ଜୀବନ । ପୁତ୍ରଶୋକ କେବଳ କ୍ଷଣିକ ମାତ୍ର । ସେତେବେଳକୁ ସେ ଗରୀବ ଲୋକମାନଙ୍କର ଓକିଲଭାବେ ସୁଖ୍ୟାତି ଅର୍ଜନ କରିସାରିଥିଲେ । ବିଶେଷ କରି ଅସ୍ପୃଶ୍ୟ ଗରୀବ ଲୋକମାନେ ବହୁଦୂର ଦୂରାନ୍ତରୁ ତାଙ୍କ ପାଖକୁ ଆଶା ଭରସା ପାଇବାକୁ ଦୌଡି ଆସୁଥିଲେ । ସେ ବା ସେମାନଙ୍କୁ ନିରାଶ କରନ୍ତେ କେମିତି ?

୧୯୨୭ ଫେବୃଆରୀ ୨ ତାରିଖ ଦିନ ବମ୍ବେ ଦଳିତ ଶ୍ରେଣୀ ଶିକ୍ଷକମାନେ ତାଙ୍କ ସମ୍ମାନାର୍ଥେ ଏକ ସଭାର ଆୟୋଜନ କଲେ । ସେ ବମ୍ବେ ବିଧାନ

ପରିଷଦ(Bombay legislative council)କୁ ସଭ୍ୟଭାବେ ମନୋନୀତ ହୋଇଥା'ନ୍ତି । ବମ୍ବେ ଦଳିତ ଶ୍ରେଣୀ ଶିକ୍ଷକମାନେ ସେହି ସଭାରେ ଆମ୍ବେଦକରଙ୍କ କାର୍ଯ୍ୟକୁ ପ୍ରଶଂସା କରିବା ସହିତ କିଛି ଅର୍ଥ ସଂଗ୍ରହ କରି ଦେବାର ସ୍ଥିର ହେଲା । ଏପ୍ରିଲ୍ ୧୯ ତାରିଖ ଦିନ ବମ୍ବେର ପାରେଲଠାରେ ଥିବା ଦାମୋଦର ହଲ୍‌ରେ ଶ୍ରୀ ଏସ୍.ବି. ପେନ୍ଦୁରକରଙ୍କ ସଭାପତିତ୍ୱରେ ଏକ ସଭା ଅନୁଷ୍ଠିତ ହୋଇ ଏହି ଅର୍ଥ ତାଙ୍କୁ ଅର୍ପଣ କରାଗଲା । ସେ ସେହି ଅର୍ଥକୁ 'ବହିଷ୍କୃତ ହିତକାରିଣୀ ସଭା'କୁ ଦାନ କରିଦେଲେ ।

## ମାହାଦ ସମ୍ମିଳନୀ (Mahad Conference)

୧୯୨୭ ମସିହା ମାର୍ଚ୍ଚ ୧୯ ଓ ୨୦ ତାରିଖରେ ଦଳିତ ଜାତି ଲୋକମାନଙ୍କର ମାହାଦଠାରେ ଏକ ସମ୍ମିଳନୀ ଅନୁଷ୍ଠିତ ହେଲା । ଏହି ସମ୍ମିଳନୀରେ ମହାରାଷ୍ଟ୍ର ଓ ଗୁଜୁରାଟର ୧୫ ବର୍ଷରୁ ୭୦ବର୍ଷ ବୟସର ସମସ୍ତ ନିର୍ଯ୍ୟାତିତ ଶ୍ରେଣୀର ଲୋକେ ଯୋଗ ଦେଇଥିଲେ । ୧୯୨୩ ମସିହାରେ ବମ୍ବେ ସରକାର ଏକ ପ୍ରସ୍ତାବ ପାଶ୍ କରିଥିଲେ ଯାହା ୧୯୨୬ ମସିହାରେ ସାମାନ୍ୟ ପରିବର୍ତ୍ତିତ ହୋଇଥିଲା । ଯେଉଁ ପ୍ରସ୍ତାବରେ ଅସ୍ପୃଶ୍ୟମାନଙ୍କ ପାଇଁ ଚୌଦାର ଟ୍ୟାଙ୍କ ଖୋଲି ଦେବାର ନିଷ୍ପତ୍ତି ଗ୍ରହଣ କରାଯାଇଥିଲା । କିନ୍ତୁ ସେ ପର୍ଯ୍ୟନ୍ତ ତାହା କାର୍ଯ୍ୟକାରୀ ହୋଇ ପାରିନଥିଲା । ଏସ୍.କେ. ଭୋଲେ ଯେଉଁ ପ୍ରସ୍ତାବ ରଖିଥିଲେ ଓ ଯାହା ବମ୍ବେ ବିଧାନ ପରିଷଦ ଦ୍ୱାରା ଗୃହୀତ ହୋଇଥିଲା, ସେଥିରେ କୁହାଯାଇଥିଲା, "The council recommends that the untouchable clans be allowed to use all public water places, wells, and dharmaslas which are built and maintained out of public funds & are adminstered by bodies appointed by Government & created by a State, as well as public schools, courts and offices and dispensaries."

ମାହାଦରେ ଥିବା ସବର୍ଣ୍ଣ ହିନ୍ଦୁମାନେ କିନ୍ତୁ ଏହି ପ୍ରସ୍ତାବର ବିରୋଧୀ ଥିଲେ ।

୧୯୨୭ ମାର୍ଚ୍ଚ ୧୯ ଓ ୨୦ ତାରିଖରେ ଯେଉଁ ସମ୍ମିଳନୀ ଅନୁଷ୍ଠିତ ହେଲା ସେଠାରେ ପ୍ରାୟ ଦଶହଜାର ପ୍ରତିନିଧି ଯୋଗ ଦେଇଥିଲେ । ଆମ୍ବେଦକର ନିଜର

ସଭାପତି ଅଭିଭାଷଣରେ ନିଜ ମନରୁ ଉଚ୍ଚ ଓ ନୀଚ ଭାବକୁ ଉଖାରି ଫିଙ୍ଗି ଦେବା ଉପରେ ଗୁରୁତ୍ୱ ଦେଇ ନିଜକୁ ଉନ୍ନତ କରିବାପାଇଁ ଆତ୍ମସାହାଯ୍ୟ(self-help), ଆତ୍ମ ସମ୍ମାନ (self-respect) ଓ ଆତ୍ମଜ୍ଞାନ (self-knowledge) ବୃଦ୍ଧି କରିବାକୁ କହିଥିଲେ । ସେ ତାଙ୍କର ସମର୍ଥକମାନଙ୍କୁ ସରକାରୀ ଚାକିରିରେ ପ୍ରବେଶ କରିବାକୁ କହି ଜଙ୍ଗଲ ଜମି ସଂଗ୍ରହ କରି କୃଷି କାମ କରିବାପାଇଁ ଉପଦେଶ ଦେଲେ । ସେହି ସମ୍ମିଳନୀରେ ଗୋଟିଏ ପ୍ରସ୍ତାବ ଗୃହୀତ ହେଲା । ଯେଉଁ ପ୍ରସ୍ତାବରେ ବୋଲେ ପ୍ରସ୍ତାବକୁ କାର୍ଯ୍ୟକାରୀ କରିବାକୁ ସବର୍ଣ୍ଣ ହିନ୍ଦୁ ଓ ସରକାରଙ୍କୁ ଅନୁରୋଧ କରାଗଲା । ଏହି ପ୍ରସ୍ତାବକୁ ଦୁଇଜଣ ସବର୍ଣ୍ଣ ହିନ୍ଦୁ ମଧ୍ୟ ସମର୍ଥନ କରିଥିଲେ । ସମ୍ମିଳନୀ ଶେଷ ହେବାପରେ ଉପସ୍ଥିତ ଥିବା ୧୦ ହଜାର ପ୍ରତିନିଧି ଚୌଦ୍ୱାର ପୁଷରଣୀ ଅଭିମୁଖେ ଯାତ୍ରା କରି ନିଜର ଅଧିକାର ସାବ୍ୟସ୍ତ କରିବାକୁ ସ୍ଥିର କଲେ । ଆମ୍ବେଦକର ଚୌଦ୍ୱାର ପୁଷରଣୀରୁ ପାଣିନେଇ ପିଇଲେ ଓ ଉପସ୍ଥିତ ସମସ୍ତ ପ୍ରତିନିଧିମାନେ ମଧ୍ୟ ପାଣିନେଇ ପିଇଲେ ।

ଏହି ସମୟରେ ଏକ ଗୁଜବ ପ୍ରଚାରିତ ହେଲା ଯେ ଅସବର୍ଣ୍ଣମାନେ ବୀରେଶ୍ୱର ମନ୍ଦିରରେ ପ୍ରବେଶ କରୁଛନ୍ତି । ସବର୍ଣ୍ଣ ହିନ୍ଦୁମାନେ ସଭାମଣ୍ଡକୁ ଆସି ଅସବର୍ଣ୍ଣମାନଙ୍କ ଉପରେ ଆକ୍ରମଣ କଲେ । କିଛି ଲୋକ ଆହତ ହେଲେ । ଲୋକମାନେ ଦୌଡାଦୌଡି କରି ନିକଟରେ ଥିବା ମୁସଲମାନ ବସ୍ତିରେ ଆଶ୍ରୟ ନେଲେ । ଆମ୍ବେଦକର ପୁଲିସ ଥାନାରେ ଆଶ୍ରୟ ନେବାକୁ ବାଧ୍ୟ ହେଲେ ।

ନିଜର ନାଗରିକ ଅଧିକାରକୁ ସାବ୍ୟସ୍ତ କରିବାର ପ୍ରଥମ ପଦକ୍ଷେପ ଏତିକିରେ ସୀମିତ ହୋଇଗଲା । ଅସବର୍ଣ୍ଣମାନଙ୍କୁ ସାମାଜିକ ବାଚ୍ଛନ୍ଦ କରାଗଲା । ସେମାନଙ୍କୁ ଜମିଜମାରୁ ଉଚ୍ଛେଦ କରାଗଲା ଏବଂ ବିଭିନ୍ନ ଗ୍ରାମମାନଙ୍କରେ ଦଣ୍ଡିତ କରାଗଲା । ଆମ୍ବେଦକର ନିଜଲୋକମାନଙ୍କୁ ଜୋର ଜବରଦସ୍ତି ସାଧାରଣ ଜଳାଶୟ ଓ ମନ୍ଦିର ମାନଙ୍କରେ ପ୍ରବେଶ କରିବାକୁ ଆହ୍ୱାନ କଲେ । ତାଙ୍କ ଲୋକମାନଙ୍କର ଅଧିକାରକୁ ଆଦାୟ କରିବାପାଇଁ ସେ ସତ୍ୟାଗ୍ରହ କରିବାକୁ ସ୍ଥିର କଲେ । ସତ୍ୟଶୋଧକ ଆନ୍ଦୋଳନର ଦୁଇଜଣ ପ୍ରମୁଖ ନେତା ଜାଭଲକର ଓ ଜାଧେ ତାଙ୍କୁ ଏହି କାର୍ଯ୍ୟରେ ସାହାଯ୍ୟ କରିବାକୁ ଆଗେଇ ଆସିଲେ ଏବଂ ସେମାନଙ୍କର ପ୍ରସ୍ତାବ ଥିଲା ଯେ ଏଥିରୁ ବ୍ରାହ୍ମଣମାନଙ୍କୁ ସମ୍ପୂର୍ଣ୍ଣ ପୃଥକ୍ ରଖାଯିବା ଦରକାର । କିନ୍ତୁ ଆମ୍ବେଦକର ଘୋଷଣା କରି କହିଥିଲେ ଯେ ସମସ୍ତ ବ୍ରାହ୍ମଣଙ୍କୁ ଅସ୍ପୃଶ୍ୟମାନଙ୍କର ଶତ୍ରୁ ବୋଲି ବିଚାର କରିବା ଭୁଲ୍ ।

୧୯୨୭ ଡିସେମ୍ବର ୨୫ ତାରିଖ ଦିନ ମାହଦ ଠାରେ ଏକ ସତ୍ୟାଗ୍ରହ ସମ୍ମିଳନୀ ଆହୂତ ହେଲା । ଜଣେ ମୁସଲମାନ ନାଗରିକ ସତ୍ୟାଗ୍ରହର ସ୍ଥାନ ଦେଲେ । ସେଠାକାର ବ୍ୟବସାୟୀମାନେ ଏହି ସମ୍ମିଳନୀକୁ ପୂର୍ଣ୍ଣ ଅସହଯୋଗ କଲେ । ଅଭ୍ୟର୍ଥନା ସମିତି ଅନ୍ୟ ସ୍ଥାନରୁ ଅଟା କିଣି ଆଣିଲେ । ୨୦୦ ଜଣ ପ୍ରତିନିଧିଙ୍କ ସହିତ ଆମ୍ବେଦକର ବମ୍ବେରୁ ଆସିଲେ । ପ୍ରାୟ ତିନି ହଜାର ସତ୍ୟାଗ୍ରହୀ ପ୍ରସ୍ତୁତ ହୋଇଗଲେ । ଜିଲ୍ଲା ମାଜିଷ୍ଟ୍ରେଟ ଏହି ଆନ୍ଦୋଳନକୁ ବନ୍ଦ କରିବାକୁ ଆମ୍ବେଦକରଙ୍କୁ ଅନୁରୋଧ କଲେ ।

ଆମ୍ବେଦକର ନିଜ ଭାଷଣରେ ସମସ୍ତ ଅସମାନତାର ମୂଳ କାରଣ ବର୍ଣ୍ଣ ବ୍ୟବସ୍ଥା ବୋଲି କହି ସେହି ବ୍ୟବସ୍ଥା ଉପରେ ପ୍ରଚଣ୍ଡ ଆକ୍ରମଣ କଲେ । ସେ କହିଲେ ଯେ ସମାନତା ଅର୍ଥ ସମାନ ସୁଯୋଗ ଏବଂ ହିନ୍ଦୁସମାଜ ଦୁଇଟି ନୀତି ଉପରେ ଆଧାରିତ ହେବା ଉଚିତ୍ । ପ୍ରଥମଟି ସମାନତା ଓ ଦ୍ୱିତୀୟଟି ଜାତିପ୍ରଥାର ବିଲୋପ ।

ସେଠାରେ ମନୁସ୍ମୃତିକୁ ପୋଡି ପକାଇବା ପାଇଁ ଏକ ପ୍ରସ୍ତାବ ଗ୍ରହଣ କରାଗଲା କାରଣ ମନୁ ଅସ୍ପୃଶ୍ୟମାନଙ୍କ ମଧ୍ୟରେ ସାମାଜିକ, ଆର୍ଥିକ, ରାଜନୈତିକ ଓ ଧାର୍ମିକ ଦାସତ୍ୱ ବ୍ୟବସ୍ଥା ହିଁ ସୃଷ୍ଟି କରିଛନ୍ତି ବୋଲି ସେ ମତ ଦେଲେ । ୧୯୨୭ ଡିସେମ୍ବର ମାସ ୨୫ ତାରିଖ ଦିନ ମନୁସ୍ମୃତିକୁ ପୋଡାଗଲା । ଅନ୍ୟ ଏକ ପ୍ରସ୍ତାବରେ ପୁରୋହିତବାଦକୁ ଗଣତାନ୍ତ୍ରିକ କରାଗଲା । ଯେଉଁମାନେ ଚାହିଁବେ ସେମାନେ ପୁରୋହିତ କାର୍ଯ୍ୟ କରିପାରିବେ । ସତ୍ୟାଗ୍ରହ ସମ୍ବନ୍ଧିତ ପ୍ରସ୍ତାବକୁ ଆମ୍ବେଦକର ନିଜେ ଉପସ୍ଥାପନ କରି କହିଲେ ଯେ ବର୍ତ୍ତମାନ ପରିସ୍ଥିତିରେ ସରକାରଙ୍କୁ ବିରୋଧ କରିବା ଉଚିତ୍ ନୁହେ ।

## ମନ୍ଦିର ପ୍ରବେଶ ସତ୍ୟାଗ୍ରହ

୧୯୩୦ ମସିହାରେ ନାସିକ୍ ଠାରେ ଥିବା କାଳାରାମ ମନ୍ଦିରରେ ଅସବର୍ଣ୍ଣମାନଙ୍କର ପ୍ରବେଶ ପାଇଁ ଆନ୍ଦୋଳନ ଆରମ୍ଭ ହେଲା । ଆମ୍ବେଦକର ଭାବିଲେ ଯେ ଏହି ମନ୍ଦିର ପ୍ରବେଶ ସତ୍ୟାଗ୍ରହ ଦ୍ୱାରା ସବର୍ଣ୍ଣ ହିନ୍ଦୁମାନଙ୍କର ମାନସିକତାରେ ପରିବର୍ତ୍ତନ ଘଟିବ ଏବଂ ଅନ୍ୟ ମନ୍ଦିର ମାନଙ୍କରେ ଅସବର୍ଣ୍ଣମାନଙ୍କର ପଥ ସୁଗମ ହୋଇପାରିବ । ଏହି ଶାନ୍ତିପୂର୍ଣ୍ଣ ସତ୍ୟାଗ୍ରହର ନେତୃତ୍ୱ ନିଜେ ଆମ୍ବେଦକର ନେଲେ । ସତ୍ୟାଗ୍ରହ କମିଟିର ସମ୍ପାଦକ ଥିଲେ

ବାଉରାଓ ଗାଇକୋୱାଡ । ପ୍ରାୟ ୧୫ ହଜାର ପୁରୁଷ ଓ ୫ ଶହ ସ୍ତ୍ରୀ ସ୍ୱେଚ୍ଛାସେବକ ଧରି ଚାରିଗୋଟି ଦଳରେ ବିଭକ୍ତ ହୋଇ କାଳାରାମ ମନ୍ଦିର ନିକଟକୁ ଏମାନେ ଅଗ୍ରସର ହେଲେ । ମନ୍ଦିରର ଦ୍ୱାର ବନ୍ଦ ଥିଲା । ସତ୍ୟାଗ୍ରହୀମାନେ ଗୋଦାବରୀ ନଦୀ ଆଡକୁ ଗଲେ । ସବର୍ଣ୍ଣ ହିନ୍ଦୁମାନେ ଏମାନଙ୍କ ଉପରକୁ ପଥର ଓ ଯୋତା ଫିଙ୍ଗିଲେ । ପ୍ରାୟ ମାସେ କାଳ ଏହି ଆନ୍ଦୋଳନ ଚାଲିବାପରେ ସବର୍ଣ୍ଣ ଓ ଅସବର୍ଣ୍ଣଙ୍କ ମଧ୍ୟରେ ଏକ ସମାଧାନ କରାଗଲା । ଅସବର୍ଣ୍ଣ ଓ ସବର୍ଣ୍ଣ ହିନ୍ଦୁମାନେ ରାମନବମୀଦିନ ରାମଙ୍କର ରଥକୁ ଟାଣିବାର ସ୍ଥିର ହେଲା । ମାତ୍ର ସବର୍ଣ୍ଣ ହିନ୍ଦୁମାନେ ଏହି ସମାଧାନକୁ କାର୍ଯ୍ୟରେ ପରିଣତ ନକରି କେବଳ ସେମାନେ ଟାଣିଲେ । ଫଳରେ ଆନ୍ଦୋଳନ ଜାରି ରହିଲା । ୧୯୩୫ ଅକ୍ଟୋବର ପର୍ଯ୍ୟନ୍ତ ମନ୍ଦିର ମଧ୍ୟ ବନ୍ଦ ରହିଲା । ଏହି ସମ୍ବାଦ ଲଣ୍ଡନରୁ ପ୍ରକାଶିତ ଟାଇମ୍ ପତ୍ରିକାରେ ପ୍ରକାଶ ପାଇଲା ।

ମାହାଦ ପୁଷ୍କରିଣୀ ସତ୍ୟାଗ୍ରହ, ମନୁସ୍ମୃତି ପୋଡା ଓ କାଳାରାମ ମନ୍ଦିର ପ୍ରବେଶ ଇତ୍ୟାଦି ଆନ୍ଦୋଳନ ଆମ୍ବେଦକର ଆରମ୍ଭ କଲେ । ଏସବୁ ଥିଲା ସାମାଜିକ ଆନ୍ଦୋଳନ । ଏହି ଆନ୍ଦୋଳନର ଆଭିମୁଖ୍ୟ ସମ୍ପର୍କରେ ସୂଚନା ଦେଇ ସେ କହିଥିଲେ, "ତୁମେ ତୁମର ସମସ୍ତ ସମସ୍ୟାକୁ ଏହି ଆନ୍ଦୋଳନ ମାଧ୍ୟମରେ ସମାଧାନ କରିପାରିବ ନାହିଁ । ଉଚ୍ଚବର୍ଗ ହିନ୍ଦୁମାନଙ୍କର ମନ ପରିବର୍ତ୍ତନ କରିବାର ଏହା ଏକ ମାଧ୍ୟମ ।" କାରଣ ଆମ୍ବେଦକର ବ୍ରାହ୍ମଣମାନଙ୍କୁ ଘୃଣା କରୁନଥିଲେ । ଯେଉଁମାନଙ୍କ ମଧ୍ୟରେ ବ୍ରାହ୍ମଣତ୍ୱବାଦ - ଉଚ୍ଚବର୍ଣ୍ଣ ଓ ନୀଚବର୍ଣ୍ଣର ଭେଦଭାବ ପୁରି ରହି ମାନବିକତାକୁ ନଷ୍ଟ କରୁଥିଲା ଏବଂ ସାମାଜିକ ଅସମାନତା ଓ ସୁବିଧାଭୋଗୀ ସୃଷ୍ଟି କରୁଥିଲା, ତାହାକୁ ସେ ଘୃଣା କରୁଥିଲେ ।

ତେଣୁ ଅବ୍ରାହ୍ମଣ ଆନ୍ଦୋଳନକୁ ଆଗେଇ ନେବାବେଳେ, ସେ ବ୍ରାହ୍ମଣ ମାନଙ୍କର ସୁଗୁଣ ପ୍ରତି ସଚେତନ ଥିଲେ । ତେଣୁ ସେ କହିଥିଲେ, "ତୁମେମାନେ ସବୁବେଳେ ବ୍ରାହ୍ମଣମାନଙ୍କର ନିନ୍ଦା କରୁଛ, କିନ୍ତୁ ତୁମେ କେବେହେଲେ ସେମାନଙ୍କର ସୁଗୁଣ ସବୁକୁ ଅନୁକରଣ କରୁନାହଁ । ବ୍ରାହ୍ମଣମାନେ ସମୟର ତାଳେତାଳେ ନିଜର ବିଚାର ଧାରାରେ ପରିବର୍ତ୍ତନ ଆଣନ୍ତି । ସେମାନେ ଜ୍ଞାନ ଓ ଧନର ସାଧନରେ ଲାଗିଥା'ନ୍ତି । ମନେରଖ ! ବ୍ରାହ୍ମଣମାନେ ଜ୍ଞାନୀ ମାନଙ୍କ ମଧ୍ୟରେ ଜ୍ଞାନୀ । ତେଣୁ ଯଦି ତୁମେ ବ୍ରାହ୍ମଣମାନଙ୍କ ବିରୁଦ୍ଧରେ ବିଦ୍ରୋହ କରିବାକୁ ଚାହଁ, ବ୍ରାହ୍ମଣମାନଙ୍କ ସହ ଲଢ଼ିବାକୁ ଚାହଁ ତେବେ ତୁମକୁ ସେମାନଙ୍କଠାରୁ ଅଧିକ ଜ୍ଞାନୀ

ହେବାକୁ ପଡିବ । ତୁମମାନଙ୍କ ମଧ୍ୟରେ ଏକତା ନାହିଁ, ତୁମେମାନେ ନିଜ ନିଜ ଭିତରେ ଲଢ଼େଇରେ ବ୍ୟସ୍ତ ଏବଂ ବ୍ରାହ୍ମଣମାନଙ୍କର ଉକ୍ତିକୁ ସାର୍ଥକ କର ଯେ - "ମାହାରମାନେ  ଆମ୍ଭମାନଙ୍କ ଠାରୁ ନୀଚ ।"

ଏହି ସମୟରେ ଦକ୍ଷିଣଭାରତର ନେତା ଡକ୍ଟର ସୁବାରୟନ୍ କେନ୍ଦ୍ରୀୟ ଆସେମ୍ବ୍ଲିରେ ଗୋଟିଏ ବିଲ୍ ଆଣିଲେ । ସେ ଅସବର୍ଣ୍ଣମାନଙ୍କର ମନ୍ଦିର ପ୍ରବେଶକୁ ଜନମତ(referendum) ମାଧ୍ୟମରେ ସ୍ଥିର କରିବାକୁ ପ୍ରସ୍ତାବ ରଖିଲେ । ଏଥିରେ ମନ୍ଦିର ଦେବତାଙ୍କର ପୂଜାର୍ଚ୍ଚନା କରିବାର କୌଣସି ବ୍ୟବସ୍ଥା ନଥିଲା । ଆମ୍ବେଦକର ଏହି ବିଲ୍‌କୁ ପୂରାପୂରି ବିରୋଧ କଲେ । ଏପରିକି ଗାନ୍ଧିଜୀଙ୍କର ଅନୁରୋଧ ସତ୍ତ୍ୱେ ମଧ୍ୟ ଏହି ବିଲ୍‌କୁ ଗ୍ରହଣ କରିପାରିଲେ ନାହିଁ ।

ଆମ୍ବେଦକର ଜାଣିଥିଲେ ସ୍ୱାଧୀନତା ବା ମୁକ୍ତି(liberty) ଦାନରୁ ମିଳେ ନାହିଁ । ଏଥିପାଇଁ ସଂଗ୍ରାମ ଲୋଡା । ଅନ୍ୟର ଆଶୀର୍ବାଦରେ ଆତ୍ମ-ଉନ୍ନତି ଅସମ୍ଭବ । କେବଳ ସଂଗ୍ରାମ ଓ କର୍ମ ହିଁ ଆତ୍ମଉନ୍ନତିର ମାଧ୍ୟମ । ସେଥିପାଇଁ ସେ ଏହି ମୂକଜନତାକୁ ମୁକ୍ତିର ସାର୍ବଜନୀନ ନିୟମ ଶିଖାଇବା ପାଇଁ ମହାଦ ପୁଷ୍କରିଣୀ, ମନୁସ୍ମୃତି ପୋଡା ଓ ମନ୍ଦିର ପ୍ରବେଶ ସତ୍ୟାଗ୍ରହକୁ ଆନ୍ଦୋଳନର ରୂପ ଦେଇଥିଲେ । ଏବଂ ସେଥିପାଇଁ ଗୁରୁଗମ୍ଭୀର ଭାବରେ ଉଦ୍‌ଘୋଷଣା କରି କହିଥିଲେ, "ଛେଳିମାନଙ୍କୁ ବଳିପାଇଁ ବ୍ୟବହାର କରାଯାଏ, ସିଂହମାନଙ୍କୁ ନୁହେ ।"

ମାହଦ ଘଟଣା ଫଳରେ ଆମ୍ବେଦକରଙ୍କର ନାମ ଓ ଯଶ ଚାରିଆଡେ ବ୍ୟାପିଗଲା । ଅସବର୍ଣ୍ଣ ଜାତିମାନଙ୍କ ମଧ୍ୟରେ ତାଙ୍କ ନେତୃତ୍ୱର ପ୍ରତିଷ୍ଠା ହେଲା ଅନସ୍ୱୀକାର୍ଯ୍ୟ । ସାମାଜିକ ଓ ରାଜନୈତିକ ବିଚାରଧାରା ସମ୍ପର୍କରେ ଚିନ୍ତାଶୀଳ ନେତୃମଣ୍ଡଳୀ ମଧ୍ୟରେ ସେ ଅଗ୍ରଗାମୀ ଭୂମିକାରେ ଉପନୀତ ହେଲେ । ଏହି ଘଟଣା ପ୍ରମାଣ କଲା ଯେ ଆମ୍ବେଦକର କେବଳ ଜଣେ ବିଚକ୍ଷଣ ଦୂରଦର୍ଶୀ ରାଜନୀତିଜ୍ଞ ବ୍ୟକ୍ତି ନୁହନ୍ତି ସେ ମଧ୍ୟ ପଣ୍ଡିତ ଓ ଜ୍ଞାନୀ । ତାଙ୍କ ମଧ୍ୟରେ କର୍ମ ଓ ଜ୍ଞାନର ସମାହାର ସହିତ ଜୀବନ ଓ ସାହିତ୍ୟର ସମ୍ମିଶ୍ରଣ ହୋଇଛି ।

ମନୁସ୍ମୃତି ପୋଡିବା ଘଟଣା ଇତିହାସରେ ଏକ ନୂତନ ଅଧ୍ୟାୟ । ମନୁସ୍ମୃତି ଉଚ୍ଚ ହିନ୍ଦୁଜାତି ପାଇଁ ବିଶେଷ ମହତ୍ତ୍ୱ ରଖିବାବେଳେ ନିମ୍ନଜାତିମାନଙ୍କୁ ଚିରଦିନ ଦାସତ୍ୱ ଶୃଙ୍ଖଳରେ ବାନ୍ଧିବାର ଏକ ଦଲିଲ । ଆମ୍ବେଦକର ଏକ ସାକ୍ଷାତକାରରେ କହିଥିଲେ, "ମନୁସ୍ମୃତି ପୋଡିବା ଏକ ଉଦ୍ଦେଶ୍ୟମୂଳକ ଘଟଣା । ଏଥିରେ ଥିଲା

ଅତି ସାବଧାନତାର ସହ ନିଆଯାଇଥିବା ସର୍ବଶେଷ ପଦକ୍ଷେପ । ଏପରି ଏକ ପଦକ୍ଷେପ ନେବାମୂଳରେ ଲକ୍ଷ୍ୟ ଥିଲା ସବର୍ଣ୍ଣ ହିନ୍ଦୁମାନଙ୍କର ଏଥିପ୍ରତି ଦୃଷ୍ଟି ଆକର୍ଷଣ କରିବା । ସମୟ ସମୟର ବ୍ୟବଧାନରେ ଏପରି କଠିନ ପଦକ୍ଷେପ ନେବାର ଆବଶ୍ୟକ ଥାଏ । ଯଦି ତୁମେ ଦୁଆର ମୁହଁରେ ଆଘାତ ନକରିବ, ତେବେ କେହି ଦୁଆର ଖୋଲିବେ ନାହିଁ । ଏହା ଏପରି ନୁହେ ଯେ ମନୁସ୍ମୃତିର ସବୁକିଛିକୁ ନିନ୍ଦା କରାଯାଇପାରେ । ଏଥିରେ କିଛି ଭଲ ନୀତିନିୟମ ନାହିଁ କିମ୍ବା ମନୁ ନିଜେ ଜଣେ ସମାଜତତ୍ତ୍ୱବିଦ୍ ନୁହନ୍ତି ଓ ବୋକା ଅଟନ୍ତି । ଆମେ ତାହାକୁ ନିଆଁରେ ପୋଡିଲୁ କାରଣ ଆମଦୃଷ୍ଟିରେ ଏହା ଅନ୍ୟାୟର ପ୍ରତୀକ ଏବଂ ଯାହାତଳେ ଆମେ ଶତାବ୍ଦୀ ଶତାବ୍ଦୀ ଧରି ନିଷ୍ପେଷିତ ହୋଇ ଚାଲିଛୁ । ଏପରି ଶିକ୍ଷା ଦ୍ୱାରା ହିଁ ଆମେ ଅକଥନୀୟ ଦାରିଦ୍ର୍ୟ ଭୋଗ କରୁଛୁ ଏବଂ ସେଥିପାଇଁ ଆମେ ଆମ ଜୀବନକୁ ବାଜି ରଖି ଏପରି କାର୍ଯ୍ୟ କଲୁ ।''

ମାହାଦ ଘଟଣା, ମନୁସ୍ମୃତି ପୋଡି ଓ ମନ୍ଦିର ପ୍ରବେଶ ଇତ୍ୟାଦି ଆନ୍ଦୋଳନରୁ ଆମ୍ବେଦକରଙ୍କର ସାମାଜିକ ବିଚାର ବୁଝାପଡେ । ସେ ତାଙ୍କର ଚିନ୍ତା ଓ କାର୍ଯ୍ୟ ମଧ୍ୟରେ ସନ୍ତୁଳନ ଆଣିବା ସହିତ ତାକୁ ରକ୍ଷା କରିବା ପାଇଁ ମଧ୍ୟ ସତତ ଯତ୍ନଶୀଳ ହୋଇଛନ୍ତି । ତାଙ୍କର ଶକ୍ତିଶାଳୀ ବିଚାରରେ ସେ ଉପଲବ୍ଧି କରିଛନ୍ତି ଯେ କୌଣସି କଥା ସ୍ଥିର ନିଶ୍ଚିତ ନୁହେ, ଚିରନ୍ତନ ନୁହେ, ସନାତନ ନୁହେ । ପ୍ରତ୍ୟେକ ପରିବର୍ତ୍ତନଶୀଳ । ଏହି ପରିବର୍ତ୍ତନ ହେଉଛି ପ୍ରତ୍ୟେକ ବ୍ୟକ୍ତି ଜୀବନର ନିୟାମକ ଏବଂ ସମାଜ ପାଇଁ ମଧ୍ୟ । ନୈତିକତା ଓ ଧର୍ମକୁ ମଧ୍ୟ ତିଷ୍ଠି ରହିବାର ମୂଲ୍ୟବୋଧରୁ ବିଚାର କରିବାକୁ ହେବ ।

ମଣିଷର ବର୍ତ୍ତମାନର ଦୁର୍ଦ୍ଦଶା ପାଇଁ ତାର ଅତୀତର କର୍ମ ଦାୟୀ ବୋଲି ଆମ୍ବେଦକର ବିଚାର କରିନାହାନ୍ତି କିନ୍ତୁ ତାଙ୍କ ମତରେ ପରିସ୍ଥିତି ଦ୍ୱାରା ହିଁ ମନୁଷ୍ୟ ତା'ର ନିର୍ଯ୍ୟାତନା ଓ ଦାରିଦ୍ର୍ୟ ପାଇଁ ଦାୟୀ । ମଣିଷ ଏଥିପାଇଁ ଯେତିକି ଦାୟୀ, ସାମାଜିକ ପରିବେଶ ମଧ୍ୟ ସେହି ପରିମାଣରେ ଦାୟୀ । ସେ ମତ ଦେଇ କହିଛନ୍ତି, ''ଗୋଟିଏ ଆଦର୍ଶ ସମାଜରେ, ବହୁ ଗୁଡିଏ ସୁବିଧା ସୁଯୋଗକୁ ସଚେତନ ଭାବରେ ଆଦାନ ପ୍ରଦାନ ଅଂଶୀଦାର କରାଯାଏ । ସେଥିପାଇଁ ସାମାଜିକ ଦୃଢ଼ୀକରଣ ବା ସ୍ୱୀକୃତି ରହିବା ଦରକାର ।

ସେଥିପାଇଁ ସେ ସାମାଜିକ ବିବେକ ଉପରେ ଗୁରୁତ୍ୱ ଦେଇ ''ସାମାଜିକ ବିବେକ ସମସ୍ତ ମୌଳିକ ବା ଅମୌଳିକ ଅଧିକାରର ସୁରକ୍ଷା'' ବୋଲି ମତ

ଦେଇଛନ୍ତି । ତେଣୁ ପୃଥିବୀରେ ଯାହା କିଛି ଅନ୍ୟାୟ ଘଟୁଛି ତାହା ବିରୁଦ୍ଧରେ ଏହି ସାମାଜିକ ବିବେକ ହିଁ ବିଦ୍ରୋହ କରେ । ଆମ୍ବେଦକରଙ୍କର ଆଦର୍ଶ ଥିଲା ସାମାଜିକ ସମନ୍ୱୟ ପ୍ରତିଷ୍ଠା କରିବା । କେବଳ ବଞ୍ଚିରହିବାପାଇଁ ସଂଗ୍ରାମ କରିବା ତାଙ୍କର ଉଦ୍ଦେଶ୍ୟ ନଥିଲା ବରଂ ଏକ ସମ୍ମାନାସ୍ପଦ ନ୍ୟାୟପୂର୍ଣ୍ଣ ସମାନତା ଆଧାରିତ ଜୀବନ ବଞ୍ଚିବା ଥିଲା ତାଙ୍କର ଲକ୍ଷ୍ୟ । ଜଣେ ବ୍ୟକ୍ତି ପାଇଁ ଏକ ଅସମ୍ମାନ ଭରା ଜୀବନ, ଆତ୍ମସମ୍ମାନ ରହିତ ଜୀବନ ବଞ୍ଚିବା ଠାରୁ ଲଜ୍ଜାକର ତାଙ୍କପାଇଁ ଆଉ କିଛି ନଥିଲା । ବ୍ୟକ୍ତି ମଣିଷ, ସମାଜ ଓ ନିଜ ଦେଶକୁ ଭଲପାଇ ବଞ୍ଚୁ ଏହା ସେ ବିଚାର କରୁଥିଲେ ।

ବିଭିନ୍ନ ଶ୍ରେଣୀ ମଧ୍ୟରେ ସମାନତା ନଥିଲେ, କୋମଳତା ନଥିଲେ ସାମାଜିକ ପ୍ରଗତି ସମ୍ଭବ ନୁହେ ଏବଂ ଏହା ସାମାଜିକ ସ୍ଥାୟିତ୍ୱକୁ ଆଣିପାରେ ନାହିଁ । ସ୍ଥାୟିତ୍ୱ ଆବଶ୍ୟକ କିନ୍ତୁ ପରିବର୍ତ୍ତନର ପ୍ରତିରୋଧ କରି ନୁହେ । ବୁଝାମଣା ମଧ୍ୟ ଦରକାର କିନ୍ତୁ ସାମାଜିକ ନ୍ୟାୟକୁ ବଳିଦେଇ ନୁହେ । ସାମାଜିକ ସ୍ଥାୟିତ୍ୱ ଏଇ ମଣିଷମାନଙ୍କ ଉପରେ ନିର୍ଭର କରେ ଯେଉଁମାନେ ଏଇ ସମାଜକୁ ସୃଷ୍ଟି କରିଛନ୍ତି । ଭାରତୀୟ ସମାଜ ବ୍ୟବସ୍ଥାରେ ସାମାଜିକ ସ୍ଥାୟିତ୍ୱ ଅର୍ଥ ହିଁ ଜାତିବ୍ୟବସ୍ଥାକୁ ଦୂରକୁ ଠେଲିଦେବା । ଯେ ପର୍ଯ୍ୟନ୍ତ ଭାରତରେ ଜାତିବ୍ୟବସ୍ଥା ଥିବ, ସେ ପର୍ଯ୍ୟନ୍ତ ସାମାଜିକ ସଂହତି ଓ ଏକତା ପ୍ରତିଷ୍ଠା ଅସମ୍ଭବ ବୋଲି ଥିଲା ଆମ୍ବେଦକରଙ୍କ ସ୍ପଷ୍ଟ ମତ ଏବଂ ଏହା ମାହଦ ଘଟଣାରୁ ପ୍ରତିଫଳିତ ହୋଇଥିଲା । ମନ୍ଦିର ନିର୍ମାଣ କରିବା ଅପେକ୍ଷା ଅସ୍ପୃଶ୍ୟତା ନିବାରଣ ଥିଲା ତାଙ୍କର ପ୍ରଥମ ଲକ୍ଷ୍ୟ ।

## ମାହାର ଜାଗିର

ବମ୍ବେ ହେରିଡେଟାରୀ ସରକାରୀ ନିୟମ ଅନୁସାରେ ମାହାରମାନେ ଯେଉଁମାନେ କି ସରକାରରେ କିଛି ଚାକିରି କରୁଥିଲେ, ସେମାନଙ୍କୁ ଦିନରାତି କାମ କରିବାକୁ ହେଉଥିଲା । ଏବଂ ତା ଅନୁପସ୍ଥିତିରେ ମାହାର ସମ୍ପ୍ରଦାୟରୁ କାହାକୁ ବଦଳ ଦେବାକୁ ହେଉଥିଲା । ଏହି କଠିନ ପରିଶ୍ରମ ପାଇଁ ସେମାନେ ଜାଗିରୀ ସ୍ୱରୂପ ଖଣ୍ଡିଏ ଖଣ୍ଡିଏ ଜମି ପାଉଥିଲେ ଏବଂ କିଛି ସାମାନ୍ୟ ଆର୍ଥିକ ଭତ୍ତା । ଏହି ଜାଗିରୀ ବ୍ୟବସ୍ଥା ଫଳରେ ମାହାରମାନେ ସେହି କାର୍ଯ୍ୟ ସହିତ ଯୋଡି ହୋଇ ରହିଥିଲେ । ସେଥିରୁ ସେମାନଙ୍କର ମୁକ୍ତି ନଥିଲା । ଆମ୍ବେଦକର ଏହି ଆଇନ୍‌ରେ କୌଣସି ପରିବର୍ତ୍ତନ ନକରି, ଏହାକୁ ସମ୍ପୂର୍ଣ୍ଣ ଲୋପ କରିବା ଉପରେ ଗୁରୁତ୍ୱ ଆରୋପ କରୁଥିଲେ । ସେ

ତାଙ୍କ ସମ୍ପ୍ରଦାୟର ଲୋକମାନଙ୍କୁ ପତିତ ଜମିକୁ ଉଦ୍ଧାର କରି ଚାଷବାସ କରି ଜୀବନ ନିର୍ବାହ କରିବା ଉପରେ ଗୁରୁତ୍ୱ ଆରୋପ କରିଥିଲେ ।

୧୯୨୮ ମସିହା ମାର୍ଚ୍ଚ ୨୮ ତାରିଖ ଦିନ ବମ୍ବେ ବିଧାନ ପରିଷଦରେ ଆମ୍ବେଦକର ବମ୍ବେ ହେରିଡେଟାରୀ ଅଫିସେସ ଆକ୍ଟ ୧୮୭୪ ଉପସ୍ଥାପିତ କଲେ । ତା ପୂର୍ବରୁ ବିଭିନ୍ନ ସଭା ସମିତିରେ ଓ ସମ୍ମିଳନୀରେ ଏହି ବିଲ୍ ସମ୍ପର୍କରେ ମଧ୍ୟ ସେ ନିଜର ମତ ଦେଇଥିଲେ । ୧୯୨୮ ଅଗଷ୍ଟ ୩ ତାରିଖ ଦିନ ଏହି ବିଲ୍‌କୁ ପରିଷଦରେ ଆଲୋଚନା କରି ସେ କହିଲେ ଯେ ମାହର ମାନଙ୍କୁ ଜାଗିରୀସ୍ୱରୂପ ଏହି ଜମି ଏ ଦେଶର ପୂର୍ବ ସମ୍ରାଟ୍‌ମାନେ ଦେଇଛନ୍ତି । ବର୍ତ୍ତମାନର ସରକାର ଏହି ଜମିର ପରିମାଣ ବୃଦ୍ଧି କରିନାହାନ୍ତି ବା ସେମାନେ ପାଉଥିବା ଭତ୍ତାରେ ପରିବର୍ତ୍ତନ କରିଛନ୍ତି । ସେ ପ୍ରସ୍ତାବ କଲେ ଯେ ଜାଗିରୀ ଜମି ସବୁ ମାହର ମାନଙ୍କୁ ଦେଇ ଦିଆଯାଉ ଏବଂ ସେମାନେ ସେବା କରିବା ନିମିତ୍ତ ଯେଉଁ ବାଧ୍ୟତାରେ ଅଛନ୍ତି, ସେଥିରୁ ସେମାନଙ୍କୁ ମୁକ୍ତ କରାଯାଉ ।

ସେ ପୁନରାୟ ମଧ୍ୟ କହିଲେ ଯେ ମାହାରମାନଙ୍କ ଜମିର ଯେଉଁ ଖଜଣା ଧାର୍ଯ୍ୟ ହେବ, ତାହା ସେମାନେ ଦେବେ କିନ୍ତୁ ଜମିରୁ ଉତ୍ପନ୍ନ ଫସଲର ଅଂଶ ଦେବେ ନାହିଁ । ସେ ଦୃଢ଼କଣ୍ଠରେ ଘୋଷଣା କଲେ, "ଯଦି ସରକାର ଏମାନଙ୍କୁ ଏଥିରୁ ମୁକ୍ତି ନଦିଅନ୍ତି, ତେବେ ରାଜସ୍ୱ ବିଭାଗ ଓ ମାହାରଙ୍କ ମଧ୍ୟରେ ସଂଘର୍ଷ ହେବ । ଯଦି ଏହି ବିଲ୍ ପାସ୍ ନ ହୁଏ...ମୁଁ ମୋର ଶେଷ ସମୟ ତକ ଚେଷ୍ଟା କରିବି ଯେ ମାହାରମାନେ ଏକ ସାଧାରଣ ଧର୍ମଘଟ ଯେପରି ଆରମ୍ଭ କରନ୍ତି .... ।" ପରିସମାପ୍ତିରେ ସେ ଘୋଷଣା କରି କହିଲେ ଯେ ଜାଗିରୀ ପ୍ରଥା ମାହାର ସମ୍ପ୍ରଦାୟର ପ୍ରଗତିର ବାଧକ ।

ଏହି ବିଲ୍‌କୁ ଏକ ୨୩ ଜଣିଆ ସିଲେକ୍ଟ କମିଟିକୁ ପଠାଗଲା । କମିଟି ୧୯୨୯ ଜୁନ୍‌ମାସ ସୁଦ୍ଧା ତାହାର ରିପୋର୍ଟ ଦେବାର ସମୟସୀମା ନିର୍ଦ୍ଧାରଣ କରାଗଲା । ଏହି କମିଟି ମତ ଦେଲା ଯେ ଜାଗିରୀ ଭୋଗ କରୁଥିବା ଜମିକୁ ଜମିର ପୂରା ମୂଲ୍ୟ ଧାର୍ଯ୍ୟ କରି ଅଧା ଛାଡ କରି ଦିଆଯାଉ । ଏହି ବିଲ୍‌ର ପ୍ରକୃତ ଉଦ୍ଦେଶ୍ୟକୁ ସ୍ୱାର୍ଥ ସର୍ବସ୍ୱ ବ୍ୟକ୍ତିମାନେ ବିରୋଧ କଲେ । ୧୯୨୯ ଜୁଲାଇ ୨୪ ତାରିଖ ଦିନ ଆମ୍ବେଦକର ଏହି ବିଲ୍‌କୁ ପ୍ରତ୍ୟାହର କରି ଆଣିଲେ ।

ମାହାରମାନଙ୍କୁ ଏହି ଜମିପାଇଁ ଖଜଣା ଦେବାକୁ ପଡୁନଥିଲା, କାରଣ

ମାହାରମାନେ ଏହି ଜମିକୁ ଜାଗିରୀ ଭାବରେ ପାଉଥିଲେ । କିନ୍ତୁ ଅର୍ଥାଭାବ ହେତୁ, ପେଶୱା ଶାସନ ସମୟରୁ ସେମାନଙ୍କଠାରୁ କିଛି ଅର୍ଥ ଆଦାୟ କରାଯାଉଥିଲା । ଏହି ରାଜସ୍ୱକୁ କୁହାଯାଉଥିଲା 'ଜୁଡ଼ି' । ଏହି ଜୁଡି ଟଙ୍କା ଆକାରରେ ସଂଗ୍ରହ ନ ହୋଇ, ଜମିର ଫସଲରୁ ଆଦାୟ କରାଯାଉଥିଲା । ମାହାର ନେତୃତ୍ୱ ଏହି 'ଜୁଡି'ର ସମ୍ପୂର୍ଣ୍ଣ ମୂଲ୍ୟ ନିର୍ଦ୍ଧାରଣ କରିବା ସହିତ, ସେମାନଙ୍କର ସରକାରୀ ସେବା ପାଇଁ ମାସିକ ବେତନ ପାଇବା ପାଇଁ ଆଗ୍ରହ ପ୍ରକାଶ କଲେ । ୧୯୩୭-୧୯୩୯ ମଧ୍ୟରେ ବମ୍ବେର ପ୍ରଥମ କଂଗ୍ରେସ ମନ୍ତ୍ରୀମଣ୍ଡଳ ଏ ପ୍ରକାର ବ୍ୟବସ୍ଥା ବିରୋଧ ହେବା ଉଚିତ ବୋଲି ମତ ଦେଲେ ।

୧୯୩୯ ଡିସେମ୍ବର ୧୬ ତାରିଖ ଦିନ ଅହମଦନଗର ଜିଲ୍ଲାର ହାରେ ଗାଁଓ ଠାରେ ମାହାର ନେତାମାନଙ୍କର ଏକ ସମ୍ମିଳନୀ ବସିଲା । ସେମାନେ ବମ୍ବେ ରାଜ୍ୟପାଳଙ୍କୁ ଏକ ଚିଠା ଉପସ୍ଥାପିତ କଲେ । ସେଥିରୁ ସେମାନେ ଜାଗିରୀ ଜମିକୁ ପ୍ରଜାସ୍ୱତ୍ୱାଧିକାରୀରେ ପରିବର୍ତ୍ତନ କରିବା ସହିତ, ମାହାରମାନଙ୍କୁ ମାସିକ ବେତନ ଦେଇ ତଳିଆ କର୍ମଚାରୀ ଭାବେ ଗ୍ରହଣ କରିବାକୁ ଓ କେବଳ ସରକାରୀ କାମ କରିବାରେ ନିଯୁକ୍ତ ହେବାକୁ ଦାବି କଲେ ।

୧୯୩୭ ସେପ୍ଟେମ୍ବର ୧୭ ତାରିଖ ଦିନ ବମ୍ବେ ବିଧାନ ପରିଷଦର ପୁନାଠାରେ ବସିଥିବା ଅଧିବେଶନରେ ଆମ୍ବେଦକର ପୁନର୍ବାର ଏକ ବିଲ୍ ଉପସ୍ଥାପିତ କଲେ । ସାମ୍ବିଧାନିକ ଓ ଆଇନଗତ ଭାବେ ସେ ମାହାରମାନଙ୍କର ଜାଗିରୀ ପ୍ରଥାକୁ ସମାଧାନ କରିବାକୁ ଚାହୁଁଥିଲେ । ଏହାକୁ ସେ ସତ୍ୟାଗ୍ରହର ରୂପ ଦେବାକୁ ଭାବୁନଥିଲେ । ସରକାରଙ୍କ ତରଫରୁ ମଧ୍ୟ ବିପଦକାଳୀନ ଜରୁରୀପରିସ୍ଥିତିରେ, ଏପରି ସତ୍ୟାଗ୍ରହ ଅନାବଶ୍ୟକ ବୋଲି କୁହାଯାଇଥିଲା । ୧୯୪୨ ମସିହାରେ ଆମ୍ବେଦକର ଭାଇସରାୟ ଏକଜ୍ୟୁକ୍ୟୁଟିଭର ସଦସ୍ୟ ହେବା ହେତୁ ସେ ଆନ୍ଦୋଳନ ପରିବର୍ତ୍ତେ ଆଇନ୍ ମାଧ୍ୟମରେ ତାଙ୍କ ସମ୍ପ୍ରଦାୟ ଲୋକମାନଙ୍କର ବିଶେଷ ସେବା କରିପାରିବେ ବୋଲି ନିଶ୍ଚିତ ହୋଇଥିଲେ । ତେଣୁ ଜାଗିରୀ ବିରୁଦ୍ଧରେ ସଂଗ୍ରାମ କରିବାପାଇଁ ୧୯୫୬ ମସିହା ଜୁନ୍ ୧୬ ତାରିଖ ଦିନ ସେ "ବମ୍ବେ ଷ୍ଟେଟ୍ ଇନଫିରିୟର ୱାଟଣ୍ଡର ଆସୋସିଏସନ୍" ଗଠନ କରି ତାହାର ଚେୟାରମ୍ୟାନ ହେଲେ । ସେ ଏଥିପାଇଁ ଏକ ବିବୃତି ଦେଇ କହିଲେ ଯେ ଯଦି ସରକାର ଏହାର ଆପୋଷ ସମାଧାନ ନ କରନ୍ତି, ତେବେ ସେ ସରକାରଙ୍କ ବିରୋଧରେ କେଶ୍ କରିବେ । ଗ୍ରାମବାସୀମାନେ ମଧ୍ୟ ତାଙ୍କର ସାଧ୍ୟମତେ ଏହାକୁ

ବିରୋଧ କରିବେ । ଆମ୍ବେଦକର ମତ ଦେଲେ ଯେ ସରକାର "ଚାଷ ଯାହାର ଜମି ତାହାର", ନୀତି ଗ୍ରହଣ କରିଥିଲେ ହେଁ, ସରକାରୀ ଜମିକୁ ଏହି ଆକ୍ଟପରିସର ଭୁକ୍ତ କରିବାକୁ ପ୍ରସ୍ତୁତ ନୁହନ୍ତି । ସେ ବିଶ୍ୱାସ କରୁଥିଲେ ଯେ ଜାଗିରୀ ପ୍ରଥା ଓ ଜାଗିରୀ ଆଇନ ଭାରତୀୟ ସମ୍ବିଧାନରେ ଥିବା ବ୍ୟବସ୍ଥାର ପରିପନ୍ଥୀ । ଏଥିପାଇଁ ହାଇକୋର୍ଟରେ ଗୋଟିଏ ଅରଜି (ରିଟ୍ ଦାଖଲ କରିବାକୁ ସେ ମତ ଦେଲେ । ଯଦି ତାହା ଅଯୋଗ୍ୟ ଘୋଷିତ ହୁଏ, ତେବେ ସୁପ୍ରିମକୋର୍ଟକୁ ନେବା ଉପରେ ଗୁରୁତ୍ୱ ଆରୋପ କଲେ ।)

୧୯୫୯ ମସିହାରେ ବମ୍ବେ ଇନଫିରିୟର ଭିଲେଜ ଓ୍ୱାଟନସ୍ ଆବୋଲିସନ୍ ଆକ୍ଟ ବଳରେ ମାହାର ଜାଗିରୀ ପ୍ରଥାକୁ ଲୋପ କରି ଦିଆଗଲା । ଦୀର୍ଘ ୨୦ ବର୍ଷ ଧରି ଏହି ଆଇନକୁ ବିଲୋପ କରିବା ପାଇଁ ଆମ୍ବେଦକର ସଂଗ୍ରାମ କରିଥିଲେ ହେଁ ସେଏହା ଷ୍ଟାଚ୍ୟୁଟ୍ ବହିରେ ସ୍ଥାନ ପାଇବା ଦେଖି ପାରିନଥିଲେ ।

## ସଂଗ୍ରାମ ଉପରେ ଗୁରୁତ୍ୱ

ଆମ୍ବେଦକର ବାରମ୍ବାର ତାଙ୍କ ଲୋକମାନଙ୍କୁ ସଂଗ୍ରାମ କରିବା ପାଇଁ ଆହ୍ୱାନ କରିଥିଲେ । କାରଣ ସେ ଅନୁଭବ କରିଥିଲେ ଯେ ହଜିଯାଇଥିବା ଅଧିକାର ଭିକ୍ଷା କରିବାରେ ମିଳେ ନାହିଁ କିମ୍ବା ଯେଉଁମାନେ ବଳ ପୂର୍ବକ ଅଧିକାର କରିଛନ୍ତି ସେମାନଙ୍କର ବିବେକକୁ ଆବେଦନ କରି ନୁହେ ବରଂ ଅବିରାମ ସଂଗ୍ରାମରୁ ହିଁ ମିଳେ । ସେ ଅସହଯୋଗ ନିୟମକୁ ମଧ୍ୟ ଗ୍ରହଣ କରୁନଥିଲେ । ତେଣୁ ସେ କହିଥିଲେ, "ମାହଦ ଠାରେ ଥିବା ଚୌଦାର ପୁଷ୍କରିଣୀ ପ୍ରବେଶ, ନାସିକ ଠାରେ ଥିବା କାଲାରାମ ମନ୍ଦିର ଓ ମାଲବାରର ଗୁରୁଭାୟୁର ମନ୍ଦିର ପ୍ରବେଶ ଆନ୍ଦୋଳନ ଖୁବ୍ ଅଳ୍ପଦିନ ମଧ୍ୟରେ ସଂଗଠିତ ହୋଇଥିଲା ଯାହା ସଂସ୍କାରକମାନଙ୍କର ନିୟୁତ ନିୟୁତ ଦିନର ଶିକ୍ଷା ଫଳରେ ମିଳିପାରିନଥା'ନ୍ତା ।" କାରଣ ସେ ରାଜନୈତିକ ଅଧିକାର ଓ ରାଜନୈତିକ କ୍ଷମତା ବ୍ୟତୀତ ଦଳିତ ବର୍ଗର ଲୋକମାନଙ୍କୁ ଉପଦେଶ ଦେଇ କହିଥିଲେ ଯେ ସେମାନେ ହିନ୍ଦୁ ସମାଜ ବ୍ୟବସ୍ଥାର ଅଙ୍ଗ ହେବାକୁ ସମ୍ମତି ଦେବା ପୂର୍ବରୁ ହିନ୍ଦୁ ବ୍ୟବସ୍ଥା ଓ ହିନ୍ଦୁ ଧର୍ମତତ୍ତ୍ୱର ସମ୍ପୂର୍ଣ୍ଣ ପରିବର୍ତ୍ତନ ଉପରେ ଗୁରୁତ୍ୱ ଆରୋପ କରନ୍ତୁ । "ମୁଁ ମନ୍ଦିର ପ୍ରବେଶ ସତ୍ୟାଗ୍ରହ ଆରମ୍ଭ କଲି କାରଣ ମୁଁ ଅନୁଭବ କଲି ଯେ ତାହା ହେଉଛି ଦଳିତ ଲୋକମାନଙ୍କର ଶକ୍ତିକୁ ଉଜ୍ଜୀବିତ କରିବାର ପ୍ରୟାସ ଏବଂ ସେମାନଙ୍କର ସ୍ଥାନ କେଉଁଠି ତାହାକୁ ସଚେତନ କରିବାର

ସର୍ବଶ୍ରେଷ୍ଠ ମାଧ୍ୟମ । ମୁଁ ଯାହା ବିଶ୍ୱାସ କରୁଛି, ତାହା ମୁଁ ହାସଲ କରିପାରିଛି । ତେଣୁ ଆଉ ମନ୍ଦିର ପ୍ରବେଶ କରିବାର କୌଣସି ଆବଶ୍ୟକତା ନାହିଁ, ମୁଁ ଚାହେଁ ଯେ ଦଳିତ ବର୍ଗର ଲୋକେ ସେମାନଙ୍କର ଶକ୍ତିକୁ ଏକୀଭୂତ କରନ୍ତୁ ତଥା ଶିକ୍ଷା ଓ ରାଜନୀତିରେ ସାଧନ କରନ୍ତୁ ।''

## ସାଇମନ୍ କମିଶନ :

## ସ୍ୱଜନ ମୁକ୍ତିପାଇଁ ପଦକ୍ଷେପ

୧୯୧୯ ଭାରତ ଆଇନ୍‌କୁ ସଂଶୋଧନ କରିବା ପାଇଁ ବ୍ରିଟିଶ୍ ସରକାର ସାଇମନ୍ କମିଶନ ନିଯୁକ୍ତ କଲେ । ଏହାର ଅଧ୍ୟକ୍ଷ ହେଲେ ସାର୍ ଜନ ସାଇମନ । ୧୯୨୮ ମସିହା ଫେବୃଆରୀ ୩ ତାରିଖ ଦିନ ସାଇମନ୍ କମିଶନ ବମ୍ବେରେ ଆସି ପହଞ୍ଚିଲେ । କଂଗ୍ରେସ ଦଳ ଏହି କମିଶନକୁ ପ୍ରତ୍ୟେକ ସ୍ଥାନରେ ବିରୋଧ କରିବାକୁ ନିଷ୍ପତ୍ତି ଗ୍ରହଣ କଲେ । ତେଣୁ ସାଇମନ୍ କମିଶନ ପହଞ୍ଚିବା ମାତ୍ରେ କଳାପତାକା, ଧ୍ୱନୀ ଓ ପ୍ଲାକର୍ଡ ପ୍ରଦର୍ଶନ ମାଧ୍ୟମରେ ବିକ୍ଷୋଭ କରାଗଲା । ''ସାଇମନ୍ ଫେରିଯାଅ'' ଧ୍ୱନିରେ ସମଗ୍ର ଦେଶ କମ୍ପି ଉଠିଲା । କଂଗ୍ରେସ ଦଳ ୧୯୨୮ ଫେବୃୟାରୀ ମାସରେ ଏକ ସର୍ବଦଳୀୟ ବୈଠକ ଡାକି ପଣ୍ଡିତ ମୋତିଲାଲ ନେହେରୁଙ୍କୁ ଏକ ସ୍ୱରାଜ୍ୟ ସମ୍ବିଧାନ ଭାରତ ପାଇଁ ପ୍ରସ୍ତୁତ କରିବାକୁ ଦାୟିତ୍ୱ ଦେଲେ । ନେହେରୁ କମିଟି ଏକ ସମ୍ବିଧାନ ପ୍ରସ୍ତୁତ କରିଥିଲେ । ଏହି ସମ୍ବିଧାନରେ ଦଳିତ ବର୍ଗର ଲୋକମାନଙ୍କ ପାଇଁ କୌଣସି ବିଶେଷ ବ୍ୟବସ୍ଥା ରଖାଯାଇ ନଥିଲା । ଏପରିକି କଂଗ୍ରେସ କାର୍ଯ୍ୟକାରିଣୀ କମିଟି ବିଭିନ୍ନ ଧର୍ମର ରାଜନୈତିକ ନେତାମାନଙ୍କୁ ଏ ସମ୍ପର୍କରେ ଆଲୋଚନା ପାଇଁ ନିମନ୍ତ୍ରଣ କରିଥିଲେ ମଧ ଦଳିତ ବର୍ଗ ସଙ୍ଗଠନ (Depressed class Institution)ରୁ ଆମ୍ବେଦକର ବା ଅନ୍ୟ କାହାକୁ ନିମନ୍ତ୍ରଣ କରି ନଥିଲେ ।

ସାଇମନ୍ କମିଶନକୁ ସହଯୋଗ କରିବାପାଇଁ କେନ୍ଦ୍ର ସରକାର ଏକ କମିଟି ନିଯୁକ୍ତ କଲେ । ପ୍ରତ୍ୟେକ ପ୍ରାଦେଶିକ କମିଟିକୁ ବିଧାନ ପରିଷଦ ସଭ୍ୟ ନିର୍ବାଚନ କରି ପଠାଇଲେ । ଆମ୍ବେଦକର ବମ୍ବେ ବିଧାନ ପରିଷଦ ଦ୍ୱାରା ନିର୍ବାଚିତ ହୋଇଥିଲେ । ଆମ୍ବେଦକର ସାଇମନ୍ କମିଶନ କାର୍ଯ୍ୟରେ ସହଯୋଗ କରିବା ଫଳରେ ତାଙ୍କୁ ଅନେକ ଲାଞ୍ଛନା ସହିବାକୁ ପଡିଲା । କେତେକ ତାଙ୍କୁ ଦେଶ

ଦ୍ରୋହୀ, ବିଶ୍ୱାସଘାତକ କହିବାକୁ ମଧ୍ୟ କୁଣ୍ଠାବୋଧ କଲେ ନାହିଁ । ୧୮ଟି ଦଳିତ ସାଇମନ୍ କମିଶନ ସମ୍ମୁଖରେ ସାକ୍ଷ୍ୟ ପ୍ରଦାନ କରି ସେମାନଙ୍କର ସ୍ମାରକ ପତ୍ର ଦେଲେ । ବହିଷ୍କୃତ ହିତକାରିଣୀ ସଭା ତରଫରୁ ଆମ୍ବେଦକର ଜ୍ଞାପକ ପତ୍ର ଉପସ୍ଥାପିତ କରି ଯୁଗ୍ମ ପ୍ରତିନିଧିତ୍ୱ (Joint electorate) ସହିତ ଦଳିତମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ ଦାବି କଲେ । ବ୍ରିଟିଶ ଭାରତରେ ଦଳିତ ବର୍ଗର ଲୋକସଂଖ୍ୟା ଏକ ପଞ୍ଚମାଂଶ ହେବାବେଳେ ୧୯୧୯ ଆଇନ୍ ବଳରେ ସେମାନଙ୍କୁ ଆଦୌ ପ୍ରତିନିଧିତ୍ୱ ଦିଆନଯାଇ ଅନ୍ୟାୟ କରାଯାଇଛି ।

ମାନ୍ଦ୍ରାଜ କେନ୍ଦ୍ର ଆଦି-ଦ୍ରାବିଡ ମହାଜନ ସଭା ମଧ୍ୟ ଦଳିତ ମାନଙ୍କ ପାଇଁ ପ୍ରତିନିଧିତ୍ୱ ଦାବି କଲା । ବମ୍ବେ ପ୍ରଦେଶର ଅବ୍ରାହ୍ମଣ ପାର୍ଟି ସ୍ମାରକ ପତ୍ରରେ ପୃଥକ୍ ପ୍ରତିନିଧି (electorate) ସହିତ ଦଳିତମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ ଦାବି ଉପସ୍ଥାପିତ କଲା । ମୁସଲିମ ଲିଗ ଅଲଗା ସିନ୍ଧୁ ପ୍ରଦେଶ,ଉତ୍ତର ପୂର୍ବାଞ୍ଚଳରେ ଅଲଗାରାଜ୍ୟ ସହିତ ପୃଥକ୍ ପ୍ରତିନିଧିତ୍ୱ ପାଇଁ ସ୍ମାରକ ପତ୍ର ଦେଲା ।

୧୯୨୮ ଅକ୍ଟୋବର ୨୩ ତାରିଖ ଦିନ ଆମ୍ବେଦକର ପୁନାଠାରେ ସାଇମନ କମିଶନ ସମ୍ମୁଖରେ ସାକ୍ଷ୍ୟ ପ୍ରଦାନ କଲେ । ଏହି ସାକ୍ଷ୍ୟ ଦେବା ବେଳେ ନିଜ ବର୍ଗର ଲୋକମାନଙ୍କର ପ୍ରତିନିଧିତ୍ୱ ପାଇଁ ସେ ଗୁରୁତ୍ୱ ଦେଇ କହିଥିଲେ, ''ଦଳିତ ବର୍ଗର ସଂଜ୍ଞା ହେଉଛି କେଉଁ ଜାତି ଦୂଷିତ କରିବାର ବାହକ । ଆମକୁ ହିନ୍ଦୁ କହିବା ବା ନକହିବାର କୌଣସି ଯାଏ ଆସେ ନାହିଁ, ଯେ ପର୍ଯ୍ୟନ୍ତ ଆମେ ହିନ୍ଦୁ ଧର୍ମରୁ ବାହାରେ ଯଦିଓ ଆମେ ହିନ୍ଦୁ ଆଇନ୍ ଦ୍ୱାରା ପରିଚାଳିତ ଏବଂ ସମାଜ ସଂସ୍କାରକ ମାନଙ୍କର ଭାଷଣ କେତେକ ସଭାମଞ୍ଚରେ ହିଁ ସୀମାବଦ୍ଧ ।''

## ଶ୍ରମିକ ଆନ୍ଦୋଳନରେ ଯୋଗଦାନ

ସାଇମନ୍ କମିଶନଠାରେ ସାକ୍ଷ୍ୟ ଦେବାର ବ୍ୟସ୍ତତା ମଧ୍ୟରେ ମଧ୍ୟ ସେ ନିଜର ଜୀବିକା ପାଇଁ ଓକିଲ ଭାବରେ କୋର୍ଟରେ ଉପସ୍ଥିତ ହେଉଥିଲେ ଏବଂ ସାମାଜିକ ଅଧିକାର ପାଇଁ କର୍ତ୍ତବ୍ୟ ମଧ୍ୟ ପାଳନ କରୁଥିଲେ । ସେତେବେଳେ ବମ୍ବେ ଲୁଗାକଳରେ ୧ ଲକ୍ଷ ୫୦ ହଜାର ଶ୍ରମିକ ମାନେ ପ୍ରାୟ ୬ ମାସ ଧରି ଆନ୍ଦୋଳନ କଲେ । ମିଲ ମାଲିକମାନେ ଏକ ପ୍ରକାର ନୂଆ ବ୍ୟବସ୍ଥା କରି ପ୍ରତ୍ୟେକ ଶ୍ରମିକ ତିନିଗୋଟି ସୂତାକଳରେ କାମ କରିବାର ବ୍ୟବସ୍ଥା କଲେ । ଫଳରେ ଶ୍ରମିକ ଛଟେଇ ଆରମ୍ଭ ହେଲା । ଗିରନି କାମଗାର ମହାମଣ୍ଡଳ ଯାହାକି ସବୁଠାରୁ ବଡ ଶ୍ରମିକ

ସଙ୍ଗଠନ ଥିଲା ; ସେମାନେ ଏହାର ବିରୋଧ କଲେ । ଫଳରେ ଆନ୍ଦୋଳନ ଆରମ୍ଭ ହେଲା । ଏହି ଧର୍ମଘଟ ସମୟରେ ଦଳିତ ଶ୍ରେଣୀର ଶ୍ରମିକମାନେ ନିତାନ୍ତ ଦରିଦ୍ର ଥିବାରୁ ଅନେକ ଦୁଃଖ ଓ ଯନ୍ତ୍ରଣା ଭୋଗ କଲେ । ବ୍ୟକ୍ତିଗତ ଭାବରେ ଆମ୍ବେଦକର ଏହି ଧର୍ମଘଟ ସପକ୍ଷରେ ନଥିଲେ । କାରଣ ଦଳିତ ଶ୍ରେଣୀର ଶ୍ରମିକମାନଙ୍କୁ ଲାଭଜନକ ବିଭାଗରେ କାମ କରିବାକୁ ଦିଆଯାଉନଥିବାରୁ ତାହା ତାଙ୍କ ମନକୁ ସଦା ସର୍ବଦା ଆନ୍ଦୋଳିତ କରୁଥିଲା । ସେ ଭାବୁଥିଲେ ଯେ ଶ୍ରମିକ ଆନ୍ଦୋଳନ ଅର୍ଥନୈତିକ ଉନ୍ନତି ପରିବର୍ତ୍ତେ ରାଜନୈତିକ ବିପ୍ଳବ ପାଇଁ କାର୍ଯ୍ୟ କରୁଛି ଏବଂ ଏହା କମ୍ୟୁନିଷ୍ଟ ମାନଙ୍କ ଦ୍ୱାରା ପରିଚାଳିତ । ଦିନକୁ ଦିନ ଦଳିତ ବର୍ଗ ଶ୍ରମିକମାନଙ୍କର ଅବସ୍ଥା ଖରାପ ହେବାକୁ ଲାଗିଲା । ତେଣୁ ଆମ୍ବେଦକର ଏକ ସ୍ୱାଧୀନ କାର୍ଯ୍ୟପ୍ରଣାଳୀ ଗ୍ରହଣ କରିବାକୁ ସ୍ଥିର କଲେ । ସେ କିପରି ଭାବରେ ଏହି ଦଳିତ ବର୍ଗର ଶ୍ରମିକମାନେ କାର୍ଯ୍ୟରେ ଯୋଗଦେଇ ପାରିବେ ତାର ବ୍ୟବସ୍ଥା କଲେ । ସେମାନେ ଧର୍ମଘଟରୁ ନିବୃତ୍ତ ହୋଇ କାମରେ ଯୋଗ ଦେବା ଆମ୍ବେଦକରଙ୍କ ଅସୀମ ସାହସ ଯୋଗୁ ସମ୍ଭବ ହୋଇଥିଲା । ଏ ସମ୍ପର୍କରେ ଅଟ୍‌ଲି ଯେକି ସାଇମନ୍ କମିଶନର ଜଣେ ସଭ୍ୟ ଥିଲେ ତାଙ୍କ ସହିତ ଆଲୋଚନା ପ୍ରସଙ୍ଗରେ ଏହି ଦଳିତ ବର୍ଗର ଲୋକମାନେ କ'ଣ ଉଦ୍ୟୋଗରେ କାମ କରୁଛନ୍ତି କି ବୋଲି ପ୍ରଶ୍ନର ଉତ୍ତର ଦେଇ ଆମ୍ବେଦକର କହିଥିଲେ, ''ହଁ, ସେମାନେ କାମ କରୁଛନ୍ତି, କିନ୍ତୁ ସବୁଠାରୁ ନ୍ୟୁନ କାମ କାରଣ ସେମାନେ ଅସ୍ପୃଶ୍ୟ ।''

୧୯୨୯ ମସିହା ମେ ୭ ତାରିଖ ଦିନ କମିଶନ ତାଙ୍କ ରିପୋର୍ଟ ଦେଲେ । ଏହି ରିପୋର୍ଟରେ ଦଳିତ ବର୍ଗ ପାଇଁ ଯୁଗ୍ମ ନିର୍ବାଚନ ମଣ୍ଡଳୀରେ ୧୦ଟି ସ୍ଥାନ ସଂରକ୍ଷଣ କରାଯିବାବେଳେ ମୁସଲିମଲିଗ୍ ପାଇଁ ୩୩ଭାଗ ସ୍ଥାନ ପୃଥକ୍ ନିର୍ବାଚନ ମଣ୍ଡଳୀ ମାଧ୍ୟମରେ କରାଯାଇଥିଲା । ଆମ୍ବେଦକର ଏଠାରେ ଦସ୍ତଖତ ନକରି, ଏକ ପୃଥକ ରିପୋର୍ଟ ଦେଲେ । ସେ କର୍ଣ୍ଣାଟକକୁ ବମ୍ବେଠାରୁ ପୃଥକ୍ କରିବା ବିରୁଦ୍ଧରେ ମତଦେଇଥିଲେ କାରଣ ପ୍ରଥମେ ସେମାନେ ଭାରତୀୟ ପରେ ସେମାନେ ହିନ୍ଦୁ, ମୁସଲମାନ ବା ସିଖ୍ ଇତ୍ୟାଦି । ସେ ମୁସଲିମ ଲିଗ୍‌ର ଦାବି ସିନ୍ଧୁ ପ୍ରଦେଶ କରିବାକୁ ମଧ୍ୟ ଅଗ୍ରାହ୍ୟ କରି ଦେଇଥିଲେ । ମୁସଲମାନ ମାନଙ୍କୁ ପୃଥକ ନିର୍ବାଚନ ମଣ୍ଡଳୀ ଦେଇ ୩୩ ଭାଗ ସ୍ଥାନ ସଂରକ୍ଷଣକୁ ସେ ବିରୋଧ କରିଥିଲେ କାରଣ ତାଙ୍କ ମତରେ ସାମ୍ପ୍ରଦାୟିକତା ଭିତ୍ତିରେ ପ୍ରତିନିଧିତ୍ୱ ମୂଳତଃ ଭୁଲ ଏବଂ ଏହା ଦ୍ୱେଷ ଜନ୍ମାଇବାରେ ସାହାଯ୍ୟ କରିବ । କିନ୍ତୁ ସେ ଦଳିତ ବର୍ଗ ପାଇଁ ସ୍ଥାନ ସଂରକ୍ଷଣ ଦାବି କଲାବେଳେ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ସୃଷ୍ଟି କରିବାର ବିପକ୍ଷରେ ମତ ଦେଇଥିଲେ ।

ତାଙ୍କ ରିପୋର୍ଟ ପ୍ରକାଶିତ ହେବାପରେ ସମଗ୍ରଦେଶରେ ସେ ଜଣେ ଦେଶପ୍ରେମୀ ଭାବରେ, ରାଷ୍ଟ୍ରନୀତିଜ୍ଞ ରୂପେ ଉଭା ହେଲେ । ଏହି ରିପୋର୍ଟ ତାଙ୍କୁ ଦେଶର ଭବିଷ୍ୟତ ଭାଗ୍ୟ ନିର୍ଦ୍ଧାରଣରେ ହିଁ ବାନ୍ଧି ପକାଇଲା । ଏହି ରିପୋର୍ଟ ତାଙ୍କର ସେ ସମୟର ଭାରତର ସାମାଜିକ ଓ ରାଜନୈତିକ ଆନ୍ଦୋଳନ ସମ୍ପର୍କରେ ଗଭୀର ଜ୍ଞାନର ପରିଚୟ ଦେବା ସହିତ ଗଣତନ୍ତ୍ରରେ ଅଗାଧ ବିଶ୍ୱାସ ଥିବାର ପ୍ରମାଣ କଲା । ସେ ଥିଲେ ଜାତୀୟତାବାଦୀ ଯେ ନିଜ ଦେଶ ଓ ତା'ର ଲୋକମାନଙ୍କୁ ଭଲ ପାଉଥିଲେ । ଆମ୍ବେଦକର ତାଙ୍କର ଏ ପ୍ରକାର ଆଭିମୁଖ୍ୟ ଦ୍ୱାରା ପ୍ରଗତିଶୀଳ ବିଚାରର ବାହକ ହେବା ସହିତ ସାମ୍ରାଜ୍ୟବାଦୀ ବ୍ରିଟିଶ ସରକାରର ନିର୍ଯ୍ୟାତନାର ରୂପକୁ ପ୍ରକାଶ କରିଦେବାରୁ ବ୍ରିଟିଶମାନଙ୍କର ସନ୍ଦେହ ଓ ବିଷଦୃଷ୍ଟିରେ ପଡିଲେ ।

## ଗୋଲଟେବୁଲ ବୈଠକ

୧୯୩୦ ମସିହାରେ ଲଣ୍ଡନ ଠାରେ ବ୍ରିଟିଶ ସରକାର ଭାରତ ପାଇଁ ଏକ ସମ୍ବିଧାନ ପ୍ରଣୟନ କରିବା ସକାଶେ ଗୋଲ ଟେବୁଲ ବୈଠକ ଡକାଇଲେ । ଏହାର ଉଦ୍ଦେଶ୍ୟ ଥିଲା ଭାରତୀୟ ଲୋକମାନଙ୍କୁ ସନ୍ତୁଷ୍ଟ କରିବା । ଏହି ଗୋଲ ଟେବୁଲ ବୈଠକରେ ୮୯ ଜଣ ପ୍ରତିନିଧିତ୍ୱ କରୁଥିଲେ । ତନ୍ମଧ୍ୟର ୧୬ଜଣ ବ୍ରିଟେନ୍‌ର ୩ଟି ଦଳ, ୫୩ ଜଣ ଭାରତୀୟ ପ୍ରତିନିଧି । ଏଥିରେ କଂଗ୍ରେସ ଏବଂ ଅନ୍ୟ ୨୦ଟି ରାଜ୍ୟ ଶାସନ ଅଂଶ ଗ୍ରହଣ କରିଥିଲେ । ଦଳିତ ବର୍ଗର ପ୍ରତିନିଧିତ୍ୱ କରୁଥିଲେ ଆମ୍ବେଦକର ଓ ରାଓ ବାହାଦୂର ଶ୍ରୀନିବାସନ ।

ଭବିଷ୍ୟତ ସ୍ୱପରିଚାଳିତ ଭାରତରେ ଦଳିତ ବର୍ଗଙ୍କର ରାଜନୈତିକ ସୁରକ୍ଷା କିପରି ହେବ, ସେଥିପାଇଁ ଆମ୍ବେଦକର ଓ ଶ୍ରୀନିବାସନ ଏକ ଚିଠା ଗୋଲ ଟେବୁଲ ବୈଠକରେ ଉପସ୍ଥାପିତ କଲେ । ସେ ସେଥିରେ ଅସ୍ପୃଶ୍ୟମାନଙ୍କୁ no-caste Hindu, Protestant Hindus ବା nonconformist Hindus ନାମରେ ନାମିତ କରିବାକୁ ସୂଚନା ଦେଲେ । ସେ ସ୍ପଷ୍ଟ କରିଦେଲେ ଯେ ହିନ୍ଦୁମାନଙ୍କଠାରୁ ଅସ୍ପୃଶ୍ୟମାନଙ୍କର ସ୍ୱତନ୍ତ୍ର ସ୍ଥାୟିତ୍ୱ ରହିଛି । ସେ କହିଥିଲେ ଯେ ସେ ସ୍ୱରାଜ୍ୟତ୍ୱ ପାଇଁ ଦାବି କରିବା ବେଳେ ଅସ୍ପୃଶ୍ୟମାନଙ୍କର ସମସ୍ୟାକୁ ମଧ୍ୟ ଲିଗ୍ ଅଫ ନେସନ୍‌ରେ ଉପସ୍ଥାପିତ କରିବେ । ସେ ତାଙ୍କ ଭାଷଣରେ ଭାରତରେ ବ୍ରିଟିଶ ଶାସନକୁ ତୀବ୍ର ସମାଲୋଚନା କରି କହିଥିଲେ, ଭାରତରେ ଦୀର୍ଘ ୧୫୦ ବର୍ଷରେ

ବ୍ରିଟିଶ ଶାସନ ଅସ୍ପୃଶ୍ୟମାନଙ୍କ ପ୍ରତି ହେଉଥିବା ଅନ୍ୟାୟକୁ ଅନୁଭବ କରିପାରିଲେ ନାହିଁ । ଆମ ହାତରେ ରାଜନୈତିକ କ୍ଷମତା ଆସିବା ପର୍ଯ୍ୟନ୍ତ ଏହା ସମ୍ଭବ ନୁହେ । ବହୁଦିନ ଧରି ଦଳିତ ବର୍ଗର ଲୋକେ କ'ଣ ଗୋଟେ ଅତ୍ୟାଶ୍ଚର୍ଯ୍ୟ ଘଟିବ ବୋଲି ଅପେକ୍ଷା କଲେଣି । ତେଣୁ ନୂତନ ସମ୍ବିଧାନ ଲୋକମାନଙ୍କର ସମ୍ମତି ଉପରେ ହିଁ ପ୍ରତିଷ୍ଠିତ ହେଉ ।

ସାଧାରଣ ପରିଷଦର ଆଲୋଚନା ପରେ ଆମ୍ବେଦକର ସଂଖ୍ୟାଲଘୁ ସବ୍ କମିଟି, ପ୍ରାଦେଶିକ ସବ୍ କମିଟି ଓ ସେବା ସମ୍ପର୍କିତ ସବ୍‌କମିଟିର ସଭ୍ୟ ରହିଥିଲେ । ସେ ଦଳିତ ବର୍ଗର ନିର୍ବାଚନ ପାଇଁ ସେମାନଙ୍କୁ ପୃଥକ୍ ସମ୍ପ୍ରଦାୟ ଭାବରେ ହିନ୍ଦୁମାନଙ୍କ ଠାରୁ ବିଚାର କରିବାକୁ କହିଥିଲେ । ଏହା ଦିଆନଗଲେ ଭାରତର କୌଣସି ସ୍ୱୟଂଶାସିତ ସମ୍ବିଧାନକୁ ସେମାନେ ସମ୍ମତି ପ୍ରଦାନ କରି ପାରିବେ ନାହିଁ ବୋଲି ମତ ଦେଲେ । ସେ ସମାନ ନାଗରିକତ୍ୱ, ସମାନ ଅଧିକାର, ସରକାରୀ ଚାକିରି ଓ ଆଇନ ପ୍ରଣୟନକାରୀ ସଂସ୍ଥାରେ ଦଳିତ ବର୍ଗ ପାଇଁ ସମାନ ପ୍ରତିନିଧିତ୍ୱ ଦାବି କରି ମନ୍ତ୍ରୀ ପିରିଷଦରେ ସେମାନଙ୍କୁ ସାମିଲ କଲେ ହିଁ ସେମାନଙ୍କର ସାମାଜିକ ଉନ୍ନତି ହେବା ସହିତ ଅସ୍ପୃଶ୍ୟତା ଦୂର ହୋଇପାରିବ ବୋଲି କହିଲେ ।

୧୯୩୧ ମାର୍ଚ୍ଚ ୫ ତାରିଖରେ ଗାନ୍ଧୀ-ଇରଉଇନ ଚୁକ୍ତି ସ୍ୱାକ୍ଷରିତ ହେଲା ଏବଂ ଗାନ୍ଧୀଜୀ ଅସହଯୋଗ ଆନ୍ଦୋଳନକୁ ବନ୍ଦ କଲେ । ଦ୍ୱିତୀୟ ଗୋଲ ଟେବୁଲ ବୈଠକରେ ଗାନ୍ଧି ଯୋଗ ଦେବେ ବୋଲି ସମ୍ମତି ପ୍ରଦାନ କଲେ । ୧୯୩୧ ସେପ୍ଟେମ୍ବର ୭ ତାରିଖ ଦିନ ଲଣ୍ଡନ ଠାରେ ଦ୍ୱିତୀୟ ଗୋଲ ଟେବୁଲ ବୈଠକ ଆରମ୍ଭ ହେଲା । ଦଳିତ ମାନଙ୍କ ପକ୍ଷରୁ ଅନ୍ୟ ଗୋଟିଏ ସ୍ମାରକପତ୍ର ସଂଖ୍ୟାଲଘୁ କମିଟି ନିକଟରେ ଉପସ୍ଥାପିତ କରାଗଲା । ଆମ୍ବେଦକର ପୃଥକ ନିର୍ବାଚନ ମଣ୍ଡଳୀ (electorate) ଦଳିତ ବର୍ଗଙ୍କ ପାଇଁ ଦାବି କଲେ । ସେ ପୁନର୍ବାର କହିଲେ ଯେ ଦଳିତ ବର୍ଗଙ୍କର ପ୍ରତିନିଧିତ୍ୱକୁ ୨୦ ବର୍ଷ ପର୍ଯ୍ୟନ୍ତ ପରିବର୍ତ୍ତନ କରାଯାଇପାରିବ ନାହିଁ ଏବଂ ଯେ ପର୍ଯ୍ୟନ୍ତ ସାର୍ବଜନୀନ ସାବାଳକ ଭୋଟ ପ୍ରଥା ପ୍ରତିଷ୍ଠିତ ନ ହୋଇଛି, ସେ ପର୍ଯ୍ୟନ୍ତ କୌଣସି ସ୍ମାରକ ପତ୍ର ଗ୍ରହଣୀୟ ନୁହେ ।

ମୁସଲମାନ, ଦଳିତ ବର୍ଗ, ଖ୍ରୀଷ୍ଟିୟାନ, ଇଉରୋପିଆନ ଓ ଆଙ୍ଗ୍ଲୋଇଣ୍ଡିଆନମାନଙ୍କର ଅଗ୍ରଣୀ ପ୍ରତିନିଧିମାନେ ଏକ ଯୁଗ୍ମ ସ୍ମାରକ ପତ୍ର ପ୍ରଦାନ

କଲେ । ଏହା "ସଂଖ୍ୟାଲଘୁ ଚୁକ୍ତି" ନାମରେ ଜଣା । ଏଥିରେ କୁହାଗଲା ଯେ ଅସ୍ପୃଶ୍ୟତା କାରଣରୁ ସାମାଜିକ ଅଧିକାର ଉପଭୋଗରେ କୌଣସି ବାଛବିଚାର କରାଯିବ ନାହିଁ, ସାଧାରଣ ଚାକିରି କ୍ଷେତ୍ରରେ ପୁଲିସ ଓ ମିଲିଟାରୀ ଚାକିରିରେ ସେମାନଙ୍କୁ ସ୍ୱାଚ୍ଛନ୍ଦ୍ୟ ସୁବିଧା ପ୍ରଦାନ କରାଯିବ ଏବଂ ସେମାନଙ୍କର ସବୁଠାରେ ସମାନ ପ୍ରତିନିଧିତ୍ୱ ରହିବା ସହିତ ସେମାନେ ସର୍ବୋଚ୍ଚ ମୁଖ୍ୟ (governer-general) ରାଜ୍ୟପାଳଙ୍କୁ ମଧ୍ୟ ଆବେଦନ କରିପାରିବେ ।

ଏହି ଚୁକ୍ତି ଦେଖି ଗାନ୍ଧୀଜୀ ରାଗିଗଲେ । ସେ ଆମ୍ବେଦକରଙ୍କର ଦକ୍ଷତାକୁ ପ୍ରଶଂସା କରିବାବେଳେ, ତାଙ୍କ ଜୀବନର ତିକ୍ତ ଅନୁଭୂତି ତାଙ୍କ ବିଚାରକୁ କ୍ଷୁଣ୍ଣ କରିଛି ବୋଲି କହିଲେ । ଗାନ୍ଧୀଜୀ ଅସ୍ପୃଶ୍ୟମାନଙ୍କ ସଂରକ୍ଷଣ ପ୍ରଦାନ କରିଛି ବୋଲି କହିଲେ । ଗାନ୍ଧୀଜୀ ଅସ୍ପୃଶ୍ୟମାନଙ୍କୁ ସଂରକ୍ଷଣ ପ୍ରଦାନ କରିବା ବିରୁଦ୍ଧରେ ନିଜର ଜୀବନ ବଳି ଦେବାକୁ ପ୍ରସ୍ତୁତ ଅଛନ୍ତି ବୋଲି ମତ ଦେଲେ । ଗାନ୍ଧୀଜୀଙ୍କର ଏକ ଯୁକ୍ତିର ଉତ୍ତର ଆମ୍ବେଦକର ଦେଇନଥିଲେ । ସଂଖ୍ୟାଲଘୁ କମିଟି ବ୍ରିଟିଶ ପ୍ରଧାନମନ୍ତ୍ରୀ ସାମ୍ପ୍ରଦାୟିକ ସମସ୍ୟାକୁ ସମାଧାନ କରନ୍ତୁ ଏହି ମର୍ମରେ ତାଙ୍କୁ କ୍ଷମତା ଦେବା କାଗଜରେ ମଧ୍ୟ ସେ ଦସ୍ତଖତ କଲେ ନାହିଁ । ଗାନ୍ଧୀଜୀ ଏଥିରେ ସ୍ୱାକ୍ଷର କରିଥିଲେ । ଆମ୍ବେଦକର ଗାନ୍ଧୀଜୀଙ୍କର ଏକଦେଶଦର୍ଶୀ ବିଚାର, ସଂଖ୍ୟାଲଘୁ ସମସ୍ୟା ସମାଧାନରେ ବାଛବିଚାର ବ୍ୟବହାର, ଅନ୍ୟ ପ୍ରତିନିଧିଙ୍କ ପ୍ରତି ଅସମ୍ମାନ ପ୍ରଦର୍ଶନ କରି ଏକାକୀ କାର୍ଯ୍ୟ କରିବାର ଶୈଳୀକୁ ନାପସନ୍ଦ କରିବା ସହିତ ଏହା କୌଶଳର ସହିତ ସମସ୍ୟା ସମାଧାନରେ ଗାନ୍ଧୀଜୀଙ୍କୁ ସାହାଯ୍ୟ କଲାନାହିଁ ।

ଆମ୍ବେଦକରଙ୍କ ନିକଟରେ ଏହି ପରିସ୍ଥିତିରେ ଦୁଇଟି ରାସ୍ତା ଉନ୍ମୋଚିତ ଥିଲା । ପ୍ରଥମଟି ହେଲା ବ୍ରିଟିଶ ସରକାରଙ୍କୁ ସାହାଯ୍ୟ କରିବା ଏବଂ ନିଜର ଦାବି ଗୁଡିକ ପ୍ରତି ସମ୍ମତି ଲାଭ କରିବା । ଦ୍ୱିତୀୟରେ ଗାନ୍ଧୀଜୀଙ୍କ ସହିତ ସହଯୋଗ କରି ଯୁଗ୍ମ ନିର୍ବାଚନ ମଣ୍ଡଳୀ (electorate) ମାଧ୍ୟମରେ ବିଶେଷ ପ୍ରତିନିଧିତ୍ୱ ହାସଲ କରିବା । ପ୍ରାଦେଶିକ ସାମ୍ବିଧାନିକ ସବ୍ କମିଟି, ନିର୍ବାଚନ ଅଧିକାର ସବ୍‌କମିଟି ଇତ୍ୟାଦିରେ ଆମ୍ବେଦକର ନିଜ ମତ ଦେଇଥିଲେ । ୧୯୩୨ ଅଗଷ୍ଟ ୧୪ ତାରିଖରେ ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ତାଙ୍କର ନିଷ୍ପତ୍ତି ସାମ୍ପ୍ରଦାୟିକ ସମସ୍ୟା ଉପରେ ଦେଇ ଦଳିତ ବର୍ଗ ପାଇଁ ସ୍ୱତନ୍ତ୍ର ସ୍ଥାନ ସଂରକ୍ଷଣ ବ୍ୟବସ୍ଥା ବିଧାନସଭା ମାନଙ୍କରେ ପ୍ରଦାନ କଲେ । ସାଧାରଣ ନିର୍ବାଚନ ମଣ୍ଡଳୀ ବ୍ୟତୀତ, ଅନ୍ୟ ଯେଉଁ ନିର୍ବାଚନ ମଣ୍ଡଳୀରେ ସେମାନେ ନିର୍ବାଚିତ ହେବେ, ସେଥିପାଇଁ ଯୁଗ୍ମ ଭୋଟ ଦେବା ବ୍ୟବସ୍ଥା

କଲେ । ଏହି ନିଷ୍ପତ୍ତି ଫଳରେ ମୁସଲମାନ, ଶିଖ୍, ଇଉରୋପିୟାନ, ଖ୍ରୀଷ୍ଟିୟାନ ଓ ଆଙ୍ଗ୍ଲୋ-ଇଣ୍ଡିଆନମାନଙ୍କୁ ପୃଥକ୍ ନିର୍ବାଚନ ମଣ୍ଡଳୀ ପ୍ରଦାନ କରାଗଲା । ଏହା ଭାରତୀୟମାନଙ୍କ ମଧ୍ୟରେ ଭାଗଭାଗ ହେବାର ମଞ୍ଜି ବୁଣିଲା । ଭାରତ ଇତିହାସରେ ଏହା ଥିଲା ଅସ୍ପୃଶ୍ୟମାନଙ୍କ ପାଇଁ ପ୍ରଥମ ସ୍ୱାଧୀନ ଭାବରେ ରାଜନୈତିକ ଅଧିକାର ଲାଭ । ଆମ୍ବେଦକର ଅସ୍ପୃଶ୍ୟମାନଙ୍କୁ ଉର୍ଦ୍ଧ୍ୱକୁ ଉଠାଇବା ପାଇଁ ଯେଉଁ ଆଦର୍ଶ ନେଇ ଲଢୁଥିଲେ ତାହାର ବିଜୟ ହେଲା ।

ଗାନ୍ଧୀଜୀ ଅସବର୍ଣ୍ଣମାନଙ୍କୁ ସବର୍ଣ୍ଣ ହିନ୍ଦୁମାନଙ୍କ ଠାରୁ ପୃଥକ୍ ନହେବା ପାଇଁ ସବୁପ୍ରକାର ଚେଷ୍ଟା କରିଥିଲେ । ସେ ସାର୍ ସାମୁଏଲ ହୋରଙ୍କ ନିକଟକୁ ପତ୍ର ଲେଖି ଯଦି ପୃଥକ୍ ନିର୍ବାଚନ ମଣ୍ଡଳୀ ଦିଆଯାଏ ତେବେ ତାହା ଦେଶକୁ ବିଭାଜନ କରିବ ବୋଲି ମତ ଦେଇଥିଲେ । ଏବଂ ସେ କହିଥିଲେ ଯଦି ମହାମହିମ ସରକାର ଏପରି ନିଷ୍ପତ୍ତି ଗ୍ରହଣ କରନ୍ତି ଏବଂ ଦଳିତ ବର୍ଗ ପାଇଁ ପୃଥକ୍ ନିର୍ବାଚନ ମଣ୍ଡଳୀ ସୃଷ୍ଟି କରନ୍ତି, ତେବେ ସେ ଉପବାସରେ ମୃତ୍ୟୁବରଣ କରିବେ ।

ଏହାକୁ ଆମ୍ବେଦକର ଗାନ୍ଧୀଜୀଙ୍କର "ରାଜନୈତିକ ଚାଲବାଜି" ବୋଲି ଅଭିହିତ କରିଥିଲେ । ୧୯୩୨ ସେପ୍ଟେମ୍ବର ୧୯ ତାରିଖ ଦିନ ପଣ୍ଡିତ ମାଲବ୍ୟ ବମ୍ବେଠାରେ ହିନ୍ଦୁ ନେତାମାନଙ୍କ ସମ୍ମିଳନୀରେ ଗାନ୍ଧୀଜୀଙ୍କ ଜୀବନରକ୍ଷା କରିବାକୁ କହିଥିଲେ ଓ ଆମ୍ବେଦକରଙ୍କୁ ମଧ୍ୟ ଅବଗତ କରାଇଥିଲେ । ଚୁନିଲାଲ ମେହେଟା ମଧ୍ୟ ଦଳିତ ବର୍ଗଙ୍କ ସ୍ଥାନ ସଂରକ୍ଷଣ ଦିଆଯିବାର ଗାନ୍ଧିଜୀଙ୍କର ବ୍ୟକ୍ତିଗତ କୌଣସି ବିରୋଧ ନାହିଁ ବୋଲି କହିଥିଲେ । ଗାନ୍ଧୀଜୀଙ୍କର ଜୀବନ ରକ୍ଷା କରିବାକୁ ହେଲେ ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ଦେଇଥିବା ସମ୍ମତି ପତ୍ର (award)କୁ ପରିବର୍ତ୍ତନ ଓ ସଂଶୋଧନ କରିବାକୁ ହେବ ଏବଂ ତାଙ୍କର ସମ୍ମତି ମଧ୍ୟ ପାଇବାକୁ ହେବ । ସମଗ୍ର ଦେଶର ଦୃଷ୍ଟି ଆମ୍ବେଦକରଙ୍କ ଉପରେ ନିବଦ୍ଧ ହେଲା । ସେ ନିଜର ବିବୃତିରେ କହିଲେ ଯେ ଯେତେବେଳେ ଗୋଟିଏ ଶୂନ୍ୟତା ସୃଷ୍ଟି ହୋଇଛି, ସେତେବେଳେ ଆଲୋଚନା କରିବାର କୌଣସି ମୂଲ୍ୟ ନାହିଁ ।

କୌଣସି ନିର୍ଦ୍ଦିଷ୍ଟ ତାରିଖ ଧାର୍ଯ୍ୟ ନ କରି ଆଲୋଚନା କରାଯାଏ ନାହିଁ । ଜାତୀୟ ସମ୍ବାଦପତ୍ର ଗୁଡିକ ତାଙ୍କ ବିରୋଧରେ ବିଷୋଦ୍‌ଗାର କରିବାକୁ ଲାଗିଲେ । ସେ ଭଡାଟିଆ, ବିଶ୍ୱାସ ଘାତକ, ଦାନବ ଇତ୍ୟାଦି ଭାବରେ ତାଙ୍କ ବିରୁଦ୍ଧରେ କୁତ୍ସାରଟନା କରାଗଲା । ସମ୍ମିଳନୀ ପୂର୍ବରୁ ସେ ଅନ୍ୟ ଏକ ବିବୃତି ଖବରକାଗଜରେ

ପ୍ରକାଶ ପାଇଁ ଦେଲେ । ସେ କହିଲେ, ''ଏହା ଅତି ଯୁକ୍ତିଯୁକ୍ତ ହୋଇଥା'ନ୍ତା ଯଦି ଗାନ୍ଧି ସବଠାରୁ ଶେଷ ଲକ୍ଷ୍ୟ ଦେଶ ପାଇଁ ସ୍ୱାଧୀନତା ଲାଭ କରିଥା'ନ୍ତେ ଯାହାକୁ ସେ ଗୋଲ ଟେବୁଲ ବୈଠକ ଆଲୋଚନା ତମାମ ଦାବି କରୁଥିଲେ । ଏହା ମଧ ଅତ୍ୟନ୍ତ ଦୁଃଖଦାୟକ ଘଟଣା ଯେ ଗାନ୍ଧି କେବଳ ଦଳିତ ବର୍ଗକୁ ପୃଥକ୍ ପ୍ରତିନିଧିତ୍ୱ ଦେବା କଥାଟିକୁ ସମୁଦାୟ ସାମ୍ପ୍ରଦାୟିକ ସିଦ୍ଧାନ୍ତ ଠାରୁ ଅଲଗା କରି ଆତ୍ମାହୁତି ଦେବାକୁ ଘୋଷଣା କରିଛନ୍ତି....ମହାତ୍ମା ଅମରତ୍ୱ ପ୍ରାପ୍ତ ବ୍ୟକ୍ତି ନୁହନ୍ତି ବା କଂଗ୍ରେସ...ମହାତ୍ମାମାନେ ଆସିଛନ୍ତି ଓ ଯାଇଛନ୍ତି । କିନ୍ତୁ ଅସ୍ପୃଶ୍ୟ ମାନେ ସେହିପରି ଅସ୍ପୃଶ୍ୟ ରହିଛନ୍ତି ।''

ଆମ୍ବେଦକର ଗାନ୍ଧୀଜୀଙ୍କୁ ଯାରବଡା ଜେଲରେ ଅନ୍ୟ ହିନ୍ଦୁ ନେତାମାନଙ୍କ ସହିତ ଯାଇ ସାକ୍ଷାତ କରିଥିଲେ ।

## ଗାନ୍ଧୀଜୀଙ୍କ ସହିତ ସଂଘର୍ଷ

### (କ) ଗାନ୍ଧି-ଆମ୍ବେଦକର ବାକ୍ୟ ବିନିମୟ

କଂଗ୍ରେସ ପ୍ରଥମ ଗୋଲ ଟେବୁଲ ବୈଠକକୁ ବର୍ଜନ କରିଥିଲା । କିନ୍ତୁ ଦ୍ୱିତୀୟ ଗୋଲ ଟେବୁଲ ବୈଠକରେ ଗାନ୍ଧି ଓ କଂଗ୍ରେସ ଯୋଗ ଦେବାର ନିଷ୍ପତ୍ତି ହେଲା । ଲଣ୍ଡନଠାରେ ଅନୁଷ୍ଠିତ ଏହି ବୈଠକରେ ଯୋଗ ଦେବାକୁ ଆମ୍ବେଦକର, ଶାସ୍ତ୍ରୀ, ସାପ୍ରୁ, ଜୟକର, ଶିତଲବାଦ, ମାଲବୀୟ, ସରୋଜିନୀ ନାଇଡୁ, ଗାନ୍ଧି, ମିର୍ଜା ଇସମାଇଲ, ଜିନ୍ନା ରାମସ୍ୱାମୀ ମୁଦାଲିୟର ଓ ଅନ୍ୟମାନେ ନିମନ୍ତ୍ରିତ ହୋଇଥିଲେ । ଆମ୍ବେଦକର ଏଥରକ ଫେଡେରାଲ ଷ୍ଟ୍ରକଚର କମିଟିକୁ ମନୋନୀତ ହୋଇଥିଲେ ଯାହାକି ନୂତନ ସମ୍ବିଧାନ ପ୍ରସ୍ତୁତ କରିବାର ଦାୟିତ୍ୱ ନେବ । ସେ ଏହି କମିଟିକୁ ମନୋନୀତ ହୋଇଥିବାରୁ ତାଙ୍କୁ ଚାରିଆଡୁ ଶୁଭେଚ୍ଛା ବାର୍ତ୍ତାମାନ ଆସିବାରେ ଲାଗିଲା । ଯେଉଁ ଖବରକାଗଜ ଗୁଡିକ ତାଙ୍କର ସାମାଜିକ ସଂସ୍କାର ବିରୁଦ୍ଧରେ ମତ ଦେଉଥିଲେ ସେପରି ଖବରକାଗଜ କୋଲାବା ସମାଚାର ଓ ଇଣ୍ଡିଆନ୍ ଡେଲି ମେଇ ମଧ ଆମ୍ବେଦକରଙ୍କ ଦେଶପ୍ରେମ ରୂପକ ସେବା ଦେଇଥିବାରୁ ଧନ୍ୟବାଦ ଜଣାଇଲେ । ଏପରିକି ଲୋକ ସେବକ ମଣ୍ଡଳ(Servants of Indian Society) ତାଙ୍କ ପତ୍ରିକାରେ ଉଲ୍ଲେଖ କରିଥିଲେ, ଆମ୍ବେଦକର ଓ ଏନ୍ଏମ୍ ଯୋଶୀ ସମାଜର ଦଳିତ ବର୍ଗରୁ ଅଣାଯାଇଛନ୍ତି । ଜଣେ ଦଳିତଙ୍କର ପ୍ରତିନିଧି,

ଅନ୍ୟଜଣେ ଶ୍ରମିକ ଶ୍ରେଣୀର । ସେମାନେ ଉଚ୍ଚ ରାଜନୀତି ତୁଳନାରେ ଅନଭିଜ୍ଞ କିନ୍ତୁ ସେମାନଙ୍କର ସାଧାରଣ ଲୋକମାନଙ୍କ ପ୍ରତି ସରଳ ବିଶ୍ୱାସ ରହିଛି । ସେମାନଙ୍କର ଚାରିପାଖରେ ଘେରି ରହିଥିବା ମହାନ୍ ବ୍ୟକ୍ତିତ୍ୱ ମାନଙ୍କର ହସରେ ଦବିଯିବେ ନାହିଁ ଏବଂ ଯେଉଁ ଆଦର୍ଶ ସେମାନେ ହାସଲ କରିବାକୁ ବଦ୍ଧ ପରିକର, ସେଥିରୁ ଆଦୌ ଓହରିଯିବେ ନାହିଁ ।''

ଗାନ୍ଧୀଜୀ ଆମ୍ବେଦକରଙ୍କୁ ସାକ୍ଷାତ କରିବାକୁ ଚାହିଁଲେ । ୧୯୩୧ ଅଗଷ୍ଟ ୬ ତାରିଖ ଦିନ ଗାନ୍ଧୀଜୀ ଆମ୍ବେଦକରଙ୍କୁ ଏକ ପତ୍ର ଲେଖି ସେ ତାଙ୍କୁ ରାତି ୮ଟା ବେଳେ ସେଦିନ ସନ୍ଧ୍ୟାରେ ସାକ୍ଷାତ କରିବାକୁ ଚାହିଁଲେ ଏବଂ ଆମ୍ବେଦକରଙ୍କର ଯଦି କୌଣସି ଅସୁବିଧା ନଥାଏ, ତେବେ ତାଙ୍କ ଘରକୁ ସେ ଯିବେ । ଆମ୍ବେଦକର ଗାନ୍ଧୀଜୀଙ୍କୁ ସାକ୍ଷାତ କରିବାକୁ ଓ ତାଙ୍କ ପାଖକୁ ଯିବାକୁ ସମ୍ମତ ହେଲେ ସତ କିନ୍ତୁ ମାତ୍ରାଧିକ ଜ୍ୱର ହେତୁ ଯାଇପାରିଲେ ନାହିଁ । ଏହି ସାକ୍ଷାତ ଅଗଷ୍ଟ ୧୪ ତାରିଖ ଦିନ ଗାନ୍ଧୀଜୀ ରହୁଥିବା ମଣିଭବନଠାରେ ଦିନ ଦୁଇଟା ବେଳେ ଅନୁଷ୍ଠିତ ହୋଇଥିଲା ।

ଆମ୍ବେଦକରଙ୍କ ସହିତ ତାଙ୍କର ନିକଟତମ ସହଯୋଗୀ ଦେଓରାଓ ନାଏକ, ଶିବତାରକର, ପ୍ରଧାନ, ଭାଉରାଓ ଗାଇକୋୱାଡ ଏବଂ କାଦ୍ରେକର ଯାଇଥିଲେ । ଘରର ତୃତୀୟ ମହଲାରେ ଏହି ସାକ୍ଷାତ ଓ ଆଲୋଚନା ହୋଇଥିଲା । ଗାନ୍ଧୀଜୀଙ୍କ ନିକଟରେ ପଡିଥିବା କମ୍ବଳରେ ଆମ୍ବେଦକର ଓ ତାଙ୍କର ସାଥୀମାନେ ବସିବାବେଳେ ଗାନ୍ଧୀଜୀ ପ୍ରଥମେ ସେମାନଙ୍କ ପ୍ରତି ଦୃଷ୍ଟିପାତ କରିନଥିଲେ । କିଛି ସମୟ ପରେ ଗାନ୍ଧୀଜୀ ତାଙ୍କୁ ଦେଖିଥିଲେ । ଏହା ଥିଲା ଗାନ୍ଧୀଜୀଙ୍କର ପ୍ରଥମ ସାକ୍ଷାତ । ଗାନ୍ଧୀଜୀ ବିଷୟବସ୍ତୁ ଆଲୋଚନା କରିବାକୁ ଆରମ୍ଭ କଲେ ।

ଗାନ୍ଧି - ହଁ, ଡକ୍ଟର, ଏ ବିଷୟରେ ତୁମର କ'ଣ କହିବାର ଅଛି ?

ଆମ୍ବେଦକର - ଆପଣ ମତେ ଆପଣଙ୍କର ମତ ଜଣାଇବାକୁ ଡାକିଛନ୍ତି । ଦୟାକରି କ'ଣ କହିବାର କଥା କୁହନ୍ତୁ । କିମ୍ବା ଦୟାକରି ଯଦି କିଛି ପ୍ରଶ୍ନ ଥାଏ ତେବେ ପଚାରିଲେ, ମୁଁ ଉତ୍ତର ଦେବି ।

ଗାନ୍ଧି(ଆମ୍ବେଦକରଙ୍କୁ ଗାରଡେଇ ଚାହିଁ) -

''ମୁଁ ଜାଣିବାକୁ ପାଇଛି ଯେ ତୁମର ମୋ ଉପରେ ଏବଂ କଂଗ୍ରେସ ଉପରେ କିଛି ଅଭିଯୋଗ ଅଛି । ମୁଁ ତୁମକୁ କହିରଖେ ଯେ ମୁଁ ମୋ ସ୍କୁଲ ବେଳରୁ ଅସ୍ପୃଶ୍ୟ

ମାନଙ୍କର ସମସ୍ୟା ସମ୍ପର୍କରେ ଭାବୁଛି, ଯେତେବେଳକୁ ତୁମେ ଜନ୍ମ ହୋଇ ନଥିଲ । ତୁମେ ହୁଏତ ଜାଣିଥିବ କଂଗ୍ରେସ କାର୍ଯ୍ୟକ୍ରମରେ ଓ କଂଗ୍ରେସ ମଞ୍ଚରେ ଏହି ସମସ୍ୟାକୁ ରଖିବାକୁ ମୋତେ କେତେ କଷ୍ଟକର ଚେଷ୍ଟା କରିବାକୁ ହୋଇଛି । କଂଗ୍ରେସ ନେତାମାନେ ଏହାକୁ ଏକ ଧାର୍ମିକ ଓ ସାମାଜିକ ସମସ୍ୟା ବୋଲି ଦୁହାଇ ଦେଇ ବିରୋଧ କଲେ ଏବଂ ରାଜନୀତି ସହିତ ଏହାକୁ ନମିଶେଇବାକୁ କହିଲେ । କେବଳ ଏତିକି ନୁହେ । କଂଗ୍ରେସ ଏ ପର୍ଯ୍ୟନ୍ତ ଅସ୍ପୃଶ୍ୟମାନଙ୍କର ଉନ୍ନତି ପାଇଁ ପ୍ରାୟ କୋଡିଏ ଲକ୍ଷରୁ ଉଣା ଅର୍ଥ ଖର୍ଚ୍ଚ କରିନାହାନ୍ତି । ଏବଂ ବାସ୍ତବିକ ଏହା ଆଶ୍ଚର୍ଯ୍ୟ ଲାଗେ ଯେ ତୁମପରି ଲୋକ ମତେ ଓ କଂଗ୍ରେସକୁ ବିରୋଧ କରୁଛ । ଯଦି ତୁମର ତୁମ ବିଚାର ସମ୍ପର୍କରେ କିଛି କହିବାର ଥାଏ, ତେବେ ନିଃସଙ୍କୋଚରେ କହିପାର ।''

ଆମ୍ବେଦକର - ମହାତ୍ମାଜୀ ; ଏହା ସତ୍ୟ ଯେ ଆପଣ ମୋର ଜନ୍ମପୂର୍ବରୁ ଅସ୍ପୃଶ୍ୟମାନଙ୍କର ସମସ୍ୟା ସମ୍ପର୍କରେ ଭାବୁଛନ୍ତି । ପ୍ରତ୍ୟେକ ବୃଦ୍ଧ ଓ ବୟସ୍କ ଲୋକମାନେ ବୟସର ଦୁହାଇ ଦେଇଥା'ନ୍ତି । ଏହା ମଧ୍ୟ ସତ୍ୟ ଯେ ଆପଣଙ୍କ ଯୋଗୁ କଂଗ୍ରେସ ଦଳ ଏହି ସମସ୍ୟାକୁ ସ୍ୱୀକୃତି ପ୍ରଦାନ କରିଛି । କିନ୍ତୁ ମୁଁ ଆପଣଙ୍କୁ ପରିଷ୍କାର କହିଦେବାକୁ ଚାହେଁ ଯେ କଂଗ୍ରେସ କେବଳ ସାମାନ୍ୟ ସ୍ୱୀକୃତି ଦେବା ଛଡା ଅନ୍ୟ କିଛି କରିନାହିଁ । ଆପଣ କହିଲେ କଂଗ୍ରେସ ଅସ୍ପୃଶ୍ୟମାନଙ୍କର ଉନ୍ନତି ପାଇଁ କୋଡିଏ ଲକ୍ଷ ଟଙ୍କା ଖର୍ଚ୍ଚ କରିଛି । ମୁଁ କହିରଖେ ଏହାର କୌଣସି ମୂଲ୍ୟ ନାହିଁ । ଏପରି ପୃଷ୍ଠପୋଷକତା ପାଇଥିଲେ ମୁଁ ମୋର ଲୋକମାନଙ୍କର ଦୃଷ୍ଟିକୋଣ ଓ ଅର୍ଥନୀତିରେ ଅଭାବନୀୟ ପରିବର୍ତ୍ତନ ଘଟାଇ ପାରିଥା'ନ୍ତି । ଏବଂ ଏପରି କ୍ଷେତ୍ରରେ ଆପଣଙ୍କର ମୋତେ ବହୁ ପୂର୍ବରୁ ସାକ୍ଷାତ କରିବାର ଆବଶ୍ୟକତା ଥିଲା । ମୁଁ ଆପଣଙ୍କୁ କହିରଖେ ଯେ କଂଗ୍ରେସ ତାର କାର୍ଯ୍ୟରେ ଆଦୌ ନିଷ୍ଠାପର ନୁହେ । ଯଦି ସେମାନେ ନିଷ୍ଠାପର ହୋଇଥାନ୍ତେ, ଅସ୍ପୃଶ୍ୟତା ନିବାରଣକୁ ଏକ ସର୍ତ୍ତ ରୂପେ ରଖିଥାନ୍ତେ, ଯେପରି କଂଗ୍ରେସ ସଭ୍ୟ ହେବାକୁ ହେଲେ ଖଦଡ ପିନ୍ଧିବା ରଖାଯାଇଛି । ଯେଉଁ ବ୍ୟକ୍ତି ବିଶେଷ ନିଜ ଘରେ ଅସ୍ପୃଶ୍ୟ ପୁରୁଷ ବା ସ୍ତ୍ରୀମାନଙ୍କୁ ନିଯୁକ୍ତ ଦେଇଛନ୍ତି, କୌଣସି ଅସ୍ପୃଶ୍ୟ ଛାତ୍ରର ପ୍ରତିପାଳନ କରୁଛନ୍ତି କିମ୍ବା ସପ୍ତାହରେ ଥରେ ଅସ୍ପୃଶ୍ୟ ଛାତ୍ର ସହିତ ଘରେ ଖାଦ୍ୟ ଖାଉଛନ୍ତି, ସେପରି ବ୍ୟକ୍ତି ବିଶେଷଙ୍କୁ କଂଗ୍ରେସର ସଭ୍ୟ ଭାବରେ ଅନୁମତି ଦେବା ଆବଶ୍ୟକ ଥିଲା । ଯଦି ଏପରି ସର୍ତ୍ତ ଥାଆନ୍ତା, ତେବେ ଆପଣ ଜିଲ୍ଲା କଂଗ୍ରେସ କମିଟି ସଭାପତିଙ୍କୁ ଅସ୍ପୃଶ୍ୟମାନଙ୍କର ମନ୍ଦିର ପ୍ରବେଶକୁ ବିରୋଧ କରିବାରୁ କ୍ଷାନ୍ତ କରିପାରିଥାନ୍ତେ !

ଆପଣ କହିପାରନ୍ତି କଂଗ୍ରେସର ଶକ୍ତି ଦରକାର ଏବଂ ଏପରି ସର୍ତ୍ତ ଆରୋପ କରାଯାଇପାରିବ ନାହିଁ । ତେବେ ମୋର ମତ ଯେ କଂଗ୍ରେସ ଯେତେ ସଂଖ୍ୟାଶକ୍ତି ଚାହେଁ ସେତେ ଆଦର୍ଶ ନୁହେ । ଏହା ହେଉଛି ମୋର ଆପଣଙ୍କ ବିରୁଦ୍ଧରେ ଓ କଂଗ୍ରେସ ବିରୁଦ୍ଧରେ ଅଭିଯୋଗ । ଆପଣ କହିଛନ୍ତି ବ୍ରିଟିଶ୍ ସରକାର କୌଣସି ହୃଦୟ ପରିବର୍ତ୍ତନର ଚିହ୍ନ ଦେଖାଉନାହାନ୍ତି । ମୁଁ ମଧ୍ୟ କହୁଛି ଯେ ହିନ୍ଦୁମାନେ ମଧ୍ୟ ହୃଦୟ ପରିବର୍ତ୍ତନର ଆଭାସ ଦେଉନାହାନ୍ତି ଆମର ସମସ୍ୟାକୁ ନେଇ ଏବଂ ଯେ ପର୍ଯ୍ୟନ୍ତ ସେମାନେ ଏପରି କଠୋର ରହିବେ, ଆମ୍ଭେମାନେ ସେ ପର୍ଯ୍ୟନ୍ତ ହିନ୍ଦୁ ବା କଂଗ୍ରେସକୁ ବିଶ୍ୱାସ କରିବୁ ନାହିଁ । ଆମେ ଆତ୍ମସାହାଯ୍ୟ ଓ ଆତ୍ମସମ୍ମାନରେ ବିଶ୍ୱାସ କରୁ । ଆମ୍ଭେମାନେ ବିରାଟ ବିରାଟ ନେତା ବା ମହାତ୍ମାଙ୍କ ଉପରେ ବିଶ୍ୱାସ କରିବାକୁ ପ୍ରସ୍ତୁତ ନୋହୁଁ । ଏ ସମ୍ପର୍କରେ ମୁଁ ନିଷ୍ଠୁର ଭାବରେ ଆପଣଙ୍କୁ ଖୋଲିକରି କହିବାକୁ ଚାହେଁ । ଇତିହାସ କହୁଛି ଯେ ମହାତ୍ମାମାନେ ଉଡିଯାଉଥିବା ଅଦୃଶ୍ୟ ଭୂତ ପରି ଧ୍ୱନି ଉଠାନ୍ତି, କିନ୍ତୁ ସୋପାନ ଉଠାଇ ପାରନ୍ତି ନାହିଁ । ତେବେ କାହିଁକି କଂଗ୍ରେସ ଆମର ଆନ୍ଦୋଳନକୁ ବିରୋଧ କରୁଛି ଏବଂ ମୋତେ ବିଶ୍ୱାସଘାତକ ବୋଲି ଅଭିହିତ କରୁଛି ?''

ଆମ୍ବେଦକର ଅଧିକ ଉଦ୍‌ବୁଦ୍ଧ ହୋଇ ଉଠିଲେ । ତାଙ୍କର ମୁଖ ଉଜ୍ଜ୍ୱଳ ଦେଖାଗଲା ଓ ଚକ୍ଷୁରେ ଜ୍ୟୋତି ଝଲକିଲା । ସେ କ୍ଷଣମାତ୍ର ନୀରବ ରହି ପୁଣି ଅତ୍ୟନ୍ତ ଘୃଣା ମିଶ୍ରିତ କ୍ରୋଧରେ କହିଲେ, ''ଗାନ୍ଧୀଜୀ, ମୋର ନିଜର ଜନ୍ମଭୂମି ନାହିଁ ।'' ଗାନ୍ଧି (ଅବାକ୍ ହୋଇ ଓ ତାଙ୍କୁ ଶାନ୍ତ କରିବା ପାଇଁ) - ତୁମର ନିଜର ଜନ୍ମଭୂମି ଅଛି । ଏବଂ ଗୋଲ ଟେବୁଲ ବୈଠକ ବିବରଣୀରୁ ମୁଁ ଯାହା ଜାଣିବାକୁ ପାଇଛି, ତୁମେ ଜଣେ ସଚ୍ଚା ଦେଶପ୍ରେମୀ ।

ଆମ୍ବେଦକର - ଆପଣ କହୁଛନ୍ତି ମୋର ଜନ୍ମଭୂମି ଅଛି । କିନ୍ତୁ ମୁଁ ତଥାପି ଦୋହରାଉଛି ଯେ ମୋର ଜନ୍ମଭୂମି ନାହିଁ । କିପରି ଭାବରେ ମୁଁ ଏହି ଭୂମିକୁ ମୋର ଜନ୍ମଭୂମି ବୋଲି କହିପାରିବି ଏବଂ ଏହି ଧର୍ମକୁ ମୋ ଧର୍ମ; ଯେଉଁଠାରେ ଆମକୁ ବିଲେଇ ଏବଂ କୁକୁର ମାନଙ୍କ ଠାରୁ ଅଧିକ ଖରାପ ବ୍ୟବହାର ଦେଖାଯାଉଛି, ଯେଉଁଠାରେ ଆମେ ପିଇବାକୁ ପାଣି ପାଉନୁ ? କୌଣସି ଆତ୍ମସମ୍ମାନବୋଧ ଥିବା ଅସ୍ପୃଶ୍ୟ ଏହି ଭୂମିକୁ ନେଇ ଗର୍ବ କରିପାରିବ ନାହିଁ । ଏହି ଭୂମି ଦ୍ୱାରା ଯେଉଁ ପ୍ରକାର ଅନ୍ୟାୟ ଓ ନିର୍ଯ୍ୟାତନା ଆମ ଉପରେ ଲଦି ଦିଆଯାଇଛି ତାହା ଏତେ ବେଶି ଯେ ଜାଣତରେ ବା ଅଜାଣତରେ, ଆମେ ଏହି ଭୂମି ପ୍ରତି ଅକୃତଜ୍ଞତାର ଶିକାର ହୋଇଛୁ,

ଏବଂ ସେଥିର ଦାୟିତ୍ୱ ଏହି ଭୂମିର । ମୋତେ ବିଶ୍ୱାସଘାତକ କୁହାଯାଇଥିବାରୁ ମୁଁ ଆଦୌ ଦୁଃଖିତ ନୁହେ । କାରଣ ଆମ କାର୍ଯ୍ୟର ଦାୟିତ୍ୱ ଏହି ଭୂମିର ଯେକି ମତେ ବିଶ୍ୱାସଘାତକ ବୋଲି କହିଛି । ଯଦି ମୁଁ କିଛି ଜାତୀୟସେବା ସମ୍ପାଦନ କରିଥାଏ ଯାହା ଆପଣ କହୁଛନ୍ତି, ସାହାଯ୍ୟକାରୀ ବା ଲାଭଦାୟକକାରୀ, ଏହି ଦେଶର ଦେଶପ୍ରେମ ପାଇଁ ଉଦ୍ଦିଷ୍ଟ, ତେବେ ତାହା ମୋର ବିବେକଯୋଗୁ, କିନ୍ତୁ ଦେଶପ୍ରେମର ଭାବନା ଯୋଗୁ ନୁହେ । ଯେଉଁମାନେ ଏ ଦେଶରେ ଯୁଗଯୁଗ ଧରି ନିଷେଷିତ ହୋଇ ରହିଛନ୍ତି, ସେମାନଙ୍କର ମାନବିକ ଅଧିକାର ପାଇଁ ମୋର ପ୍ରଚେଷ୍ଟା; ଯଦି ମୁଁ କିଛି ତ୍ରୁଟି ବିଚ୍ୟୁତି କରେ, ତେବେ ଏହା ଆଦୌ ପାପ ହେବ ନାହିଁ । ଏବଂ ଯଦି ମୋର କାର୍ଯ୍ୟ ଯୋଗୁ ଏହି ଦେଶକୁ କିଛି କ୍ଷତି ପହଞ୍ଚିବ ନାହିଁ, ତେବେ ତାହା ମୋର ବିବେକ ଯୋଗୁ । ମୋର ବିବେକର ସ୍ୱର ମୋତେ ମୋର ଲୋକମାନଙ୍କ ପାଇଁ ମାନବିକ ଅଧିକାର ହାସଲ କରିବାକୁ ପ୍ରବର୍ତ୍ତାଉଛି, ଏ ଦେଶ ପ୍ରତି କୌଣସି କ୍ଷତି କରିବାର ଉଦ୍ଦେଶ୍ୟ ନରଖି ।''

ପରିବେଶ ଅତ୍ୟନ୍ତ ଗମ୍ଭୀର ହୋଇ ଉଠିଲା । ମୁଖମଣ୍ଡଳମାନ ତାଙ୍କର ରଙ୍ଗ ପରିବର୍ତ୍ତନ କଲେ । ଗାନ୍ଧି ନିଜକୁ ଅସହାୟ ଅନୁଭବ କରୁଥିଲେ । ସେ ଆମ୍ବେଦକରଙ୍କର କଥାକୁ ଅନ୍ୟଦିଗକୁ ବୁଲାଇ ନେବାକୁ ଚାହୁଁଥିଲେ । ସେହି ସମୟରେ ଆମ୍ବେଦକର ତାଙ୍କୁ ଏକ ନିର୍ଦ୍ଦିଷ୍ଟ ପ୍ରଶ୍ନ ପଚାରିଲେ ଯାହା ସାକ୍ଷାତକାରର ଉଦ୍ଦେଶ୍ୟ ଥିଲା ।

ଆମ୍ବେଦକର - ''ସମସ୍ତେ ଜାଣନ୍ତି ଯେ ମୁସଲମାନମାନେ ଓ ଶିଖ୍‌ମାନେ ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଭାବେ ଅସ୍ପୃଶ୍ୟମାନଙ୍କ ଠାରୁ ଅଧିକ ଅଗ୍ରଗାମୀ । ପ୍ରଥମ ଗୋଲ ଟେବୁଲ ବୈଠକ ମୁସଲମାନମାନଙ୍କ ଦାବିକୁ ରାଜନୈତିକ ସ୍ୱୀକୃତି ପ୍ରଦାନ କଲା । ଏବଂ ସେମାନଙ୍କ ପାଇଁ ରାଜନୈତିକ ସୁରକ୍ଷା ପ୍ରଦାନ କଲା । କଂଗ୍ରେସ ସେମାନଙ୍କର ଦାବିକୁ ମାନିନେଲା । ସେହି ପ୍ରଥମ ବୈଠକ ମଧ ଦଳିତ ବର୍ଗମାନଙ୍କର ରାଜନୈତିକ ଅଧିକାରକୁ ସ୍ୱୀକୃତି ଦେଲା । ଏବଂ ରାଜନୈତିକ ସୁରକ୍ଷା ଓ ଉପଯୁକ୍ତ ପ୍ରତିନିଧିତ୍ୱ ପାଇଁ ସୁପାରିଶ କଲା । ଆମ୍ଭ ବିଚାରରେ ଏହା ଅବହେଳିତ ବର୍ଗ ପାଇଁ ଲାଭଦାୟକ । ଏ ସମ୍ବନ୍ଧରେ ଆପଣଙ୍କ ମତ କ'ଣ ?

ଗାନ୍ଧୀଜୀ - ହିନ୍ଦୁମାନଙ୍କ ଠାରୁ ଦଳିତମାନେ ପୃଥକ୍ ହୋଇଯାନ୍ତୁ ମୁଁ ଏହା ବିରୁଦ୍ଧରେ । ଏହା ସମ୍ପୂର୍ଣ୍ଣ ଆତ୍ମହତ୍ୟା ସଦୃଶ ହେବ ।

ଆମ୍ବେଦକର (ଉଠିପଡି) - "ଆପଣଙ୍କର ମୁକ୍ତ ମତ ପାଇଁ ଧନ୍ୟବାଦ । ଏହି ଗୁରୁତ୍ୱପୂର୍ଣ୍ଣ ସମସ୍ୟା ସମ୍ପର୍କରେ ଆମେ କେଉଁଠି ଅଛୁ ତାହା ଆପଣଙ୍କ ମତରୁ ଜାଣିପାରିଲୁ । ମୁଁ ଆପଣଙ୍କ ଠାରୁ ବିଦାୟ ନେଉଛି ।"

ଏପରି ଏକ ଗମ୍ଭୀର ପରିସ୍ଥିତି ମଧ୍ୟରେ ସାକ୍ଷାତକାରର ସମାପ୍ତି ଘଟିଲା । ଗାନ୍ଧି ଓ ଆମ୍ବେଦକରଙ୍କ ମଧ୍ୟରେ ଏଥିଲା ସମ୍ମୁଖ ସମରର ପୂର୍ବାଭାସ । କାରଣ ଆମ୍ବେଦକର ନିଜ ଲୋକମାନଙ୍କ ପାଇଁ ମାନବିକ ଅଧିକାର ହାସଲ କରିବା ଓ ତା'ର ସୁରକ୍ଷା ପାଇଁ ଥିଲେ ବଦ୍ଧ ପରିକର ।

## ପୁନା ଚୁକ୍ତି

ଦଳିତ ବର୍ଗ ସମ୍ପର୍କରେ ମତ ଦେଇ ଆମ୍ବେଦକର କହିଥିଲେ, "ଜାତିପ୍ରଥାର ମଳୁଖ (by-product) ଭାବରେ ଅଜାତି (out caste) ର ଉଦ୍ଭବ ଯେ ପର୍ଯ୍ୟନ୍ତ ଜାତିପ୍ରଥା ରହିଛି ସେ ପର୍ଯ୍ୟନ୍ତ ଅଜାତି ମଧ୍ୟ ରହିବ । ଏବଂ କୌଣସି କଥା ଏହି ଅଜାତିକୁ ମୁକ୍ତ କରିବ ନାହିଁ ଯେ ପର୍ଯ୍ୟନ୍ତ ଜାତିପ୍ରଥାର ସମ୍ପୂର୍ଣ୍ଣ ବିଲୋପ ସାଧନ ନ ହୋଇଛି ।" ଆମ୍ବେଦକରଙ୍କର ଏହି ମତକୁ ନମ୍ର ଭାବରେ ଗାନ୍ଧୀଜୀ ପ୍ରତ୍ୟାଖ୍ୟାନ କରିଥିଲେ । ସେ କହିଥିଲେ, "ଅସ୍ପୃଶ୍ୟତା ହିନ୍ଦୁ ଧର୍ମର ସବୁଠାରୁ ବଡ କଳଙ୍କ କିନ୍ତୁ ସେଥିପାଇଁ ସମଗ୍ର ବ୍ୟବସ୍ଥାକୁ ଘୋଷାଡି ପକାଇବା ଠିକ୍ ହେବ ନାହିଁ । ଯାହା ଅତ୍ୟଧିକ ହୋଇଛି, ତାହାକୁ ଦୂର କରିବା ଆବଶ୍ୟକ କିନ୍ତୁ ଯଦି ଚେଷ୍ଟା ବିଫଳ ହୁଏ, ତେବେ କିପରି ଭାବରେ ଏବଂ କାହାଦ୍ୱାରା ବର୍ଣ୍ଣାଶ୍ରମ ବିରୁଦ୍ଧରେ ସଂଗ୍ରାମ କରିବାକୁ ହେବ, ତାହା ବିଚାର କରାଯାଇପାରେ ।"

ଗୋଲ ଟେବୁଲ ବୈଠକ ସମ୍ପର୍କରେ ମତ ଦେଇ ଆମ୍ବେଦକର ଦଳିତ ବର୍ଗଙ୍କର ସଭାରେ ବିଲାତ ଯିବାର ଅବ୍ୟବହିତ ପୂର୍ବରୁ ଭାଷଣ ଦେଇ କହିଥିଲେ, "୧୨୫ ସଭ୍ୟ ବିଶିଷ୍ଟ ସମ୍ମିଳନୀ ହଲ୍‌ରେ ଆମେ କେବଳ ଦୁଇଜଣ । କିନ୍ତୁ ଏହା ଦୃଢ଼ ନିଶ୍ଚୟ ଯେ ତୁମ୍ଭମାନଙ୍କର ଉନ୍ନତି କଳେ ଆମେ ମାଟି ଓ ଆକାଶକୁ ଏକ କରିଦେବୁ । ଆଜି ଅପରାହ୍ନରେ ମୋର ଗାନ୍ଧିଙ୍କ ସହିତ ଆଲୋଚନା ହୋଇଥିଲା । ସେ ତୁମ୍ଭମାନଙ୍କର ସ୍ୱାର୍ଥରକ୍ଷା ପାଇଁ ବର୍ତ୍ତମାନ କିଛି କରିପାରିବେ ନାହିଁ । ଆମ୍ଭକୁ ଆମ୍ଭ ନିଜ ଗୋଡରେ ଛିଡା ହେବାକୁ ପଡିବ ଏବଂ ଯେତେ ସମ୍ଭବ ସଫଳତାର ସହ ଆମ୍ଭର ଅଧିକାର ପାଇଁ ଯୁଦ୍ଧ କରିବାକୁ ହେବ । ତୁମ୍ଭେମାନେ ସଂଗ୍ରାମ ଜାରି ରଖ ଏବଂ ସୈନ୍ୟ ବଳକୁ ସଙ୍ଗଠିତ କର । ସଂଗ୍ରାମ ବଳରେ କ୍ଷମତା ଓ ସମ୍ମାନ

ବଳେ ବଳେ ଆସିବ ।''

୨ୟ ଗୋଲଟେବୁଲ ବୈଠକ ୧୯୩୧ ସେପ୍ଟେମ୍ବର ୭ ତାରିଖରେ ଆରମ୍ଭ ହେଲା ଏବଂ ସେପ୍ଟେମ୍ବର ୧୫ ତାରିଖ ଦିନ ଗାନ୍ଧୀଜୀ ତାଙ୍କର ପ୍ରଥମ ଭାଷଣ ପ୍ରଦାନ କଲେ ।

ସେ ଦାବି କଲେ ଯେ କଂଗ୍ରେସ ହିଁ ଭାରତର ସ୍ୱାର୍ଥ ଓ ଶ୍ରେଣୀର ପ୍ରତିନିଧିତ୍ୱ କରୁଛି । କଂଗ୍ରେସ ମଧ୍ୟ ମୁସଲମାନଙ୍କର ପ୍ରତିନିଧି କାରଣ କଂଗ୍ରେସର ସଭାପତି ମୁସଲମାନ ଓ କାର୍ଯ୍ୟକାରିଣୀ ସମିତିର ମୁସଲମାନମାନେ ସଭ୍ୟ ଅଛନ୍ତି । ଏପରିକି ରାଜା ମହାରାଜାମାନଙ୍କ ଦ୍ୱାରା ଶାସିତ ରାଜ୍ୟମାନଙ୍କର ଆଭ୍ୟନ୍ତରୀଣ ଘରୋଇ ବ୍ୟାପାରରେ କଂଗ୍ରେସ ହସ୍ତକ୍ଷେପ ନକରି ସେମାନଙ୍କର ସେବା କରିବ । କଂଗ୍ରେସ ମହିଳାମାନଙ୍କର ପ୍ରତିନିଧିତ୍ୱ କରେ; ଏହାର ସଭାପତି ପଦ ଡକ୍ଟର ଆନିବେଶାନ୍ତ ଓ ସରୋଜିନୀ ନାଇଡୁ ଅଳଙ୍କୃତ କରିଛନ୍ତି । ଯେହେତୁ ସେ କଂଗ୍ରେସର ଏକମାତ୍ର ପ୍ରତିନିଧି, ସେହେତୁ ସମଗ୍ର ଭାରତର ମଧ୍ୟ ସେ ଏକମାତ୍ର ପ୍ରତିନିଧି ।

ଗାନ୍ଧୀଜୀଙ୍କର ଭାଷଣର ଗତିପଥ କେଉଁ ଆଡକୁ ମୁହାଁଇଛି, ତାହା ଆମ୍ବେଦକର ଠିକ୍ ଭାବରେ ବୁଝିପାରିଥିଲେ । ଆମ୍ବେଦକର ଫେଡେରାଲ ଷ୍ଟ୍ରକଚର କମିଟିରେ ସେଦିନ ଭାଷଣ ଦେଇ କେତେ ଗୁଡ଼ିଏ ଯୁକ୍ତି ଓ ତଥ୍ୟ ଅବତାରଣ କଲେ ଯାହା କେବଳ ସଂସ୍କାର ଧର୍ମୀ ନଥିଲା, ଥିଲା ମଧ୍ୟ ବୈପ୍ଲବିକ । ଏବଂ ଗାନ୍ଧୀଜୀ ଦାବି କରୁଥିବା ଏକମାତ୍ର ପ୍ରତିନିଧିତ୍ୱକୁ ଅନ୍ୟ ପ୍ରତିନିଧିମାନେ ଗ୍ରହଣୀୟ ନୁହେ ବୋଲି ପରୋକ୍ଷ ମତ ଦେଲେ ।

ପ୍ରତିନିଧିମାନଙ୍କ ମନରେ ଉଠୁଥିବା ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ବିଶେଷ କରି ବିଶେଷ ପ୍ରତିନିଧିତ୍ୱ ସମ୍ପର୍କରେ ଗାନ୍ଧୀଜୀ ଭାଷଣ ଦେଇ କହିଲେ, ''କଂଗ୍ରେସ ହିନ୍ଦୁ-ମୁସଲମାନ-ଶିଖ୍ ମଧ୍ୟରେ ବିଶେଷ ସୁବିଧା ପାଇବା ସମ୍ପର୍କରେ ବୁଝାମଣା କରିବାକୁ ପ୍ରସ୍ତୁତ । ଏଥିପାଇଁ ଯଥାଯଥ ଐତିହାସିକ କାରଣ ରହିଛି କିନ୍ତୁ ଅନ୍ୟ କୌଣସି ରୂପରେ ଏହାକୁ ପ୍ରସାରଣ କରାଯାଇପାରିବ ନାହିଁ । ବିଶେଷ ସୁବିଧା ସମ୍ପର୍କରେ ତାଲିକା ମୁଁ ଶୁଣିଲି । ଅସ୍ପୃଶ୍ୟମାନଙ୍କ ସମ୍ପର୍କରେ, ଡକ୍ଟର ଆମ୍ବେଦକର କ'ଣ କହୁଛନ୍ତି ତାହା ମୁଁ ଏଯାଏଁ ଠିକ୍ ଧରି ପାରିଲି ନାହିଁ । କିନ୍ତୁ ଏହା ନିଶ୍ଚିତ ଯେ ଡକ୍ଟର ଆମ୍ବେଦକର ଅସ୍ପୃଶ୍ୟମାନଙ୍କର ସ୍ୱାର୍ଥ ପାଇଁ ପ୍ରତିନିଧିତ୍ୱ କରିବେ ଯାହା କଂଗ୍ରେସ ଗ୍ରହଣ କରିବ ନାହିଁ । ଭାରତର ଗୋଟିଏ ପ୍ରାନ୍ତରୁ ଅନ୍ୟ ଯେ କୌଣସି ପ୍ରାନ୍ତ ପର୍ଯ୍ୟନ୍ତ ଅନ୍ୟ ଲୋକମାନଙ୍କ

ପରି ଅସବର୍ଣ୍ଣଙ୍କର ସ୍ୱାର୍ଥ ରକ୍ଷା ମଧ୍ୟ କଂଗ୍ରେସର ପ୍ରିୟ କାର୍ଯ୍ୟ । ତେଣୁ ମୁଁ ଖୁବ୍ ଗୁରୁତ୍ୱରସହ ବିଶେଷ ପ୍ରତିନିଧିତ୍ୱ ଦାବିକୁ ବିରୋଧ କରୁଛି ।

ସଂଖ୍ୟାଲଘୁ ସମ୍ପ୍ରଦାୟର ପ୍ରତିନିଧିତ୍ୱ ସମ୍ପର୍କରେ ଗାନ୍ଧି ମୁସଲମାନ ଓ ଶିଖ ପ୍ରତିନିଧିମାନଙ୍କ ସହିତ ଆଲୋଚନାରେ ସଫଳ ନହେବାରୁ ସଂଖ୍ୟାଲଘୁ କମିଟିକୁ ଭାଙ୍ଗିଦେବାକୁ ମତ ଦେଲେ ଓ ଯୋଗ ଦେଇଥିବା ପ୍ରତିନିଧିଙ୍କ ସମ୍ପର୍କରେ ସେମାନଙ୍କର ପ୍ରତିନିଧିତ୍ୱ ନେଇ ସନ୍ଦେହ ପ୍ରକାଶ କଲେ ।

ଆମ୍ବେଦକର ଏହାର ବିରୋଧ କରିବା ସହିତ ଗାନ୍ଧିଜୀଙ୍କର ପକ୍ଷପାତିତା, ସଂଖ୍ୟାଲଘୁ ସମ୍ପ୍ରଦାୟର ସମସ୍ୟା ସମାଧାନ ନ କରିବାର ବାଛବିଚାର, ପ୍ରତିନିଧିମାନଙ୍କ ପ୍ରତି ଅସୌଜନ୍ୟ ବ୍ୟବହାର ଓ ଅପମାନସୂଚକ ମନ୍ତବ୍ୟ - ଏହି ସବୁ ଗୁଣଯୋଗୁ ଚତୁରତାର ସହ ସମସ୍ୟା ସମାଧାନ କରିବାକୁ ସାହାଯ୍ୟ କରିବାରେ ସେ ବିଫଳହେଲେ ବୋଲି ମତ ଦେଲେ ।

ସେତେବେଳେ ସର୍ବଭାରତୀୟ ଦଳିତ ବର୍ଗ ସମ୍ମିଳନୀ ଗୋରେଗାଓଁ ଠାରେ ରାଏ ବାହାଦୁର ଏମ.ସି.ରାଜାଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇ ଆମ୍ବେଦକରଙ୍କ ଦାବିକୁ ଦୋହରାଇବା ସହିତ ତାଙ୍କୁ ଭାରତର ସମସ୍ତ ଦଳିତ ଶ୍ରେଣୀ ସମର୍ଥନ କରୁଛନ୍ତି ଓ ସେହିଁ ତାଙ୍କର ପ୍ରତିନିଧି ବୋଲି ଘୋଷଣା କରି ତାରବାର୍ତ୍ତା ମାନ ପଠାଇଲେ । ଠିକ୍ ସେହି ସମୟରେ ଭାରତର ଦଳିତ ବର୍ଗର ଲୋକେ ନାସିକ ଓ ଗୁରୁଭାୟୁର ଠାରେ ମନ୍ଦିର ପ୍ରବେଶ ଆନ୍ଦୋଳନ ଆରମ୍ଭ କରି ରକ୍ଷଣଶୀଳ ହିନ୍ଦୁମାନଙ୍କର ଅସବର୍ଣ୍ଣଙ୍କ ପ୍ରତି ଦୃଷ୍ଟିକୋଣର ମୁଖା ଖୋଲିଦେଲେ ।

୧୯୩୧ ଅକ୍ଟୋବର ୩୧ ତାରିଖରେ ବ୍ରିଟେନରେ ନିର୍ବାଚନ ହେଲା ଓ ଏଥିରେ ଜାତଦଳ ସରକାରକୁ ଆସିଲେ । ନଭେମ୍ବର ୫ ତାରିଖ ଦିନ ଭାରତୀୟ ପ୍ରତିନିଧିମାନଙ୍କୁ ମହାମହିମ ବ୍ରିଟିଶ ସମ୍ରାଟ ସ୍ୱାଗତ କରିବା ପାଇଁ ଡାକିଲେ ଯେଉଁଠାରେ ଗାନ୍ଧି ଓ ଆମ୍ବେଦକର ଉଭୟ ଉପସ୍ଥିତ ଥିଲେ । ଆମ୍ବେଦକର ଭାରତରେ ଦଳିତ ବର୍ଗଙ୍କର ଅବସ୍ଥା ସମ୍ପର୍କରେ ଦୋହରାଇଲେ । ଯେତେବେଳେ ଯେଉଁ ସୁବିଧା ସେ ଲାଭ କଲେ, ସେତେବେଳେ ଗାନ୍ଧିଙ୍କ ବିରୁଦ୍ଧରେ କହିବାରୁ ଆମ୍ବେଦକର ବିରତ ହେଲେ ନାହିଁ ।

ଲଣ୍ଡନଠାରେ ଆମ୍ବେଦକର ଅତି ନଗ୍ନ ଓ କଠୋର ଭାବରେ ଦଳିତ ବର୍ଗ ସମ୍ପର୍କରେ ସୂଚନା ଦେବା ସହିତ ବିଶେଷ ପ୍ରତିନିଧିତ୍ୱ ଦେବାପାଇଁ ଦାବିକୁ

ଦୋହରାଇଲେ କାରଣ ଭାରତରେ ତାଙ୍କର ଲୋକମାନେ ରାଜନୈତିକ ଓ ସାମାଜିକ ଉଭୟ ଦାସତ୍ୱର ଶିକାର ଥିଲେ । ଭାରତର ଲୋକେ ମାତ୍ର ୧୫୦ ବର୍ଷର ରାଜନୈତିକ ଦାସତ୍ୱ ମଧ୍ୟରେ ସଢୁଥିବାବେଳେ ଦଳିତ ବର୍ଗ ହଜାର ହଜାର ବର୍ଷ ଧରି ନିର୍ଯ୍ୟାତିତ ଓ ନିଷ୍ପେଷିତ ହେବାଦ୍ୱାରା ସେମାନଙ୍କର ଘୃଣା ସ୍ୱତଃ ପ୍ରକାଶ ପାଇବା କଥା ।

ହିନ୍ଦୁ ସମାଜ ବ୍ୟବସ୍ଥାକୁ ସୁଧାରି ଗଣତନ୍ତ୍ରକୁ ସମାନତା ଭିତ୍ତିରେ ପ୍ରତିଷ୍ଠା କରିବା ଥିଲା ଆମ୍ବେଦକରଙ୍କର ଲକ୍ଷ୍ୟ । ଯଦି ସେ ଗାନ୍ଧୀଜୀଙ୍କୁ ସମର୍ଥନ କରିଥାନ୍ତେ, ତେବେ ଯାହା ସେ ତାଙ୍କ ଲୋକମାନଙ୍କ ପାଇଁ ହାସଲ କଲେ, ତାହା ପାଇ ପାରିନଥାନ୍ତେ ଏବଂ ଗାନ୍ଧିଙ୍କ ଠାରୁ ମିଳିଥାନ୍ତା କେବଳ ଆଶୀର୍ବାଦ । ତେଣୁ ଆମ୍ବେଦକର ବ୍ରିଟିଶଙ୍କ ପକ୍ଷରେ ରହି ଦଳିତ ବର୍ଗ ପାଇଁ ସଂଗ୍ରାମ କରୁଥିବା ନ୍ୟାୟ ହାସଲ କଲେ । ସଂଖ୍ୟାଲଘୁ କମିଟି ଦଳିତ ବର୍ଗ ପାଇଁ ସ୍ୱତନ୍ତ୍ର ନିର୍ବାଚନ ମଣ୍ଡଳୀ ଓ ସ୍ୱତନ୍ତ୍ର ପ୍ରତିନିଧିତ୍ୱ ଦେବାକୁ ନିଷ୍ପତ୍ତି କଲେ । ଗାନ୍ଧି ଏହାକୁ ଗ୍ରହଣ କରିବାକୁ ପ୍ରସ୍ତୁତ ହେଲେ ନାହିଁ ।''ଏହା ହିନ୍ଦୁ ଧର୍ମକୁ ଭାଗଭାଗ କରି ଦେବ । ଯେଉଁମାନେ ଅସ୍ପୃଶ୍ୟମାନଙ୍କର ରାଜନୈତିକ କ୍ଷମତା କଥା କହୁଛନ୍ତି, ସେମାନେ ଭାରତକୁ ଓ ଭାରତୀୟ ସମାଜ ବ୍ୟବସ୍ଥା କିପରି ଗଠନ କରାଯାଇଛି ତାହା ଜାଣିନାହାନ୍ତି । ତେଣୁ ମୁଁ ଏହାକୁ ଜୀବନପାତ କରି ବିରୋଧ କରିବି ।''

ଦ୍ୱିତୀୟ ଗୋଲ ଟେବୁଲ ବୈଠକର ଆଲୋଚନା ଗାନ୍ଧି ଓ ଆମ୍ବେଦକରଙ୍କ ମଧ୍ୟରେ ବିବାଦକୁ ଅଧିକ ଘନୀଭୂତ କରିଦେଲା ।

ବ୍ରିଟିଶ ପ୍ରଧାନମନ୍ତ୍ରୀ ତାଙ୍କର ସାମ୍ପ୍ରଦାୟିକ ସିଦ୍ଧାନ୍ତ ଘୋଷଣା କରିବା ଦ୍ୱାରା, ଭାରତକୁ ବିଭକ୍ତ କରି ଦେଇଥାନ୍ତି । ଏହା ମୁସଲମାନ, ଶିଖ, ଇଉରୋପିୟାନ ଓ ଖ୍ରୀଷ୍ଟିୟାନମାନଙ୍କୁ ପୃଥକ୍ ନିର୍ବାଚନମଣ୍ଡଳୀ ଦେଇଥାନ୍ତି । ଏହି ସିଦ୍ଧାନ୍ତର ଫଳ ସଂଖ୍ୟା ଗରିଷ୍ଠ ହିନ୍ଦୁମାନଙ୍କୁ ସଂଖ୍ୟା ଲଘିଷ୍ଠରେ ପରିଣତ କରାଯାଇଥାଏ ।

ଗାନ୍ଧୀଜୀଙ୍କୁ ଜାନୁୟାରୀ ୪ ତାରିଖ ଦିନ ବନ୍ଦି କରି ୟାରଭଡ଼ା ଜେଲରେ ରଖାଯାଇଥାଏ । ସେ ସେଠାରୁ ବ୍ରିଟିଶ କର୍ତ୍ତୃପକ୍ଷଙ୍କୁ ଜଣାଇ ଦେଇଥା'ନ୍ତି ଯେ ସେ ତାଙ୍କ ଜୀବନ ବିନିମୟରେ ଅସବର୍ଣ୍ଣ ହିନ୍ଦୁମାନଙ୍କୁ ସବର୍ଣ୍ଣ ହିନ୍ଦୁମାନଙ୍କଠାରୁ ପୃଥକ୍ କରିବାକୁ ବିରୋଧ କରିବେ ।

ଗାନ୍ଧି ଅସବର୍ଣ୍ଣମାନଙ୍କୁ ଦିଆଯାଇଥିବା ପ୍ରତିନିଧିତ୍ୱ ନେଇ ଜେଲରେ ଅନଶନ ଆରମ୍ଭ କଲେ । ଦେଶର ଜାତୀୟତା ଓ ଦେଶାତ୍ମବୋଧତାକୁ ଅକ୍ଷୁଣ୍ଣ ରଖିବା ପାଇଁ ଏକତା ଆବଶ୍ୟକ ଏବଂ ସଂହତି ଦୃଢ଼ହେବା ଦରକାର ଏହାଥିଲା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ।

ଗାନ୍ଧୀଜୀଙ୍କର ଜେଲ ମଧ୍ୟରେ ଅନଶନ ସମଗ୍ର ଦେଶରେ ହଇଚଇ ସୃଷ୍ଟି କଲା । ଖବରକାଗଜରେ ବିଭିନ୍ନ ବିବୃତିମାନ ପ୍ରକାଶ ପାଇଲା । ଗାନ୍ଧୀଜୀ ଓ ସରକାରଙ୍କୁ ବହୁ ନିବେଦନ କରାଗଲା । ମହାତ୍ମାଗାନ୍ଧିଙ୍କର ଜୀବନ ରକ୍ଷା କରିବା ଅର୍ଥ ସିଦ୍ଧାନ୍ତକୁ ବଦଳାଇବାକୁ ହେବ ଏବଂ ଯେଉଁ ସୁବିଧା ଦଳିତ ବର୍ଗ ପାଇଁ ଆମ୍ବେଦକର ଲାଭ କରିଛନ୍ତି, ତାହାକୁ ବଦଳେଇବା ପାଇଁ ଆମ୍ବେଦକରଙ୍କର ଅନୁମତି ଆବଶ୍ୟକ । ସମସ୍ତଙ୍କର ଆଖି ବର୍ତ୍ତମାନ ଆମ୍ବେଦକରଙ୍କ ଉପରେ ନିବଦ୍ଧ । ଯେଉଁମାନେ ଦିନେ ତାଙ୍କୁ ସ୍ୱୀକାର କରିବାକୁ ପ୍ରସ୍ତୁତ ନଥିଲେ, ସେମାନେ ବର୍ତ୍ତମାନ ଆମ୍ବେଦକରଙ୍କୁ ଦଳିତ ବର୍ଗର ପ୍ରତିନିଧି ବୋଲି ମୁକ୍ତ କଣ୍ଠରେ ସ୍ୱୀକାର କଲେ ।

ଗାନ୍ଧୀଜୀଙ୍କର ଆତ୍ମାହୂତି ଜନିତ ସମସ୍ୟାର ଗୁରୁତ୍ୱ ଓ ବ୍ୟାପକତା ସମ୍ପର୍କରେ ଆମ୍ବେଦକର ଅବଗତ ହୋଇଥିଲେ । ଗାନ୍ଧି ତାଙ୍କ ଉପରେ ସବୁଠାରୁ ଭୟଙ୍କର ବିପଦପୂର୍ଣ୍ଣ ଅସ୍ତ୍ର ପ୍ରୟୋଗ କଲେ । ୧୯୩୨ ସେପ୍ଟେମ୍ବର ୧୯ ତାରିଖଦିନ ହିନ୍ଦୁ ନେତାମାନଙ୍କର ସମ୍ମିଳନୀ ଭାରତୀୟ ବ୍ୟବସାୟୀ ସଭାଗୃହରେ ପଣ୍ଡିତ ମଦନମୋହନ ମାଲବ୍ୟଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେଲା । ସେଠାରେ ଡକ୍ଟର ସୋଲାଙ୍କି, ରାଜା, ଡକ୍ଟର ମୁଞ୍ଜେ, ମନୁ ସୁବେଦାର, ସାର୍ ଚିମନଲାଲ ହରିଲାଲ ଶିତଲବାଦ, ୱାଲଚାନ୍ଦ ହିରାଚାନ୍ଦ, ଡକ୍ଟର ରାଜେନ୍ଦ୍ର ପ୍ରସାଦ, କମଳା ନେହେରୁ, ସାପ୍ରୁ, ଚୈତରାମ ଗିଦ୍ୱାନୀ, ଠକ୍କର, ଡକ୍ଟର ଦେଶମୁଖ, ଡକ୍ଟର ସବରକର, ଆନି, କେ. ନାଗରାଜନ, ପି.ବାଲୁ ଓ ଅନ୍ୟମାନେ ଉପସ୍ଥିତ ଥିଲେ । ପ୍ରଥମେ ଆମ୍ବେଦକରଙ୍କୁ କହିବାକୁ ଅନୁରୋଧ କରିବାକୁ ଶେଠ ୱାଲଚାନ୍ଦହିରାଚାନ୍ଦ ମାଲବ୍ୟଙ୍କୁ କହିଲେ ।

ଆମ୍ବେଦକର ତାଙ୍କ ଭାଷଣରେ ଗାନ୍ଧି ଦଳିତ ବର୍ଗଙ୍କର ସ୍ୱାର୍ଥ ବିରୁଦ୍ଧରେ ଅନଶନ ଆରମ୍ଭ କରିବା ଦୁଃଖଦ ଘଟଣା ବୋଲି ବର୍ଣ୍ଣନା କରି ତାଙ୍କର ମୂଲ୍ୟବାନ ଜୀବନକୁ ରକ୍ଷା କରିବା ଉଚିତ ବୋଲି କହିଲେ । କିନ୍ତୁ ଏଥିପାଇଁ କୌଣସି ବିକଳ୍ପ ପ୍ରସ୍ତାବ ନାହିଁ ଏବଂ ଯଦି ଗାନ୍ଧି କୌଣସି ବିକଳ୍ପ ପ୍ରସ୍ତାବ ଦିଅନ୍ତି, ତେବେ ସେ

ତାହାକୁ ଆଲୋଚନା କରିବାକୁ ପ୍ରସ୍ତୁତ । ସେ ମଧ୍ୟ କହିଲେ, "ଗାନ୍ଧିଙ୍କର ଜୀବନକୁ ରକ୍ଷା କରିବାପାଇଁ ସେ ଏପରି କୌଣସି ପ୍ରସ୍ତାବରେ ରାଜି ହେବେ ନାହିଁ, ଯାହା ଦଳିତ ବର୍ଗଙ୍କର ସ୍ୱାର୍ଥର ପରିପନ୍ଥୀ ହେବ ।"

ତାଙ୍କର ଏ ବକ୍ତବ୍ୟରେ ନେତୃମଣ୍ଡଳୀ ହତଚକିତ ହେଲେ । ସାର୍ ଚୁନିଲାଲ ଗାନ୍ଧୀଜୀଙ୍କୁ ଯାରଭାଡା ଜେଲରେ ସାକ୍ଷାତ କରିବାକୁ ଗଲେ । ଦଳିତ ବର୍ଗଙ୍କୁ ସ୍ଥାନ ସଂରକ୍ଷଣ ଦେବାକୁ ଗାନ୍ଧୀ ବିରୋଧ କରୁନାହାନ୍ତି ବୋଲି ମତ ଦେବାରୁ ଆମ୍ବେଦକର କହିଲେ, "ମୋତେ ଘଟଣାର ଖଳନାୟକ ଭାବେ ଉପସ୍ଥାପିତ କରାଯାଉଛି । କିନ୍ତୁ ମୁଁ କହିରଖେ, ମୁଁ ମୋର ପବିତ୍ର କର୍ତ୍ତବ୍ୟରୁ ଆଦୌ ହଟିବି ନାହିଁ ତଥା ମୋ ଲୋକମାନଙ୍କର ନ୍ୟାୟ ସଙ୍ଗତ ଓ ବୈଧ ସ୍ୱାର୍ଥରୁ ହଟିବି ନାହିଁ ଯଦି ମତେ ନିକଟତମ ବତୀଖୁଣ୍ଟରେ ଫାଶି ଦିଆଯାଏ । ଆପଣମାନେ ବରଂ ଗାନ୍ଧୀଙ୍କୁ ତାଙ୍କର ଅନଶନ ଆଉ ସପ୍ତାହେ ଘୁଞ୍ଚାଇ ଦେବାକୁ କୁହନ୍ତୁ ଏବଂ ସମସ୍ୟାର ସମାଧାନ ପାଇଁ ଚେଷ୍ଟା କରନ୍ତୁ ।"

ସମ୍ମିଳନୀକୁ ବନ୍ଦ ରଖି ହିନ୍ଦୁ ନେତାମାନେ ବିରଳାଭବନକୁ ପ୍ରତ୍ୟାବର୍ତ୍ତନ କଲେ ଓ ସେଠାରେ ସାର୍ ତେଜ ବାହାଦୂର ସାପ୍ରୁ ଏକ ନୂଆ ଖସଡା ପ୍ରସ୍ତୁତ କଲେ । ଏହି ପ୍ରସ୍ତାବ ଅନୁସାରେ ପ୍ରତ୍ୟେକ ସିଟ୍ ପାଇଁ ଦଳିତ ବର୍ଗ ତିନିଜଣଙ୍କୁ ମନୋନୀତ କରିବେ ଏବଂ ତନ୍ମଧ୍ୟରୁ ଜଣକୁ ସବର୍ଣ୍ଣ ହିନ୍ଦୁ ଓ ଦଳିତ ବର୍ଗ ଯୁଗ୍ମ ନିର୍ବାଚନ ପଦ୍ଧତିରେ ବାଛିବେ । ଆମ୍ବେଦକର ନିଜର ସହକର୍ମୀମାନଙ୍କ ସହିତ ଏ ବିଷୟରେ ଆଲୋଚନା କରି କହିବେ ବୋଲି ମତ ଦେଲେ । ଆମ୍ବେଦକର ସଂଧ୍ୟାବେଳକୁ ଏହି ପ୍ରସ୍ତାବରେ ରାଜି ହେଲେ କିନ୍ତୁ ଅଧିକ ପ୍ରତିନିଧିତ୍ୱ ଦାବି କଲେ । ସେପ୍ଟେମ୍ବର ୨୧ ତାରିଖ ସକାଳେ ଜୟକର, ସାପ୍ରୁ, ବିରଳା, ରାଜଗୋପାଳଚାରୀ ଓ ରାଜେନ୍ଦ୍ର ପ୍ରସାଦ ଗାନ୍ଧୀଜୀଙ୍କୁ ଭେଟି ଏହି ପ୍ରସ୍ତାବ ଦେବାରୁ ସେ ତାହାକୁ ବିଚାର କରିବାର ପ୍ରତିଶ୍ରୁତି ଦେଲେ । ଆମ୍ବେଦକରଙ୍କୁ ସେହି ରାତିରେ ପୁନା ଆସିବାକୁ ଅନୁରୋଧ କରାଗଲା ।

୨୨ ତାରିଖ ସକାଳେ ଗାନ୍ଧି ରାଜେନ୍ଦ୍ର ପ୍ରସାଦ ଓ ରାଜଗୋପାଳଚାରୀଙ୍କୁ କହିଲେ ଯେ ସଂରକ୍ଷିତ ସ୍ଥାନ ପାଇଁ ପ୍ରାଥମିକ ଓ ମାଧ୍ୟମିକ ସ୍ତରରେ ନିର୍ବାଚନ ହେବ ଏବଂ କେବଳ ଯୁଗ୍ମ ନିର୍ବାଚନ ପଦ୍ଧତିରେ ଏହାକୁ ସେ ଗ୍ରହଣ କରିପାରୁନାହାନ୍ତି । ସେଦିନ ସଂଧ୍ୟାରେ ଆମ୍ବେଦକର ଜୟକର, ବିରଳା, ଚୁନିଲାଲ ମେହେଟା ଓ ରାଜଗୋପାଳଚାରୀଙ୍କ ସହିତ ଗାନ୍ଧୀଜୀଙ୍କୁ ଜେଲରେ ସାକ୍ଷାତ କରିବାକୁ ଗଲେ ।

ଗାନ୍ଧୀଜୀ ଜେଲର ଲୁହା ଖଟିଆ ଉପରେ ପକାଯାଇଥିବା ଜେଲ ବିଛଣା ଉପରେ ଶୋଇଥିଲେ । ଅନ୍ୟ କେହି ସେପରି ଅବସ୍ଥାରେ ଗାନ୍ଧୀଜୀଙ୍କୁ ଦେଖିଥିଲେ ହୁଏତ ବିବ୍ରତ ହୋଇ ପଡିଥା'ନ୍ତା ବା ଆଖିରେ ଲୁହ ଢଳଢଳ ହୋଇଯାଇଥାନ୍ତା । କିନ୍ତୁ ଆମ୍ବେଦକରଙ୍କ ନିକଟରେ ଦଳିତ ବର୍ଗଙ୍କର ଅପମାନ, ନିଷ୍ପେଷିତ ଓ କଠୋର ଜୀବନ ଦେଖାଯାଉଥିଲା । ଗାନ୍ଧି ଓ ଆମ୍ବେଦକରଙ୍କର ସାକ୍ଷାତକୁ ବର୍ଣ୍ଣନା କରି ଧନଞ୍ଜୟ କିର ତାଙ୍କ ବହି "ଡକ୍ଟର ଆମ୍ବେଦକର ଲାଇଫ୍ ଆଣ୍ଡ ମିଶନ୍"ରେ ଲେଖିଛନ୍ତି, "The iconoclast and revolutionary was again facing the greatest man of action under the sun, the greatest magestic and magnetic personality of his age, the middle of the twentieth century moulded into a marvellous alchemy by the qualities of a Bania - a man of the world, a Barrister - a man of legal acumen and a Bairagi - a hermit. When two such minds come into collision, they are bound to spurt out fire, and to raise hurricanes. This was happening in India outside Yervada jail."

"ପରମ୍ପରା ବିଦ୍ରୋହୀ ଓ ବିପ୍ଳବୀ ପୁଣିଥରେ ସମ୍ମୁଖୀନ ହେଉଥିଲେ, ସେ ସମୟର ପୃଥିବୀର ସର୍ବଶ୍ରେଷ୍ଠ କର୍ମଯୋଗୀ, ଅତୀନ୍ଦ୍ରିୟ ଯୋଗୀ ଓ ପ୍ରଭାବଶାଳୀ ବ୍ୟକ୍ତିତ୍ୱଙ୍କର ଯିଏ କି ଥିଲେ ଜାତିରେ ଜଣେ ବଣିଆ, ପେଷାରେ ଓକିଲ ଓ ହୃଦୟରେ ଥିଲେ ଜଣେ ବୈରାଗୀ । ଯେତେବେଳେ ଏମିତି ଦୁଇଜଣଙ୍କ ମଧ୍ୟରେ ସଂଘର୍ଷ ହୁଏ ଅଗ୍ନିକଣା ବିଚ୍ଛୁରିତ ହୁଏ ଓ ଏକ ବୌଦ୍ଧିକ ଝଡ଼ ସୃଷ୍ଟି ହୁଏ । ଏହାହିଁ ଭାରତର ଏରଣ୍ଡାଡା ଜେଲ ବାହାରେ ଘଟୁଥିଲା ।"

ଗାନ୍ଧି ଦୁର୍ବଳ ଶରୀରରେ ବିଛଣାରେ ଶୋଇ ରହିଥାନ୍ତି । ଆଲୋଚନା ଆରମ୍ଭ ହେଲା, ସାପ୍ରୁ ଗାନ୍ଧିଜୀଙ୍କୁ ସବୁକଥା ବୁଝାଇ କହିଲେ । ମାଲବ୍ୟ ହିନ୍ଦୁ ମାନଙ୍କର ମତ ମଧ୍ୟ ଉପସ୍ଥାପିତ କଲେ । ଅତ୍ୟନ୍ତ କ୍ଷୀଣ ସ୍ୱରରେ ଆମ୍ବେଦକର କହିଲେ, "ମହାତ୍ମାଜୀ ! ଆପଣ ଆମ୍ଭମାନଙ୍କ ପ୍ରତି ଅତ୍ୟନ୍ତ ନିର୍ଦ୍ଦୟ ।"

"ନିର୍ଦ୍ଦୟ ହେବା ସବୁବେଳେ ମୋ ଉପରେ ହିଁ ନିର୍ଭର କରୁଛି । ମୁଁ ନାଚାର ।" ଗାନ୍ଧି ଉତ୍ତର ଦେଲେ ।

ତା'ପରେ ଆମ୍ବେଦକର ସମସ୍ତ ବିଷୟ ଗାନ୍ଧିଜୀଙ୍କୁ ବୁଝାଇ ଦେଲେ । ନମ୍ରଭାବରେ ତାଙ୍କର ମତ ଉପସ୍ଥାପନ ଗାନ୍ଧୀଜୀଙ୍କ ଉପରେ ପ୍ରଭାବ ପକାଇଲା । ସେ ଆମ୍ବେଦକରଙ୍କ ଦାବି ନ୍ୟାୟୋଚିତ ବୋଲି ଅନୁଭବ କଲେ । ଗାନ୍ଧି କହିଲେ, "ଆପଣଙ୍କ ଦାବି ପ୍ରତି ମୋର ପୂର୍ଣ୍ଣ ସହାନୁଭୂତି ରହିଛି । ଡକ୍ଟର, ମୁଁ ଆପଣଙ୍କ ସହିତ ଅଛି, ଯାହା ଆପଣ କହିଲେ । କିନ୍ତୁ ଆପଣ ମଧ କହିଲେ ଆପଣ ମୋ ଜୀବନରକ୍ଷାପାଇଁ ଆଗ୍ରହୀ ।"

"ହଁ, ମହାତ୍ମାଜୀ ! ଏହି ବିଶ୍ୱାସରେ ଯେ ଯଦି ଆପଣ ମୋ ଲୋକମାନଙ୍କ ସମସ୍ୟା ପ୍ରତି ନିଷ୍ଠାପର ଭାବେ କାର୍ଯ୍ୟ କରନ୍ତି, ତେବେ ଆପଣ ଆମମାନଙ୍କର ମଧ ନେତା ହେବେ ।"

"ଠିକ୍ ଅଛି । ଯଦି ଏହା ସତ୍ୟ, ତେବେ ତୁମକୁ ଏ ପରିସ୍ଥିତିର ଉଦ୍ଧାର ପାଇଁ କ'ଣ କରିବାକୁ ହେବ ତାହା ତୁମେ ଜାଣ । ତାହା କର ଓ ମୋ ଜୀବନ ରକ୍ଷା କର । ମୁଁ ଜାଣେ ତୁମର ଲୋକମାନଙ୍କୁ ଅଧିନିର୍ଣ୍ଣୟ ଦ୍ୱାରା ଯାହା ମିଳିଛି, ତାହା ତୁମେ ହରାଇବାକୁ ଚାହୁଁନାହଁ । ମୁଁ ତୁମର ପ୍ୟାନେଲ ବ୍ୟବସ୍ଥାକୁ ଗ୍ରହଣ କରୁଛି । କିନ୍ତୁ ଏଥିରେ ଗୋଟିଏ ଭୁଲ ରହିଛି । ତାହାକୁ ତମକୁ ଦୂର କରିବାକୁ ହେବ, ତୁମେ ଏହି ପ୍ୟାନେଲ ବ୍ୟବସ୍ଥାକୁ ସବୁ ସ୍ଥାନରେ ଲାଗୁକର । ତୁମେ ଜନ୍ମଗତ ଭାବେ ଅସ୍ପୃଶ୍ୟ ଏବଂ ମୁଁ ପୋଷ୍ୟ ଭାବରେ । ଆମ୍ଭେ ଏକ ଓ ଅଭିନ୍ନ ହେବା । ହିନ୍ଦୁ ସମ୍ପ୍ରଦାୟ ଖଣ୍ଡ ବିଖଣ୍ଡିତ ହେବାକୁ ରକ୍ଷା କରିବା ପାଇଁ ମୁଁ ମୋର ଜୀବନ ଦେବାକୁ ପ୍ରସ୍ତୁତ ।"

ଆମ୍ବେଦକର ଗାନ୍ଧୀଜୀଙ୍କର ପ୍ରସ୍ତାବ ଗ୍ରହଣ କଲେ । ଉଭୟଙ୍କ ମଧ୍ୟରେ ସାକ୍ଷାତ ଶେଷ ହେଲା ଓ କେନ୍ଦ୍ରମଣ୍ଡଳୀ ପାନେଲରେ କେତେ ସଭ୍ୟ ରହିବେ, ବିଧାନସଭା ପାଇଁ କେତେ ସ୍ଥାନ ରହିବ, ପ୍ରାଥମିକ ବ୍ୟବସ୍ଥାର ସମୟ ସୀମା କେତେ ହେବ, ସଂରକ୍ଷିତ ସ୍ଥାନର ସମୟ ସୀମା ଓ କାହାକୁ କେଉଁ ପଦବୀ ଦିଆଯିବ ସେ ସମ୍ପର୍କରେ ମଧ ଆଲୋଚନା କଲେ । ବହୁ ଆଲୋଚନା ପରେ ସ୍ଥିର କରାଗଲା ଯେ ପ୍ରାଦେଶିକ ଆସେମ୍ବ୍ଲି ୧୪୮ଟି ସ୍ଥାନ ଦଳିତ ବର୍ଗଙ୍କର ସଂରକ୍ଷିତ ସ୍ଥାନ ଭାବେ ରହିବ । ଏବଂ କେନ୍ଦ୍ରିୟ ଆସେମ୍ବ୍ଲିର ହିନ୍ଦୁମାନଙ୍କ ପାଇଁ ଥିବା ସ୍ଥାନରୁ ୧୦ ଭାଗ ଦଳିତମାନଙ୍କ ପାଇଁ ସଂରକ୍ଷିତ ରହିବ । ଗଣମତ ସଂଗ୍ରହର ସମୟସୀମା ଦଶବର୍ଷ ରହିବ । ଗାନ୍ଧିଜୀ ଏଥିପ୍ରତି ତାଙ୍କର ସମ୍ମତି ଜଣାଇଲେ ।

୨୪ ସେପ୍ଟେମ୍ବର ସଂଧ୍ୟା ୫ ଘଟିକା ସମୟରେ ଏହି ଚୁକ୍ତିନାମା ସ୍ୱାକ୍ଷରିତ ହେଲା ଏବଂ ଏହା ହିଁ ଐତିହାସିକ 'ପୁନାଚୁକ୍ତି' ନାମରେ ଜଣାଶୁଣା । ଦଳିତ ବର୍ଗମାନଙ୍କ ତରଫରୁ ଆମ୍ବେଦକର ଓ ସବର୍ଣ୍ଣ ହିନ୍ଦୁମାନଙ୍କର ପ୍ରତିନିଧିଭାବରେ ମଦନ ମୋହନ ମାଲବ୍ୟ ଦସ୍ତଖତ କଲେ । ଅନ୍ୟ ଯେଉଁମାନେ ଏହି ଚୁକ୍ତିରେ ସ୍ୱାକ୍ଷର କରିଥିଲେ ସେମାନଙ୍କ ମଧ ଜୟକର, ସାପ୍ରୁ, ଜି.ଡି.ବିରଳା, ରାଜଗୋପାଳାଚାରୀ, ଡକ୍ଟର ରାଜେନ୍ଦ୍ର ପ୍ରସାଦ, ରାଓ ବାହାଦୂର ଶ୍ରୀନିବାସନ, ଏମ୍.ସି.ରାଜା, ଦେବଦାସ ଗାନ୍ଧି, ବିଶ୍ୱାସ, ରାଇରୋଜ, ପି.ବାଲୁ, ଗାଭାଇ, ଠକ୍କର, ସୋଲାଙ୍କି, ସି.ଭି. ମେହେଟା, ବାଖଲେ ଏବଂ କାମାଥ ପ୍ରକୃତି ଦସ୍ତଖତ କଲେ ।

ରାଜଗୋପାଳଚାରୀ ଏତେ ଖୁସି ହେଲେ ଯେ ସେ ତାଙ୍କର ବ୍ୟକ୍ତିଗତ ଫାଉଣ୍ଟେନ୍ ପେନ୍‌କୁ ଆମ୍ବେଦକରଙ୍କ ସହିତ ବିନିମୟ କରି ଥିଲେ । ପୁନାଚୁକ୍ତି ସମଗ୍ର ଦେଶରେ ଏକ ଶିହରିତ ବାତାବରଣ ସୃଷ୍ଟି କଲା । ଏବଂ ଏହା ପ୍ରମାଣ କରିଦେଲା ଯେ ଯେଉଁ ଆମ୍ବେଦକରଙ୍କୁ କଂଗ୍ରେସ ନେତାମାନେ ଦଳିତ ବର୍ଗଙ୍କର ନେତା ବୋଲି ପୁନାଚୁକ୍ତି ପୂର୍ବରୁ ଗ୍ରହଣ କରୁନଥିଲେ, ସେ ବର୍ତ୍ତମାନ ସମଗ୍ର ଭାରତରେ ସର୍ବଜନ ବିଦିତ, ସର୍ବସମ୍ମତ ନେତାଭାବେ ଗ୍ରହଣୀୟ ହେଲେ ।

ପୁନାଚୁକ୍ତିକୁ ଆମ୍ବେଦକର ସ୍ୱୀକାର କରିଥିଲେ । ସେ ଏ ସମ୍ପର୍କରେ କହିଛନ୍ତି, "ମୋ ସମ୍ପର୍କରେ କହିବାକୁ ଗଲେ ଏହା ଅତିରଞ୍ଜିତ ହେବ ନାହିଁ ଯେ ଏ ପର୍ଯ୍ୟନ୍ତ ମୋ ପରି କେହି ବ୍ୟକ୍ତି ଏତେ ଅଧିକ ଅସୁବିଧାରେ ପଡିନାହିଁ । ମୋ ସମ୍ମୁଖରେ ସମାନ୍ତରାଳ ରାସ୍ତା ଥିଲା । ଗୋଟିଏ ପାଖରେ ଅଛୁଆଁ ଓ ସେମାନଙ୍କର ଅଧିକାରକୁ ସୁରକ୍ଷା କରିବା, ଯାହା ପ୍ରଧାନମନ୍ତ୍ରୀ ତାଙ୍କର ସାମ୍ପ୍ରଦାୟିକ ନିର୍ଣ୍ଣୟରୁ ଦେଇଥିଲେ ଏବଂ ଦ୍ୱିତୀୟ ରାସ୍ତା ଏହା ଥିଲା ଯେ ମାନବ ସମାଜର ଗୋଟିଏ ଅଂଶ ହୋଇଥିବା କାରଣରୁ ଗାନ୍ଧୀଜୀଙ୍କର ପ୍ରାଣରକ୍ଷା କରିବା । ମୁଁ ମାନବିକତାର ସ୍ୱରକୁ ଶୁଣିବାକୁ ପାଇଲି ଏବଂ ଯେପରି ଗାନ୍ଧୀଜୀ ସନ୍ତୁଷ୍ଟ ହେବେ, ସେହିପରିକା ସାମ୍ପ୍ରଦାୟିକ ନିର୍ଣ୍ଣୟରେ ପରିବର୍ତ୍ତନ କରି ତାଙ୍କର ପ୍ରାଣରକ୍ଷା କରାଇଲି ।"

ପୁନାଚୁକ୍ତି ଫଳରେ ନିଃସନ୍ଦେହ ଭାବରେ ଅସ୍ପୃଶ୍ୟମାନଙ୍କୁ ସାମ୍ପ୍ରଦାୟିକ ନିର୍ଣ୍ଣୟଠାରୁ କମ୍ ସୁବିଧା ମିଳିଲା କିନ୍ତୁ ଏହା ସହିତ ଭାରତ ଇତିହାସରେ ଅସ୍ପୃଶ୍ୟମାନଙ୍କୁ କେନ୍ଦ୍ର ଓ ପ୍ରାଦେଶିକ ବିଧାନ ସଭାରେ ନିଜର ପ୍ରତିନିଧି ପ୍ରେରଣ

କରିବାର ସୁଯୋଗ ମିଳିଲା । ସେମାନଙ୍କୁ ସରକାରୀ ଚାକିରୀରେ ସଂରକ୍ଷଣ ଓ ଶିକ୍ଷା କ୍ଷେତ୍ରରେ ସୁବିଧା ପ୍ରାପ୍ତ ହେଲା । ଗତକାଲିର ଅସ୍ପୃଶ୍ୟ, ଦାସ ଓ ଦଳିତ ବର୍ତ୍ତମାନ ଅନ୍ୟମାନଙ୍କ ପରି ଛିଡା ହୋଇ ନିଜର ଦୁଃଖ ଓ ଯାତନାର କଥା ନିଜେ କହିପାରିବେ । ଏହା ଥିଲା ଆମ୍ବେଦକରଙ୍କ ଆନ୍ଦୋଳନର ମହାନ୍ ବିଜୟ ।

ଏହି ପୁନାଚୁକ୍ତିନାମାକୁ ବ୍ରିଟିଶ ସରକାର ଗ୍ରହଣ କଲେ ଏବଂ ମ୍ୟାକଡୋଲାଡଙ୍କର ସାମ୍ପ୍ରଦାୟିକ ଅଧିନିର୍ଣ୍ଣୟ (communal award) ଖାରଜ ହୋଇଗଲା । ଗାନ୍ଧି ଏହାଦ୍ୱାରା ଆଶ୍ୱସ୍ତ ହେଲେ । ଏହି ପୁନାଚୁକ୍ତି ଯଦିଓ ସଂରକ୍ଷଣ ସ୍ଥାନ ସଂଖ୍ୟା ବୃଦ୍ଧି କଲା, ଏହା ଦ୍ୱୈତ ଭୋଟ ଦାନର ଅଧିକାର ନେଇଗଲା । ଦ୍ୱିତୀୟ ଭୋଟର ମୂଲ୍ୟ ଥିଲା ରାଜନୈତିକ ଅସ୍ତ୍ର । ସବର୍ଣ୍ଣ ହିନ୍ଦୁମାନଙ୍କର ଅସନ୍ତୁଷ୍ଟ ଓ ଦଳିତବର୍ଗଙ୍କର ଅସୁବିଧା ସତ୍ତ୍ୱେ ଏହି ଚୁକ୍ତିନାମାକୁ ଉଭୟ ପକ୍ଷରୁ ସ୍ୱୀକୃତି ଦିଆଗଲା ଏବଂ ଏହା ଭାରତ ସରକାର ଆଇନ୍ ୧୯୩୫ରେ ସନ୍ନିବିଷ୍ଟ କରାଗଲା ।

ସାଧାରଣ ନିର୍ବାଚନରେ ଦଳିତ ବର୍ଗ ପ୍ରାର୍ଥୀମାନଙ୍କର ପରାଜୟ ପୁନା ଚୁକ୍ତିର ଭୋଟ ବ୍ୟବସ୍ଥା ଯୋଗୁ ଘଟିଲା ବୋଲି ଆମ୍ବେଦକର ବିଚାର କଲେ । ସେପ୍ଟେମ୍ବର ୨୩ ତାରିଖ ୧୯୪୪ ମସିହାରେ ଦଳିତ ବର୍ଗ ମହାସଂଘ କାର୍ଯ୍ୟକାରୀ କମିଟିରେ ଆମ୍ବେଦକର ଗୋଟିଏ ନିର୍ଦ୍ଧାରଣ ରଖି ଦଳିତ ବର୍ଗମାନଙ୍କ ପାଇଁ ପୃଥକ୍ ନିର୍ବାଚନ କ୍ଷେତ୍ର ଦାବି କଲେ ଏବଂ ଏକ ସାକ୍ଷାତକାରରେ ସେ କହିଲେ, ‘‘ଏହି ପୁନା ଚୁକ୍ତି ରଦ୍ଦ ହେବା ଦରକାର । ଏହା ୬୦ ନିୟୁତ ଦଳିତ ମାନଙ୍କର ମତାଧିକାର ହରଣ କରିଛି । ଆନ୍ତର୍ଜାତିକ ଆଇନ ଅନୁସାରେ କୌଣସି ଚୁକ୍ତି ଶେଷ ଓ ଅତି ପବିତ୍ର ନୁହେ ।’’

ଆମ୍ବେଦକରଙ୍କ ଦୃଢ଼ ବିଶ୍ୱାସ ହୋଇଥିଲା ଯେ ୧୯୫୨ ସାଧାରଣ ନିର୍ବାଚନରେ ତାଙ୍କର ପରାଜୟ ଏହି ଯୁଗ୍ମ ନିର୍ବାଚନ ମଣ୍ଡଳୀ ହେତୁ ହେଲା । ରାଜ୍ୟସଭାରେ ୧୯୫୩ ସେପ୍ଟେମ୍ବର ୨୨ ତାରିଖରେ ଭାଷଣ ଦେଇ ସେ କହିଥିଲେ ଯେ ସେ ପୁନାଚୁକ୍ତିକୁ ଗ୍ରହଣ କରିଥିଲେ କାରଣ ତାଠାରୁ ଅଧିକ କିଛି ମିଳିବ ବୋଲି ସେ ଆଶା କରୁନଥିଲେ । ସେ ପୁନରାୟ କହିଥିଲେ, ‘‘ଏହି ପୁନାଚୁକ୍ତି ଦଳିତ ବର୍ଗଙ୍କର ଆତ୍ମନିର୍ଭରଶୀଳ ଆନ୍ଦୋଳନର ମୃତ୍ୟୁଧକ୍କା (death-blow) ତାଙ୍କ ମତରେ କଂଗ୍ରେସ ଦଳିତ ମାନଙ୍କର ପ୍ରତିନିଧିତ୍ୱ କରୁନାହିଁ ଏବଂ

ତାଙ୍କ ଦ୍ୱାରା ସ୍ୱାକ୍ଷରିତ ହୋଇଥିବା ପୁନାଚୁକ୍ତିକୁ ନିରାକରଣ କରି ଗାନ୍ଧିଜୀ ଦାବି କରୁଥିବା ମ୍ୟାକଡୋନାଲଡଙ୍କର ସାମ୍ପ୍ରଦାୟିକ ଅଧିନିର୍ଣ୍ଣୟ (communal award) କୁ ଗ୍ରହଣ କରି ପୃଥକ୍ ନିର୍ବାଚନ ମଣ୍ଡଳୀ ସ୍ଥିର ହେବା ଉଚିତ ।

ଏହି ସମସ୍ତ ଆଲୋଚନା ମୂଳରେ ଲକ୍ଷ୍ୟ ଥିଲା ଯେ ଦଳିତମାନଙ୍କୁ ସଂଖ୍ୟାଲଘୁ ଭାବେ ଘୋଷଣା କରାଯାଉ । ଆମ୍ବେଦକର ସଂଖ୍ୟାଲଘୁମାନେ ମୌଳିକ ଅଧିକାର ପାଆନ୍ତୁ ଏଥିପାଇଁ ଚେଷ୍ଟା କରିଥିଲେ । ସାମ୍ବିଧାନିକ ସଭା (Constituent Assembly) ରେ ଭାଷଣ ଦେବା ବେଳେ ସେ କହିଥିଲେ, "ସଂଖ୍ୟାଲଘୁମାନେ ବିସ୍ଫୋରକ ଶକ୍ତି; ଯଦି ସେମାନେ ଉଦ୍‌ଗୀରଣ କରନ୍ତି, ତେବେ ସମଗ୍ର ରାଷ୍ଟ୍ରର ଗଠନ ପ୍ରଣାଳୀକୁ ଖଣ୍ଡବିଖଣ୍ଡିତ କରିପକାଇବେ । ତେଣୁ ସମାଧାନ ଏପରି ହେବା ଉଚିତ ଯେ ସଂଖ୍ୟା ଗରିଷ୍ଠ ଓ ସଂଖ୍ୟା ଲଘୁମାନେ ସମୟ ଆସିଲେ ଏକତ୍ର ହୋଇଯିବେ ।"

ପୁନାଚୁକ୍ତି ପରେ ଦଳିତମାନଙ୍କର ସମସ୍ୟା ଅଗ୍ରଭାଗକୁ ଆସିଥିଲା । କଂଗ୍ରେସ ଅସ୍ପୃଶ୍ୟତା ନିବାରଣ କାର୍ଯ୍ୟକ୍ରମ ହାତକୁ ନେଇଥିଲା । ୧୯୩୨ ମସିହାରେ ଗାନ୍ଧିଜୀ ସର୍ବଭାରତୀୟ ଅସ୍ପୃଶ୍ୟତା ନିବାରଣ ସଂଘ(All India Anti-Untouchability League) ଗଠନ କଲେ । ଏହି ସଂଘର ବିଭିନ୍ନ କମିଟି ମାନଙ୍କର ସଂଖ୍ୟାଧିକ ଦଳିତ ସଭ୍ୟ ରହିବାକୁ ଆମ୍ବେଦକର ପ୍ରସ୍ତାବ ସହିତ ଏହାର କାର୍ଯ୍ୟ ପରିସର ଅର୍ଥନୈତିକ, ଶିକ୍ଷା ଓ ସାମାଜିକ ଅବସ୍ଥାର ଉନ୍ନତି ପ୍ରତି ଉଦ୍ଦିଷ୍ଟ ହେବାଉପରେ ଗୁରୁତ୍ୱ ଦେଇଥିଲେ । ଅସ୍ପୃଶ୍ୟତା ନିବାରଣ ସଂଘର ନାମକରଣ 'ହରିଜନ ସେବକ ସଂଘ' ରଖାଗଲା ଏବଂ ଗାନ୍ଧିଜୀ 'ହରିଜନ' ନାମରେ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କଲେ । ଏହି ନୂତନ ନାମକରଣ କରିବାର ଉଦ୍ଦେଶ୍ୟ ହେଲା ଯେ ଦଳିତମାନଙ୍କୁ ସମ୍ମାନ ଦେବା ଏବଂ ସବର୍ଣ୍ଣ ହିନ୍ଦୁମାନେ ଦଳିତମାନଙ୍କୁ ସମ୍ମାନ ପ୍ରଦାନ କରି ସାମାଜିକ ସୁଧାର ପରି ଗୁରୁତ୍ୱ ଦେବା ।

ହରିଜନ ସେବକ ସଂଘର ଦୃଷ୍ଟିଭଙ୍ଗୀ ଥିଲା ମାନବିକ କାର୍ଯ୍ୟ । କିନ୍ତୁ ଦଳିତ ବର୍ଗର ନେତା ଓ କର୍ମୀମାନଙ୍କୁ ଏହାର କାର୍ଯ୍ୟକାରୀ କମିଟିରେ ନରଖିବା ଦ୍ୱାରା ଏହା ପ୍ରତି ସନ୍ଦେହ ହେଲା । ସେମାନଙ୍କ ମତରେ ଏହି ସଂଘ ହରିଜନଙ୍କ ମଧ୍ୟରେ କଂଗ୍ରେସର କାର୍ଯ୍ୟ କଲା, କୌଣସି ସ୍ୱାଧୀନ ବା ପୃଥକ୍ ରାସ୍ତା ଗ୍ରହଣ କଲାନାହିଁ ଏବଂ ଆମ୍ବେଦକରଙ୍କର ରାଜନୈତିକ କାର୍ଯ୍ୟକୁ ସବୁ ସ୍ତରରେ ବିରୋଧ କଲା । ଏ ସମ୍ପର୍କରେ

ଗାନ୍ଧିଜୀଙ୍କର ମତ ଥିଲା ଭିନ୍ନ । ସବର୍ଣ୍ଣ ହିନ୍ଦୁମାନେ ଅସ୍ପୃଶ୍ୟତା ରୂପକ ଯେଉଁ ପାପକୁ ଦୀର୍ଘଦିନ ଧରି ପାଳନ କରୁଛନ୍ତି ଏହା ସେମାନଙ୍କ ପାଇଁ ପ୍ରାୟଶ୍ଚିତ୍ତ । ଆମ୍ବେଦକର କହିଥିଲେ ଯେ ଅସ୍ପୃଶ୍ୟମାନେ ହିନ୍ଦୁମାନଙ୍କ ମଧ୍ୟରେ ଗୋଟିଏ ଉପଗୋଷ୍ଠୀ ନୁହନ୍ତି ବରଂ ଭାରତୀୟ ଜାତୀୟ ଜୀବନରେ ଏକ ପୃଥକ୍ ମୌଳିକ ଗୋଷ୍ଠୀ ଯେପରି ମୁସଲମାନମାନେ ।

ସାପ୍ତାହିକୀ ହରିଜନର ପ୍ରଥମ ସଂଖ୍ୟାକୁ ନିଜର ବାର୍ତ୍ତା ଜଣାଇ ଆମ୍ବେଦକର କହିଥିଲେ, "ମୁଁ କୌଣସି ବାର୍ତ୍ତା ଦେଇ ପାରିବି ନାହିଁ । ଜାତିପ୍ରଥାର ଉପଜାତ (by product) ଭାବେ ଅସବର୍ଣ୍ଣ । ଯେ ପର୍ଯ୍ୟନ୍ତ ଜାତିପ୍ରଥା ରହିଛି, ସେ ପର୍ଯ୍ୟନ୍ତ ଅଜାତି ବା ଅସବର୍ଣ୍ଣ ରହିବ । ଏବଂ କୌଣସି ଅବସ୍ଥା ଅସ୍ପୃଶ୍ୟ ଜାତିକୁ ନଷ୍ଟ କରିପାରିବ ନାହିଁ ଯେ ପର୍ଯ୍ୟନ୍ତ ଜାତି ବ୍ୟବସ୍ଥା ସମ୍ପୂର୍ଣ୍ଣ ବିଲୋପ ନପାଇଛି ।" ଏହାର ଉତ୍ତରରେ ଗାନ୍ଧିଜୀ କହିଥିଲେ, "ଅସ୍ପୃଶ୍ୟତା ଜାତିପ୍ରଥାର ଉପଜାତ ନୁହେ ବରଂ ଉଚ୍ଚ ଓ ନୀଚ ମଧ୍ୟରେ ପ୍ରଭେଦ (distinction) ଯାହା ହିନ୍ଦୁଧର୍ମ ମଧ୍ୟକୁ ପ୍ରବେଶ କରିଛି ଏବଂ ହିନ୍ଦୁ ଧର୍ମକୁ କ୍ରମଶଃ କ୍ଷୟ କରିବାରେ ଲାଗିଛି । ଅସ୍ପୃଶ୍ୟମାନଙ୍କ ଉପରେ ଆକ୍ରମଣ ହେଉଛି ଏହି ଉଚ୍ଚ ଓ ନୀଚ ମାନଙ୍କ ମଧ୍ୟରେ ଆକ୍ରମଣ । ବର୍ତ୍ତମାନର ଏହି ଯୁଗ୍ମ ସଂଗ୍ରାମ ଅସ୍ପୃଶ୍ୟତା ନିବାରଣ ପାଇଁ ହିଁ ଉଦ୍ଦିଷ୍ଟ ।"

ଗାନ୍ଧିଜୀ ଚାହୁଁଥିଲେ ହିନ୍ଦୁ ସମାଜ ବ୍ୟବସ୍ଥାରେ ଏହି ଅସ୍ପୃଶ୍ୟତା ସମୂଳେ ଲୋପ ପାଉ ଏବଂ ଚତୁର୍ବର୍ଣ୍ଣ ବ୍ୟବସ୍ଥା କାର୍ଯ୍ୟକାରୀ ହେଉ ।

୧୯୨୭ ମସିହାର ମାହଦ ଘଟଣା ଦଳିତମାନଙ୍କର ସାମାଜିକ ଓ ଧାର୍ମିକ ସଂଗ୍ରାମକୁ ଭିନ୍ନମୋଡ ଦେଇଥିଲା । ଏହା ପରଠାରୁ ପ୍ରତ୍ୟେକ ଦଳିତ ବର୍ଗ ସମ୍ମେଳନ ମାନଙ୍କରେ ହିନ୍ଦୁଧର୍ମକୁ ତ୍ୟାଗ କରିବାକୁ ପ୍ରସ୍ତାବମାନ ଗ୍ରହଣ କରାଯାଇଥିଲା । ୧୯୨୯ ମେ ୨୯ ତାରିଖ ଜଲଗାଓଁଠାରେ ହୋଇଥିବା ଅଧିବେଶନରେ ଗୋଟିଏ ପ୍ରସ୍ତାବ ଗୃହୀତ ହେଲା ଯେଉଁଥିରେ ଦଳିତମାନଙ୍କୁ ହିନ୍ଦୁଧର୍ମ ତ୍ୟାଗ କରି ଯେକୌଣସି ଧର୍ମ ଗ୍ରହଣ କରିବାକୁ କୁହାଗଲା । ୧୯୩୫ ଅକ୍ଟୋବର ୧୩ ତାରିଖ ଦିନ ନାସିକ ଜିଲ୍ଲାର ଯେଓଲା ଠାରେ ଆମ୍ବେଦକର ଘୋଷଣା କଲେ ଯେ ସେ ହିନ୍ଦୁ ଭାବରେ ମରିବେ ନାହିଁ । ଜଣେ ସ୍ୱାଧୀନ ନାଗରିକ ଭାବରେ ବଞ୍ଚିବା ପାଇଁ ସେ ଏକ ପୃଥକ୍ ସମ୍ପ୍ରଦାୟରେ ଯୋଗଦେବାପାଇଁ ତାଙ୍କ ମନରେ ବିଚାର କରୁଥିଲେ ।

ହିନ୍ଦୁଧର୍ମକୁ ତ୍ୟାଗ କରିବା ସମ୍ପର୍କରେ ଆମ୍ବେଦକରଙ୍କର ବିଚାର ସମ୍ପର୍କରେ ବିଭିନ୍ନ ମହଲର ପ୍ରତିକ୍ରିୟା ଥିଲା ଭିନ୍ନ ଭିନ୍ନ । ଗାନ୍ଧୀଜୀ ଏହାକୁ ଲକ୍ଷ୍ୟ କରି କହିଥିଲେ, "ଧର୍ମ ବଦଳ ବେପାରର କଥା ନୁହେ ।" ୧୯୩୬ ଜାନୁଆରୀ ୧୨ ଓ ୧୩ ତାରିଖ ମହାରାଷ୍ଟ୍ର ଦଳିତ ଯୁବ ସମ୍ମେଳନରେ ଆମ୍ବେଦକର ତାଙ୍କ ଲୋକମାନଙ୍କୁ ସତର୍କ କରାଇ କହିଥିଲେ ଯେ ଧର୍ମାନ୍ତରୀକରଣ ହୋଇଗଲେ ଯେ ସେମାନେ ସମସ୍ତେ ଦୁର୍ଦ୍ଦଶାରୁ ମୁକ୍ତି ପାଇବେ ଓ ସାମ୍ୟ ସମାନତା ଭୋଗ କରିବେ ଏହି ବିଚାର ରଖିବା ସମ୍ପୂର୍ଣ୍ଣ ଭ୍ରମାତ୍ମକ । ସେମାନଙ୍କ ସାମ୍ୟ ଓ ସ୍ୱାଧୀନତା ପାଇଁ ସଂଗ୍ରାମ କରିବାକୁ ହେବ । ସେ କହିଲେ, "ମୁସଲମାନ ବା ଖ୍ରୀଷ୍ଟିୟାନ ସମ୍ପ୍ରଦାୟକୁ ଧର୍ମାନ୍ତରୀକରଣ ଦଳିତମାନଙ୍କୁ ବିଜାତୀୟ କରିଦେବ । କିନ୍ତୁ ତାଙ୍କର ଦୃଢ଼ମତ ଥିଲା ଯେ ଅସ୍ପୃଶ୍ୟମାନଙ୍କର ସୁଧାର ମଧ୍ୟ ହିନ୍ଦୁ ଧର୍ମ ମଧ୍ୟରେ ରହି ହୋଇପାରିବ ନାହିଁ ।

## ରାଜନୈତିକ କ୍ଷେତ୍ରରେ ପ୍ରବେଶ

ପୁନା ଚୁକ୍ତି ପରେ ସମଗ୍ର ଦେଶରେ ମନ୍ଦିର ପ୍ରବେଶ, ଏକାଠି ଭୋଜନ ଇତ୍ୟାଦି ଆନ୍ଦୋଳନ ବଢ଼ି ଚାଲିଲା । ବର୍ତ୍ତମାନ ଆମ୍ବେଦକର ନିଜର ସମସ୍ତ କାର୍ଯ୍ୟକୁ ଶାସନଗତ ଅଧିକାର ପାଇବା ପାଇଁ ଦୃଷ୍ଟି ରଖିଥିଲେ । ୧୯୩୨ ମସିହା ସେପ୍ଟେମ୍ବର ମାସ ୨୮ ତାରିଖରେ ମୁମ୍ବାଇରେ ବରୋଲି ଅଞ୍ଚଳରେ ଭାଷଣ ଦେବା ପ୍ରସଙ୍ଗରେ କହିଥିଲେ, "କେବଳ ମନ୍ଦିରରେ ପ୍ରବେଶ କଲେ ଆପଣ ମାନଙ୍କର ଉଦ୍ଧାର ହେବ ନାହିଁ । ଆମକୁ ଜୀବନର ସୁଖ ସୁବିଧା ପାଇଁ ରାଜନୈତିକ ଜୀବନର ଉପଯୋଗ ଜୀବନର ସୁଖସୁବିଧା ପାଇବା ପାଇଁ କରିବାକୁ ହେବ ।"

ତୃତୀୟ ଗୋଲ ଟେବୁଲ ବୈଠକରେ ଯୋଗଦେବା ପାଇଁ ଆମ୍ବେଦକର ୭ ନଭେମ୍ବର ୧୯୩୨ରେ ଇଂଲଣ୍ଡ ଅଭିମୁଖେ ଯାତ୍ରା କଲେ । ଏହି ବୈଠକରେ ଆଲୋଚନା ହୋଇ ସ୍ଥିର ହୋଇଥିଲା ଯେ କେତେକ ନୂତନ ସଂସ୍କାର ସହିତ ୧୯୩୫ ଇଣ୍ଡିଆ ଆକ୍ଟ ପ୍ରବର୍ତ୍ତନ ହେବ । ଏହି ନୂଆ ଆଇନରେ ପ୍ରସ୍ତାବ ହୋଇଥିଲା କେନ୍ଦ୍ରରେଏକ ସଙ୍ଘୀୟ ସରକାର ରହିବ ଏବଂ ପ୍ରାଦେଶିକ ସରକାର ଗୁଡିକୁ ଅଧିକ ସ୍ୱତନ୍ତ୍ରତା ଦିଆଯିବ ।  ପ୍ରଥମଥର ପାଇଁ ପ୍ରତ୍ୟକ୍ଷଭାବେ ଦେଶୀୟ ରାଜ୍ୟ ଗୁଡିକୁ ସମ୍ପୃକ୍ତ କରାଯାଇଥିଲା, କାରଣ ସଙ୍ଘୀୟ କେନ୍ଦ୍ରୀୟ ସରକାରରେ ବ୍ରିଟିଶ ଶାସିତ ପ୍ରଦେଶ ଗୁଡିକ ସହିତ ଦେଶୀୟ ରାଜ୍ୟ ଗୁଡିକୁ ମଧ୍ୟ ଅଂଶୀଦାର

କରାଯାଇଥିଲା । ଯଦିଓ ନୀତିଗତ ଭାବେ ଭାରତ ଗୋଟିଏ ଦେଶ ଓ ଭାରତୀୟମାନେ ଗୋଟିଏ ଜାତି ବୋଲି ଗ୍ରହଣ କରାଯାଇଥିଲା କିନ୍ତୁ ଇଂରେଜ ମାନଙ୍କର ଅସଲ ଉଦ୍ଦେଶ୍ୟ ଥିଲା ଜାତୀୟତାବାଦୀ ନେତାମାନଙ୍କର ସାମ୍ରାଜ୍ୟବାଦ ବିରୋଧୀ ନୀତି ଓ କାର୍ଯ୍ୟକ୍ରମ ବିରୁଦ୍ଧରେ ଦେଶୀୟ ରାଜଶକ୍ତିର ପ୍ରତିରୋଧାତ୍ମକ ବିନିଯୋଗ । ତେଣୁ କେନ୍ଦ୍ରର ଦ୍ୱିକକ୍ଷ ବିଶିଷ୍ଟ ସହଯୋଗୀ ବିଧାନ-ପରିଷଦରେ ଦେଶୀୟ ରାଜ୍ୟଗୁଡିକୁ ଗୁରୁତ୍ୱ ଦିଆଯାଇଥିଲା ।

ତୃତୀୟ ଗୋଲ ଟେବୁଲ ବୈଠକ ୧୯୩୨ ଡିସେମ୍ବର ୨୪ ତାରିଖରେ ଶେଷ ହୋଇଯାଇଥିଲା ଓ ଆମ୍ବେଦକର ଭାରତକୁ ଫେରି ଆସିଥିଲେ । ସେ ପୁନା ଫେରିଆସି ବିଧାନସଭା ଅଧିବେଶନରେ ଅଂଶଗ୍ରହଣ କଲେ । ୧୯୩୩ ମସିହାରେ ଶ୍ରୀରଙ୍ଗା ଆୟର ମାନ୍ଦ୍ରାଜ ବିଧାନସଭାରେ ଦଳିତମାନଙ୍କର ମନ୍ଦିର ପ୍ରବେଶ ବାଧାକୁ ଦୂର କରିବା ପାଇଁ ଏକ ବିଲ୍ ପେଶ୍ କଲେ । ଡକ୍ଟର ଆମ୍ବେଦକର ଏହି ବିଲ୍‌କୁ ବିରୋଧ କଲେ । ସେ କହିଥିଲେ, ''ମନ୍ଦିର ପ୍ରବେଶ ପରି କ୍ଷୁଦ୍ର କ୍ଷୁଦ୍ର କଥାରେ ଦଳିତମାନେ ନିଜର ଶକ୍ତି ଅପଚୟ କରିବା ଯଥାର୍ଥ ନୁହେ । ଉଚ୍ଚଶିକ୍ଷା, ଉଚ୍ଚ ଚାକିରି ଏବଂ ନିଜର ଜୀବନ ଯାତ୍ରା ପାଇଁ ସମ୍ମାନନୀୟ ମାର୍ଗ ଗ୍ରହଣ କଲେ ଦଳିତମାନଙ୍କର ଉନ୍ନତି ହେବ ଏବଂ ତା' ସହିତ ଛୁଆଁ ଲୋକମାନଙ୍କର ଅସ୍ପୃଶ୍ୟ ସମାଜକୁ ଦେଖିବାର ଦୃଷ୍ଟିକୋଣରେ ପରିବର୍ତ୍ତନ ଆସିବ । ମନ୍ଦିରର ଦ୍ୱାର ଖୋଲିବ କି ନଖୋଲିବ, ଏହି ବ୍ୟକ୍ତିଗତ କଥାର ମହତ୍ତ୍ୱ ମାନବିକତା ମୂଲ୍ୟ ଉପରେ ନିର୍ଭର କରେ । ତାହାକୁ ଯଦି ବିଶ୍ୱାସ କରୁଛ, ତେବେ ମନ୍ଦିର ଉନ୍ମୁକ୍ତ କରି ମାନବତା ପ୍ରଦର୍ଶନ କର ।''

ଆମ୍ବେଦକରଙ୍କ ପତ୍ରର ଉତ୍ତର ଦେବାକୁ ଯାଇ ଗାନ୍ଧୀଜୀ କହିଥିଲେ, ''ଉଚ୍ଚ ଓ ନୀଚ ଭାବନା ସମ୍ପର୍କରେ ହିନ୍ଦୁ ଧର୍ମରେ କୌଣସି ସ୍ଥାନ ନାହିଁ । ତଥାପି ବର୍ଣ୍ଣାଶ୍ରମ ହିନ୍ଦୁ ଧର୍ମର ଆତ୍ମା ହୋଇଥିବା ଦୃଷ୍ଟିରୁ, ଏହାକୁ ନଷ୍ଟ କରିବାକୁ ଚାହେଁ ନାହିଁ ।''

ମନ୍ଦିର ପ୍ରବେଶ ବିଲ୍ ସମ୍ପର୍କରେ ଡକ୍ଟର ଆମ୍ବେଦକର ଭାଷଣ ଦେଇ କହିଥିଲେ, ''ଦେବପୂଜା ଠାରୁ ଅତ୍ୟନ୍ତ ଜରୁରୀ ହେଉଛି ପେଟ ପୂଜା ପାଇଁ ଖାଦ୍ୟ ଲୋଡା । ଅନ୍ୟ ଲୋକମାନେ ନିଜ ନିଜର ସ୍ୱାର୍ଥ ସାଧନ କରୁଛନ୍ତି, ଏଇଥିପାଇଁ ଆମର ଏପରି ଦୁର୍ଦ୍ଦଶା । ଭଗବାନଙ୍କ ଉପରେ ଭରସା ରଖି ବଞ୍ଚିବାକୁ ଶିଖ ନାହିଁ, ନିଜର ବାହୁବଳ ଉପରେ ଆସ୍ଥା ରଖି କାମ କରିବାକୁ ଶିଖ ।''

୧୯୩୪ ମସିହାରେ ସରକାର କଂଗ୍ରେସ ଉପରେ ଲଗାଇଥିବା ପ୍ରତିବନ୍ଧକୁ ଉଠାଇଦେଲେ । ଗାନ୍ଧିଜୀ ପୁନାଚୁକ୍ତି ଉପରେ ନିଜର ବିଶ୍ୱାସ ବ୍ୟକ୍ତ କରିଥିଲେ । ୧୯୩୩ ମାର୍ଚ୍ଚ ମାସ ମଧ ଭାଗରେ ଭାରତୀୟ ସମ୍ବିଧାନ ସଂଶୋଧନ ସମ୍ପର୍କିତ ସଂଯୁକ୍ତ ସମିତିର ବିବରଣୀ ପ୍ରକାଶ ପାଇଲା । ବାବା ସାହେବ ଏହି ବିବରଣୀ ଉପରେ ନିଜର ପ୍ରତିକ୍ରିୟା ପ୍ରକାଶ କଲେ । ସେ କହିଲେ, ''ଏହି ବିବରଣୀ ଅତ୍ୟନ୍ତ ପ୍ରତିକୂଳ । ଏହା ଭାରତର ପ୍ରଗତିରେ ବହୁତ ହୁଲସ୍ଥୁଲ କରିଦେବ । ବିଧାନସଭା ସହିତ ବିଧାନ ପରିଷଦ ରଖିବାର କୌଣସି ଆବଶ୍ୟକତା ନାହିଁ ।

## ପତ୍ନୀଶୋକ

ଦଳିତମାନଙ୍କର ନ୍ୟାୟ ପାଇଁ ସଂଗ୍ରାମରେ ବ୍ୟସ୍ତ ଥାଇ ସେ ନିଜର ପତ୍ନୀ ରମାବାଈଙ୍କର ସ୍ୱାସ୍ଥ୍ୟପ୍ରତି ଦୃଷ୍ଟି ଦେଇ ପାରିନଥିଲେ । ସେଥିପାଇଁ ତାଙ୍କୁ ଆଦୌ ଫୁରୁସତ ମିଳୁନଥିଲା । ୨୭ ମେ ୧୯୩୫ ମସିହାରେ ଅତିବ ଦୁଃଖଦ ଘଟଣା ଘଟିଲା । ତାଙ୍କର ପତ୍ନୀ ରମାବାଈଙ୍କର ଦାଦାର ଠାରେ ବିୟୋଗ ହେଲା । ପିଲାବୟସରୁ ରମାବାଈ ଘର ଚଲାଇବାର ଦାୟିତ୍ୱ ନିଜ ଉପରକୁ ନେଇଥିଲେ । ସେ ନିଜର ଘରକୁ ଅତ୍ୟନ୍ତ ଧୈର୍ଯ୍ୟ ଓ କୁଶଳତାର ସହ ଚଳାଇବାକୁ ସମର୍ଥ ହୋଇଥିଲେ । ଯାହା ଫଳରେ ଡକ୍ଟର ଆମ୍ବେଦକର ସଫଳତାର ପାହାଚ ପରେ ପାହାଚ ଚଢ଼ିବାକୁ ସମର୍ଥ ହୋଇଥିଲେ । ସେ ତାଙ୍କ ପାଇଁ ସମସ୍ତ ପ୍ରକାର ତ୍ୟାଗ ସବୁବେଳେ କରିବାକୁ ପ୍ରସ୍ତୁତ ଥିଲେ । ଆଗନ୍ତୁକ ଅତିଥିମାନଙ୍କୁ ସମ୍ମାନ ପ୍ରଦର୍ଶନ, ଆତିଥ୍ୟ ପ୍ରଦାନ ଇତ୍ୟାଦି ପ୍ରତି ତାଙ୍କର ଶ୍ରଦ୍ଧା ଥିଲା ଅତୁଟ । ପୁନା ଚୁକ୍ତି ସମୟରେ କେତେକ ଅସମାଜିକ ଗୁଣ୍ଡାମାନଙ୍କର ଉପଦ୍ରବକୁ ସେ ସାହସର ସହିତ ମୁକାବିଲା କରି ପାରିଥିଲେ । ସେ ଥିଲେ ସ୍ୱାଭିମାନୀ ।

ରମାବାଈଙ୍କ ମୃତ୍ୟୁ ବାବା ସାହବେଙ୍କୁ ତୀବ୍ର, ଅସହ୍ୟ ଆଘାତ ପ୍ରଦାନ କରିଥିଲା । ସେ କିଛିଦିନ ରାଜନୀତିରୁ ସନ୍ନ୍ୟାସ ନେବାକ ଇଚ୍ଛା କଲେ । ଏପରିକି ସନ୍ନ୍ୟାସୀଙ୍କ ପରି ମୁଣ୍ଡ ଲଣ୍ଡା କରି, ଗୈରିକ ବସ୍ତ୍ର ପରିଧାନ କରି ଭ୍ରମଣ କଲେ ।

ରମାବାଈଙ୍କ ଶବ ଶୋଭାଯାତ୍ରାରେ ପ୍ରାୟ ଦଶହଜାର ଧନୀ-ଦରିଦ୍ର, ପୁରୁଷ-ନାରୀ,ଆବାଳ ବୃଦ୍ଧ ବନିତା ନିଜ ନିଜର ସଂବେଦନା ପ୍ରକାଶ କରି ଯୋଗ ଦେଇଥିଲେ । ରମାବାଈଙ୍କ ଦେହାନ୍ତ ବାବାସାହେବଙ୍କ ଜୀବନର ଅତୀବ ଦୁଃଖଦ ଘଟଣା ।

## ସ୍ୱାଧୀନ ଶ୍ରମିକ ଦଳ ଗଠନ

ଭାରତ ସରକାରଙ୍କ ୧୯୩୫ ଆଇନ ଅନୁଯାୟୀ ୧୯୩୭ ସାଧାରଣ ନିର୍ବାଚନ ହେବା ପାଇଁ ସ୍ଥିର ହେଲା । ଭାରତୀୟ ଜାତୀୟ କଂଗ୍ରେସ ସବୁଠାରୁ ବଡ ପାର୍ଟି ଭାବରେ ବିଭିନ୍ନ ରାଜ୍ୟରେ ଏହାର ସଭ୍ୟ ଥିଲେ । ଏହା ବ୍ୟତୀତ ଉଦାରବାଦୀ ଓ ମୁସଲିମଲିଗ୍ ଦଳ ଥିବାବେଳେ ଦଳିତମାନଙ୍କର କୌଣସି ରାଜନୈତିକ ଦଳ ନଥିଲା । ଏହିପରି ଘଡିସନ୍ଧି ମୁହୂର୍ତ୍ତରେ ଆମ୍ବେଦକର ନେତୃତ୍ୱ ନେଇ ୧୯୩୬ ଅଗଷ୍ଟ ମାସରେ ଭାରତୀୟ ଶ୍ରମିକ ଦଳ ଗଠନ କଲେ ।

ପୁରୁଣା ବମ୍ବେ ପ୍ରେସିଡେନସିର ୧୫ଟି ଆସନରେ ଏହି ଦଳ ନିର୍ବାଚନ ଲଢ଼ିଲା ଏବଂ ୧୩ଟି ଆସନ ଅଧିକାର କଲା । ସାଧାରଣ ଆସନରୁ ମଧ୍ୟ ଦୁଇଟି ଆସନରେ ନିର୍ବାଚନରେ ଜିତିଲେ । ବମ୍ବେ ଆସନରୁ ଆମ୍ବେଦକର ପ୍ରତିଦ୍ୱନ୍ଦିତା କରି କଂଗ୍ରେସ ପ୍ରାର୍ଥୀ ପି.ବାଲୁଙ୍କୁ ହରାଇ ନିର୍ବାଚିତ ହେଲେ । ପ୍ରଥମେ ଆମ୍ବେଦକର କେବଳ ଦଳିତମାନଙ୍କୁ ନେଇ ଦଳ ଗଠନ କରିବାକୁ ଚାହିଁଥିଲେ ମାତ୍ର ସମୟକୁ ଚାହିଁ ଅନ୍ୟାନ୍ୟ ଶ୍ରେଣୀ ସହିତ ମିଶି ଦଳ ଗଠନ କରିବାକୁ ସ୍ଥିର କଲେ । ଏହି ଦଳର ନାମ ଶ୍ରମିକ ରଖିବାର ଉଦ୍ଦେଶ୍ୟ ହେଲା ଏହାର କାର୍ଯ୍ୟକ୍ରମ ଗୁଡିକ ଶ୍ରମିକ ଶ୍ରେଣୀର ମଙ୍ଗଳ ପାଇଁ ଉଦ୍ଦିଷ୍ଟ । 'ଶ୍ରମିକ' ଶବ୍ଦ ବ୍ୟବହାର କରିବାର ମୂଳ ଉଦ୍ଦେଶ୍ୟ ହେଲା ଶ୍ରମିକ ସହିତ ଦଳିତ ଶ୍ରେଣୀ ମଧ୍ୟ ଅନ୍ତର୍ଭୁକ୍ତ ।

୧୯୩୧ ମସିହାରେ କରାଚୀଠାରେ କଂଗ୍ରେସ ଅଧିବେଶନରେ ମୌଳିକ ଅଧିକାର ସମ୍ପର୍କରେ ଯେଉଁ ପ୍ରସ୍ତାବ ଗ୍ରହଣ କରାଯାଇଥିଲା, ଆମ୍ବେଦକର ସେହି ପ୍ରସ୍ତାବର ନୀତିନିୟମକୁ ବିଶ୍ଳେଷଣ କରି ନିଜର କାର୍ଯ୍ୟକ୍ରମ ସ୍ଥିର କରିଥିଲେ । ଏଥିରେ ସାମ୍ୟବାଦର ସୁଗନ୍ଧ ଥିଲା ଏବଂ ଲକ୍ଷ୍ୟ ଥିଲା ଶ୍ରମିକ ଶ୍ରେଣୀର ମଙ୍ଗଳ କାମନା କରିବା । ଏହି କାର୍ଯ୍ୟକ୍ରମ ନିର୍ଦ୍ଧାରଣ କରିବାର କାରଣ ହେଉଛି ଆମ୍ବେଦକର ବ୍ରିଟିଶ ସଂସଦୀୟ ଗଣତନ୍ତ୍ରରେ ବିଶ୍ୱାସ କରୁଥିଲେ ଓ ତାଙ୍କ ଦଳ ଦଳିତ ଶ୍ରେଣୀଠାରୁ ଅଧିକ କିଛି ହେବ ବୋଲି ସେ ଭାବୁଥିଲେ । ଏହି ସମୟରେ ସ୍ୱାଧୀନ ଶ୍ରମିକ ଦଳ ବିରୋଧି ଦଳରେ ବସିଲେ । ବମ୍ବେ ପରିଷଦରେ ଆମ୍ବେଦକରଙ୍କ ଭାଷଣ ଅତ୍ୟନ୍ତ ଚିନ୍ତାଶୀଳ ଓ ଭାବୋଦ୍ଦୀପକ ଥିଲା । ଏହା ଲୋକମାନଙ୍କର ପଥପ୍ରଦର୍ଶକ ହୋଇପାରିଥିଲା । କିନ୍ତୁ ଏହା ସବର୍ଣ୍ଣ ହିନ୍ଦୁମାନଙ୍କ ମଧ୍ୟରେ ମୂଳଭିତ୍ତି ସ୍ଥାପନ କରିବାକୁ ସକ୍ଷମ ହୋଇ ପାରିନଥିଲା ।

ଆମ୍ବେଦକର ବ୍ରାହ୍ମଣଦ୍ୱବାଦ ବିରୁଦ୍ଧରେ ସଂଗ୍ରାମ କରୁଥିଲେ, ତେଣୁ ସେ ଦଳିତ ଶ୍ରମିକମାନଙ୍କୁ ଶ୍ରମିକ ଆନ୍ଦୋଳନ୍ ମଧ୍ୟରେ ପୃଥକ୍ ଭାବରେ ଏକତ୍ରିତ କରିବାକୁ ଚାହୁଁଥିଲେ । ସେ ବିଧିବଦ୍ଧ ଭାବରେ ଏକ ରାଜନୈତିକ ଦଳ ଗଠନ କରିବାକୁ ଇଚ୍ଛା କରୁନଥିଲେ ।

୧୯୩୮ ମସିହାରେ ବମ୍ବେ ବିଧାନ ପରିଷଦରେ "ଦି ଇଣ୍ଡଷ୍ଟ୍ରିଆଲ୍ ରିଲେସନ ବିଲ୍" ଉପସ୍ଥାପନ କରାଗଲା । ଏଥିରେ ବ୍ୟବସ୍ଥା ଥିଲା ଶିଳ୍ପ ସମ୍ପର୍କ ବିବାଦକୁ ମଧ୍ୟସ୍ଥ କରିଆରେ ମିଳାମିଶା କରି ଆପୋଷ ସମାଧନ କରିବା । ଏଥିରେ ଥିବା ଧର୍ମଘଟ ସମ୍ପର୍କରେ ଆମ୍ବେଦକରଙ୍କର ମତ ହେଲା, "ଧର୍ମଘଟ ହେଉଛି ସ୍ୱାଧୀନତାର ଅନ୍ୟ ଏକ ରୂପ ଏବଂ ଶିଳ୍ପ ବିବାଦ ବିଲ୍ ଶ୍ରମିକମାନଙ୍କୁ ଦାସତ୍ୱ ଆଡକୁ ଟାଣି ନେଇଯିବ । ସେ ସେହି ବିଲ୍କୁ, "ଦି ଓ୍ୱାର୍କସ ସିଭିଲ ଲିବର୍ଟିଜ ସସପେନ୍ସ ଆକ୍ଟ" ବୋଲି ବର୍ଣ୍ଣନା କରିଥିଲେ । ସେ ଏହି ବିଲ୍କୁ "ବ୍ୟାଡ, ବ୍ଲଡି ଓ ବ୍ରୁଟାଲ" ବୋଲି ଆଖ୍ୟା ଦେଲେ । ସମସ୍ତ ବିରୋଧି ଦଳମାନେ ଏହାକୁ ବିରୋଧ କଲେ । ଏହି ବିଲ୍ ବିପକ୍ଷରେ ସମର୍ଥନ ହାସଲ କରିବା ପାଇଁ ୧୯୩୮ ନଭେମ୍ବର ୭ ତାରିଖ ଦିନ ୬୦ ଗୋଟି ଟ୍ରେଡ୍ ୟୁନିଅନ ମିଳିତ ଭାବେ ଡାକରା ଦେଲେ । କଂଗ୍ରେସ ଓ ସୋସିଆଲିଷ୍ଟମାନେ ଏହି ଧର୍ମଘଟକୁ ସମର୍ଥନ ଦେଲେ ନାହିଁ କାରଣ ସେମାନେ ଭାବିଲେ ଯେ ଏହି ଧର୍ମଘଟ ମାଧମରେ ଆମ୍ବେଦକର ନିଜ ଦଳକୁ ସୁଦୃଢ଼ କରିବାକୁ ଚାହୁଁଛନ୍ତି । କମ୍ୟୁନିଷ୍ଟ ଦଳ ମଧ୍ୟ ଧର୍ମଘଟରେ ସାମିଲ ହୋଇଥିଲେ ।

୧୯୩୯ ସେପ୍ଟେମ୍ବର ୧ ତାରିଖଠାରୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା । ଭାରତ ସରକାର ଭାରତକୁ ଏକ ଯୁଦ୍ଧକାରୀ ରାଷ୍ଟ୍ର ଭାବେ ଘୋଷଣା କଲେ । ଭାରତୀୟ ନେତା ମାନେ ଏହାକୁ ବିଭିନ୍ନ ଭାବରେ ଦେଖିବାକୁ ଲାଗିଲେ । ଆମ୍ବେଦକର ମତ ପୋଷଣ କରି କହିଲେ ଯେ ଭାରତ ବ୍ରିଟିଶ କମନ୍ୱେଲଥ ରାଷ୍ଟ୍ରମାନଙ୍କ ମଧ୍ୟରେ ରହିବା ଆବଶ୍ୟକ ଏବଂ ଏକ ସମାନ୍ତର ଭାଗୀଦାର ଭାବେ ରହିବାକୁ ଚେଷ୍ଟା କରିବା ଉଚିତ । ସେ ବ୍ରଟିଶ ସରକାରଙ୍କ ଗୋଲ ଟେବୁଲ ବୈଠକର ରାଜିନାମା ସମ୍ପର୍କରେ ମନେ ପକାଇ ଦେଇ କହିଥିଲେ ଯେ ଭାରତର ସୁରକ୍ଷା ଭାରତର ଦାୟିତ୍ୱ ହେବା ଉଚିଦ୍ । ସେପ୍ଟେମ୍ବର ୧୪ ତାରିଖ ଦିନ କଂଗ୍ରେସ ନେତୃବର୍ଗ ଭାରତ ସମ୍ପର୍କରେ ବ୍ରିଟିଶ ଆଭିମୁଖ୍ୟକୁ ପରିଷ୍କାର କରି କହିବାକୁ ଆହ୍ୱାନ କଲେ । କାରଣ ସେମାନେ ବିଚାରୁଥିଲେ ଯଦି ଏ ଯୁଦ୍ଧ ହୁଏ ଏସିଆ ଓ

ଆଫ୍ରିକାର ରାଷ୍ଟ୍ର ସମୂହରେ ଉପନିବେଶ ଶାସନକୁ କାଏମ ରଖିବାକୁ ଆଗ୍ରହୀ ପ୍ରାଚୀନ ସାମ୍ରାଜ୍ୟବାଦୀ ଶକ୍ତି ଏବଂ ଉପନିବେଶଗୁଡିକରେ ନିଜର ଭାଗ ଦାବି କରୁଥିବା ଫାସିବାଦୀ ନୂତନ ସାମ୍ରାଜ୍ୟବାଦୀଙ୍କ ମଧରେ; ତେବେ ଭାରତର ଏ ଯୁଦ୍ଧ ସହିତ କୌଣସି ସମ୍ପର୍କ ନାହିଁ । କିନ୍ତୁ ଯଦି ମିତ୍ରପକ୍ଷ ଫାସିବାଦୀଙ୍କ ବିରୁଦ୍ଧରେ ଯୁଦ୍ଧ କରିବାର ଆନ୍ତରିକ ସଦିଚ୍ଛା ଥାଏ ବିଶ୍ୱରେ ଗଣତନ୍ତ୍ରର ସୁରକ୍ଷା, ତେବେ ଭାରତ ତାହାର ସାଧ ମତେ ସମର୍ଥନ ପ୍ରଦାନ କରିବ । ଏଥିପାଇଁ ଅବଶ୍ୟ ମିତ୍ରପକ୍ଷ ଯାହା ପ୍ରଚାର କରୁଛନ୍ତି ତାହାର ବାସ୍ତବ ପ୍ରମାଣ ଦେବାକୁ ପଡିବ; ବିଶେଷଭାବେ, ବିଲାତ ଏହି ମୁହୂର୍ତ୍ତରେ ଭାରତକୁ ତାହାର ସାମ୍ରାଜ୍ୟବାଦୀ ଓ ଉପନିବେଶବାଦୀ ଶାସନରୁ ମୁକ୍ତିଦେଇ ଏବଂ ସ୍ୱାୟତ୍ତଶାସନ ପ୍ରବର୍ତ୍ତନ ନିମନ୍ତେ ଯୁକ୍ତିଯୁକ୍ତ ଅନୁପାତରେ ଭାରତୀୟ ମାନଙ୍କ ହାତରେ ଶାସନ କ୍ଷମତା ପ୍ରଦାନ କରିବାକ ବ୍ୟବସ୍ଥା କରୁ । କିନ୍ତୁ ବ୍ରିଟିଶ ସରକାର ଏହା ପ୍ରତି କିଛି ସୁବିଚାର କଲେ ନାହିଁ । ଭାରତରେ ଯୁଦ୍ଧକାଳୀନ ଅବସ୍ଥା ସୃଷ୍ଟି ହେଲା । ୧୯୩୫-ଭାରତ ଆଇନ୍‌ର କେନ୍ଦ୍ରୀୟ ଶାସନ ସଂକ୍ରାନ୍ତୀୟ ଅଂଶ କାର୍ଯ୍ୟକାରୀ ନହୋଇଥିବାର ସାମ୍ବିଧାନିକ ଦୃଷ୍ଟିରୁ ଏହି ବ୍ୟାପାରରେ ବଡଲାଟଙ୍କ ସିଦ୍ଧାନ୍ତ ଆଇନ ସମ୍ମତ ଓ ବୈଧ ହୋଇଥିଲା, କିନ୍ତୁ ଏହା ଆଦୌ ଭାରତୀୟ ଗଣଚେତନାକୁ ସ୍ପର୍ଶ କରିପାରିନଥିଲା । କେନ୍ଦ୍ରୀୟ ବିଧାନ ପରିଷଦ ଥିଲା, ପ୍ରଦେଶମାନଙ୍କରେ ଲୋକ ପ୍ରତିନିଧିମୂଳକ ସରକାର ଥିଲା । ଦେଶରେ ସୁଗଠିତ ଓ ସ୍ୱୀକୃତ ରାଜନୈତିକ ଦଳମାନ ଥିଲା । କିନ୍ତ ସରକାର କାହା ସହିତ ପରାମର୍ଶ କରିନଥିଲେ । ୧୯୩୯ ସେପ୍ଟେମ୍ବର ୧୪ରେ କଂଗ୍ରେସ ବିଭିନ୍ନ ପ୍ରାଦେଶିକ ଆସେମ୍ବ୍ଲି ମାନଙ୍କରେ ଏକ ଯୁଦ୍ଧକାଳୀନ ପ୍ରସ୍ତାବ ଉପସ୍ଥାପିତ କଲେ । ସେ ଘୋଷଣାରେ କୁହାଗଲା,

‘‘ଯଦି ଯୁଦ୍ଧର ଲକ୍ଷ୍ୟ ହୁଏ ସ୍ଥିତାବସ୍ଥାର ପ୍ରତିରକ୍ଷା; ଅର୍ଥାତ୍ ସାମ୍ରାଜ୍ୟବାଦୀଙ୍କ ଦଖଲ ସତ୍ତ୍ୱେ, ଉପନିବେଶ, ସ୍ୱାର୍ଥ ଏବଂ ସ୍ୱାଚ୍ଛନ୍ଦ୍ୟରକ୍ଷା, ତେବେ ଭାରତର ଏହା ସହିତ କିଛି ସମ୍ବନ୍ଧ ରହିବ ନାହିଁ । କିନ୍ତୁ ଯଦି ଏହାର ସାଧ ହୁଏ ଗଣତନ୍ତ୍ର ଓ ଗଣତନ୍ତ୍ର ଭିତ୍ତିରେ ବିଶ୍ୱର ବିନ୍ୟାସ କରଣ, ତେବେ ଭାରତ ଏଥିରେ ପ୍ରବଳଭାବେ ଆଗ୍ରହାନ୍ୱିତ ହେବ । .....ସ୍ୱାଧୀନ ଗଣତାନ୍ତ୍ରିକ ଭାରତ ବର୍ଷ ଆକ୍ରମଣ ବିରୁଦ୍ଧରେ ଓ ଅର୍ଥନୈତିକ ସହଯୋଗିତା ପାଇଁ ଯେକୌଣସି ସ୍ୱାଧୀନରାଷ୍ଟ୍ର ସହିତ ପାରସ୍ପରିକ ପ୍ରତିରକ୍ଷା ବିଷୟରେ ଆନନ୍ଦର ସହିତ ଯୋଗଦାନ କରିବ । କିନ୍ତୁ ଏହି ସହଯୋଗିତା ପାରସ୍ପରିକ ମତ ବିନିମୟ ଦ୍ୱାରା ସମାସ୍କନ୍ଧ ଭାବରେ ପ୍ରତିଷ୍ଠା କରାଯିବ ।’’

ଆମ୍ବେଦକର ବମ୍ବେ ସରକାରଙ୍କୁ ଦୋଷାରୋପ କଲେ ଯେ ଦେଶ ନାମରେ ଏହି ପ୍ରସ୍ତାବ ରଖାନଯାଇ କଂଗ୍ରେସ କାର୍ଯ୍ୟକାରିଣୀ କମିଟି ନାଁରେ ଏହାକୁ ଉପସ୍ଥାପିତ କରାଗଲା । ସେ କୌଣସି ରାଜନୈତିକ ଦଳର ମୂରବିପଣିଆକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହଁନ୍ତି ବୋଲି କହି ତାଙ୍କ ନିକଟରେ ଅସ୍ପୃଶ୍ୟମାନଙ୍କର ସ୍ୱାର୍ଥରକ୍ଷା ଦେଶର ସ୍ୱାର୍ଥଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ବୋଲି କହିଲେ ।

୧୯୩୯ ନଭେମ୍ବର ପ୍ରଥମ ସପ୍ତାହରେ କଂଗ୍ରେସ ସରକାର ଇସ୍ତଫା ପ୍ରଦାନ କଲେ । ଡିସେମ୍ବର ୨୨ ତାରିଖକୁ "Way of Deliverance" ରୂପେ ପାଳନ କରିବାକୁ ଜିନା ଆହ୍ୱାନ ଦେଲେ । ସେଥିରେ ଆମ୍ବେଦକର ମଧ୍ୟ ଯୋଗଦେଲେ ।

## ଶ୍ରମ ସଭ୍ୟ ଭାବରେ ଯୋଗଦାନ

ଅଗଷ୍ଟ ୧୯୪୦ ମସିହାରେ, ବ୍ରିଟିଶ ସରକାର ଯୁଦ୍ଧ ସରିବା Dominion Status ପରେ ଭାରତକୁ ଦେବାକୁ ଘୋଷଣା କଲେ । ଜୁଲାଇ ୧୯୪୧ରେ ବଡଲାଟ ତାଙ୍କର ମନ୍ତ୍ରୀ ପରିଷଦରେ ପାଞ୍ଚଜଣ ଭାରତୀୟଙ୍କୁ ସାମିଲ କଲେ । ସେ ମଧ୍ୟ ସରକାରଙ୍କୁ ଯୁଦ୍ଧ ସମ୍ପର୍କରେ ଉପଦେଶ ଦେବା ପାଇଁ ଗୋଟିଏ ଜାତୀୟ ପ୍ରତିରକ୍ଷା ପରିଷଦ ଗଠନ କଲେ । ଆମ୍ବେଦକର ସେହି ପ୍ରତିରକ୍ଷା ପରିଷଦ ମଧ୍ୟରେ ସ୍ଥାନ ପାଇଲେ ।

ଜୁଲାଇମାସ ୧୯୪୨ରେ ଭାରତର ବଡଲାଟ ତାଙ୍କ ମନ୍ତ୍ରୀପଦ ବିସ୍ତାର କରି ସେଥିରେ ଆମ୍ବେଦକରଙ୍କୁ ସ୍ଥାନ ଦେଲେ । ସେ ଶ୍ରମମନ୍ତ୍ରୀ ଭାବରେ ଯୋଗ ଦେଲେ । ଶ୍ରମ ସଭ୍ୟ ଭାବରେ ତାଙ୍କର ଯୋଗଦାନକୁ ସମସ୍ତେ ସ୍ୱାଗତ କଲେ କାରଣ ତାଙ୍କର ସାଧାରଣ ଜୀବନ ଆରମ୍ଭ ଠାରୁ ସେ ଶ୍ରମିକମାନଙ୍କ ମଙ୍ଗଳ ପାଇଁ କାର୍ଯ୍ୟ କରୁଥିଲେ । ତାଙ୍କର ଶ୍ରମସଭ୍ୟ ଭାବରେ କାର୍ଯ୍ୟଥିଲା ପ୍ରଶଂସନୀୟ । ଏହାକୁ ଲକ୍ଷ୍ୟ କରି ଶ୍ରୀ ଡିକେ. ବାଇସାନଟ୍ରି ଲେଖିଛନ୍ତି, "୧୯୪୨ ଜୁଲାଇ ୨୦ ତାରିଖରେ ଡକ୍ଟର ବି.ଆର. ଆମ୍ବେଦକର ବଡଲାଟଙ୍କର ମନ୍ତ୍ରୀ ପରିଷଦରେ ଶ୍ରମ ସଭ୍ୟ ହୋଇଥିଲେ ଏବଂ ୧୯୪୬ ଜୁନ୍‌ମାସରେ ସେହି ପଦବୀରୁ ଇସ୍ତଫା ପ୍ରଦାନ କଲେ । ସେ କେବଳ ମାତ୍ର ପ୍ରାୟ ଚାରିବର୍ଷ ଏହି ଅଫିସରେ ଥିଲେ । ଯଦିଓ ଏହି ସମୟ ଅତ୍ୟନ୍ତ ସ୍ୱଳ୍ପ, କିନ୍ତୁ କେତେଗୁଡିଏ ଶ୍ରମଆଇନ ପ୍ରଣୟନ କରି ସେ ଇତିହାସରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କଲେ । ଏହି ସମୟରେ ଶ୍ରମିକ ମାନଙ୍କର ସୁରକ୍ଷା ଓ ଆର୍ଥିକମାନ ଉନ୍ନତି ପାଇଁ ଆଇନ୍‌ମାନ ଅନୁସୃତ ହେଲା ଓ ଗ୍ରହଣୀୟ

ହେଲା । ବିଶେଷ କରି ଶାରୀରିକ ଶ୍ରମଭିତ୍ତିକ ଉଦ୍ୟୋଗ, ଫ୍ୟାକ୍ଟେରୀ ଓ ଖଣିମାନଙ୍କରେ ଏହା ଲାଗୁ ହେଲା । କିନ୍ତୁ ସେ ଶ୍ରମ ମଙ୍ଗଳ ଓ ସାମାଜିକ ବୀମା ପାଇଁ ବେଶି ମନେ ରହିବେ । ଏହାଥିଲା ଆନୁଷ୍ଠାନିକ ବିକାଶର ସମୟ ।''

ଯେଉଁ ନୂତନ ଦିଗ୍‌ବଳୟ ଡକ୍ଟର ଆମ୍ବେଦକର ଶ୍ରମ ମଙ୍ଗଳ ପାଇଁ ସୃଷ୍ଟି କଲେ, ତାହାକୁ ନିମ୍ନମତେ ତର୍ଜମା କରାଯାଇ ପାରେ ।

## ତ୍ରିପାକ୍ଷିକ ବୁଝାମଣା

ସେ ପର୍ଯ୍ୟନ୍ତ ଶ୍ରମିକ ଓ ମାଲିକଙ୍କ ମଧ୍ୟରେ ପରସ୍ପର ସ୍ୱାର୍ଥର ସୁରକ୍ଷା ପାଇଁ କୌଣସି ଯୁଗ୍ମ ଆଲୋଚନାର ଅବକାଶ ସୃଷ୍ଟି ହୋଇନଥିଲା । ସେ ଶ୍ରମବିଭାଗ ଦାୟିତ୍ୱରେ ରହିବା ସମୟରେ ହିଁ ତ୍ରିପାକ୍ଷିକ ଆଲୋଚନାକୁ ଅନୁଷ୍ଠାନର ରୂପ ଦେଲେ । ତ୍ରିପାକ୍ଷିକ ଶ୍ରମ ସମ୍ମିଳନୀରେ ଅଧ୍ୟକ୍ଷଭାବେ ଭାଷଣ ଦେଇ ସେ ୧୯୪୨ ଅଗଷ୍ଟ ୭ ତାରିଖ ଦିନ କହିଥିଲେ, ''ଶ୍ରମ ସମ୍ମିଳନୀର ଇତିହାସରେ ଏହା ପ୍ରଥମ ଯେ ମାଲିକ ଓ ଶ୍ରମିକ ମାନଙ୍କର ପ୍ରତିନିଧିମାନେ ସାମାନା ସାମନି ଯୁଗ୍ମ ସମ୍ମିଳନୀରେ ବସିପାରିଲେ ।''

ସେ ଶ୍ରମିକମାନଙ୍କର ସ୍ୱାର୍ଥକୁ ସୁରକ୍ଷା ଦେବା ପାଇଁ ୧୯୪୫ ଏପ୍ରିଲ ୯ ତାରିଖରେ ମୁଖ୍ୟ ଶ୍ରମ କମିଶନର ପଦବୀରେ ନିଯୁକ୍ତି ପ୍ରଦାନ କରିବା ସହିତ ଅନ୍ୟ କେତେକ ଶ୍ରମ ନିର୍ବାହୀ ପଦବୀରେ ମଧ୍ୟ ନିଯୁକ୍ତି ଦେଲେ । ଏହି ସଙ୍ଗଠନର କାର୍ଯ୍ୟ ହେଲା ଶ୍ରମ ବିବାଦର ସମାଧାନ  ନିବାରଣ କରିବା, ଶ୍ରମ ଆଇନ୍‌କୁ ଲାଗୁ  କରିବା ଏବଂ କେନ୍ଦ୍ରସ୍ତରରେ ଉଦ୍ୟୋଗମାନଙ୍କରେ ଶ୍ରମମଙ୍ଗଳକୁ ପ୍ରୋତ୍ସାହନ ଦେବା । ଏହାପରେ ରେଲଓ୍ୱେ ଲେବର କନସିଲେସନ ଅଫିସର(ରେଲଓ୍ୱେ) ଏବଂ ଶ୍ରମମଙ୍ଗଳ ଉପଦେଷ୍ଟା ସଙ୍ଗଠନ ଦୁଇଟିକୁ ମୁଖ୍ୟ ଶ୍ରମ କମିଶନରଙ୍କ ଅଫିସ ସହିତ ମିଶାଇ ଦେଲେ ଏବଂ ଏହି ମିଶ୍ରିତ ସଙ୍ଗଠନର ନାମ ହେଲା କେନ୍ଦ୍ରୀୟ ଶିଳ୍ପ ସମ୍ପର୍କ ବିଭାଗ ।

ଏହି ସମୟରେ ଜାତୀୟ ନିଯୁକ୍ତି ସେବା (National Employment Service) ଆରମ୍ଭ ହେଲା । ୧୯୪୫ ଜୁଲାଇ ମାସରେ ସାଧାରଣ ନିର୍ଦ୍ଦେଶକ, ପୁନର୍ବସତି ଓ ନିଯୁକ୍ତି ଅଫିସ (Director General of Resettlement and Employment) ସୃଷ୍ଟି ହେଲା । ୧୯୪୬ ଫେବୃୟାରୀ ମାସ ସୁଦ୍ଧା ଏହାର

୯ଟି ଆଞ୍ଚଳିକ ଅଫିସ ଓ ୭୧ଟି ସ୍ଥାନୀୟ ଅଫିସ ବସିବାର ସ୍ଥିର ହେଲା । ନିଯୋଜକ କାର୍ଯ୍ୟାଳୟ ଦାୟିତ୍ୱ ଯାହା ସୈନିକ ନିଯୁକ୍ତି ସଙ୍ଗଠନ ହାତରେ ଥିଲା, ତାହାକୁ ଏହି ନିଯୋଜକ କାର୍ଯ୍ୟାଳୟ (Employment Exchange)କୁ ସମର୍ପଣ କରାଗଲା । ସର୍ବଶେଷ ନିଯୋଜକ କାର୍ଯ୍ୟାଳୟ ୧୯୪୬ ମେ ୩୧ ତାରିଖରେ ବସାଯାଇଥିଲା ।

## ସାମାଜିକ ବୀମା

ସେ ପର୍ଯ୍ୟନ୍ତ କୌଣସି ବିଧିବଦ୍ଧ ସାମାଜିକ ବୀମା ଦେଶରେ ନଥିଲା । ଓ୍ୱାର୍କମେନ୍ କମ୍ପାନସେସନ୍ ଆଇନ ଓ ମାଟରନିଟି ବେନିଫିଟ ଆକ୍ଟରେ ଥିବା ବ୍ୟବସ୍ଥା ଥିଲା ସ୍ୱଳ୍ପ ଏବଂ ଖଣ୍ଡିତ । ୧୯୪୩ ସେପ୍ଟେମ୍ବର ମାସରେ ଡକ୍ଟର ଆମ୍ବେଦକରଙ୍କର ଅଧକ୍ଷତାରେ ଯେଉଁ ତ୍ରିପାକ୍ଷିକ ଶ୍ରମ ସମ୍ମେଳନ ଅନୁଷ୍ଠିତ ହେଲା, ତାହା ଗୋଟିଏ ସମିତି (Committee) ନିଯୁକ୍ତି କରିବାପାଇଁ ସୁପାରିଶ କଲା । ଏହି କମିଟିର କାର୍ଯ୍ୟ ହେଲା, "ଶ୍ରମିକମାନଙ୍କର ସାମାଜିକ ନିରାପତ୍ତା ପାଇଁ ବିଧିବଦ୍ଧ ଆଇନ୍ କରିବା ପାଇଁ ପର୍ଯ୍ୟାପ୍ତ ତଥ୍ୟ ସଂଗ୍ରହ ।" ପୁନଶ୍ଚ କୁହାଗଲା ଯେ ଏହି ସମିତି (Committee) ଯେଉଁ ତଥ୍ୟ ସଂଗ୍ରହ କରିବେ ତାହାକୁ ଅନ୍ୟ ଏକ ଯୁଗ୍ମ ସମିତି (Joint Committee) କୁ ପଠାଯିବ ଯାହା "ସାମାଜିକ ନିରପତ୍ତା ପାଇଁ ଯୋଜନା ପ୍ରସ୍ତୁତ" କରିବ । ୧୯୪୪ ଅକ୍ଟୋବର ମାସରେ ଆନ୍ତର୍ଜାତିକ ଶ୍ରମ ସଙ୍ଗଠନର ବିଶେଷଜ୍ଞମାନଙ୍କର ରିପୋର୍ଟ ଓ ପ୍ରଫେସର ଆଦରକରଙ୍କ ରିପୋର୍ଟ ଆଲୋଚନା କରାଗଲା । ଏହା ୧୯୪୫ ମାର୍ଚ୍ଚ ମାସରେ ସ୍ଥାୟୀ ଶ୍ରମ ସମିତି (Standing Labour Committee) ରେ ମଧ୍ୟ ଆଲୋଚିତ ହେଲା । ଏହି ମିଟିଂରେ ସହମତି ପ୍ରକାଶ ପାଇଲାଯେ ସରକାର ଏହି ପରିକଳ୍ପନାକୁ (Scheme) ପ୍ରସ୍ତୁତ କରିବାକୁ ଅଗ୍ରସର ହେବେ ।

୧୯୪୬ ନଭେମ୍ବର ମାସ ୬ ତାରିଖ ଦିନ ଏହି ପରିକଳ୍ପନାକୁ ନେଇ ଏକ ବିଧେୟକ (ବିଲ୍) କେନ୍ଦ୍ରୀୟ ପରିଷଦରେ ଉପସ୍ଥାପିତ କରାଗଲା । ୧୯୪୮ ଏପ୍ରିଲ ୧୯ ତାରିଖ ଦିନ ଏଥିରେ ବଭିନ୍ନ ମରିବର୍ତ୍ତନ କରି ଏହି ବିଧେୟକକୁ ଅନୁମୋଦନ ମିଳିଲା ।

୧୯୪୩ ସେପ୍ଟେମ୍ବର ୬ ଓ ୭ ତାରିଖରେ ତୃତୀୟ ଶ୍ରମ ସମ୍ମିଳନୀର ଦ୍ୱିତୀୟ ବୈଠକ (session) ନୂଆଦିଲ୍ଲୀଠାରେ ଅନୁଷ୍ଠିତ ହେଲା । ଶ୍ରମିକମାନଙ୍କ ପାଇଁ

ସାମାଜିକ ନିରାପତ୍ତା ଓ ମଜୁରୀ ସଂକ୍ରାନ୍ତୀୟ ନୀତି ନିର୍ଦ୍ଧାରଣ ଉପରେ ଆମ୍ବେଦକର ଗୁରୁତ୍ୱ ଦେଇ ଏହି ପ୍ରଶ୍ନ ଗୁଡିକର ଅନୁସନ୍ଧାନ ପାଇଁ ନିର୍ଦ୍ଦିଷ୍ଟ ସରକାରୀ କଳ (govt. machinary) ବସାଇବାକୁ ମତ ଦେଲେ ।

୧୯୪୪ ଏପ୍ରିଲ ମାସରେ ଆମ୍ବେଦକର ଏକ ସଂଶୋଧନ ବିଧେୟକ (Amendment Bill) ଦୀର୍ଘସ୍ଥାୟୀ କରାଖାନାମାନଙ୍କରେ କାମ କରୁଥିବା ଶିଳ୍ପ ଶ୍ରମିକମାନଙ୍କ ପାଇଁ ସବୈତନିକ ଛୁଟି ଉପସ୍ଥାପିତ କଲେ । ଶ୍ରମିକ ମାନଙ୍କର ସ୍ୱାର୍ଥର ସୁରକ୍ଷା ପାଇଁ ବାଧତାମୂଳକ ବୁଝାମଣା ବା ମଧ୍ୟସ୍ଥି ନିର୍ଣ୍ଣୟ ବ୍ୟବସ୍ଥା ସିଦ୍ଧାନ୍ତିକ ବୋଲି ମତ ଦେଇଥିଲେ । ସେ ଶ୍ରମିକ ନିୟମରେ କେତେକ ବିଧିବଦ୍ଧ ବ୍ୟବସ୍ଥା କରିବାକୁ ଆଶା କରିଥିଲେ ।

୧୯୪୫ ନଭେମ୍ବର ୨୭ ତାରିଖରେ ୭ମ ଭାରତୀୟ ଶ୍ରମ ସମ୍ମେଳନ ଅନୁଷ୍ଠିତ ହେଲା । ସେହି ସମ୍ମେଳନରେ ନିଜର ଅଧକ୍ଷ ଭାଷଣ ଦେଇ ଆମ୍ବେଦକର କହିଲେ ଯେ ଶ୍ରମିକମାନେ ପୁଞ୍ଜିପତି ମାଲିକମାନଙ୍କୁ ଶ୍ରମିକ ମାନଙ୍କର ମାନ ଉନ୍ନତି ନ କରିବା ସମ୍ପର୍କରେ ପ୍ରଶ୍ନ କରିବା ଉଚିତ । ଡିସେମ୍ବର ମାସର ପ୍ରଥମ ସପ୍ତାହରେ ଆଞ୍ଚଳିକ ଶ୍ରମ କମିଶନରଙ୍କ ସମ୍ମିଳନୀରେ ଉଦ୍‌ବୋଧନ ଦେଇ ଉଦ୍ୟୋଗିକ ଶାନ୍ତି ପ୍ରତିଷ୍ଠା କରିବା ପାଇଁ ମଧ୍ୟସ୍ଥତା କାର୍ଯ୍ୟାଳୟ, ଶ୍ରମ ଆଇନ୍‌ରେ ସଂଶୋଧନ ଓ ସର୍ବନିମ୍ନ ମଜୁରୀ ଆଇନ୍ ଆବଶ୍ୟକ ବୋଲି କହିଥିଲେ । କ୍ଷମତାର ପ୍ରୟୋଗରେ ଶ୍ରମଶାନ୍ତି ଅଣାଯାଇପାରେନା; କେବଳ ଆଇନ୍ ଦ୍ୱାରା ଏହା ସମ୍ଭବ । ଯଦି ଏହା ସାମାଜିକ ନ୍ୟାୟ ଉପରେ ଆଧାରିତ ହେବ, ତେବେ ଏହା ସମ୍ଭବ ହୋଇପାରିବ । ଏକ ତ୍ରିପାକ୍ଷିକ ବ୍ୟବସ୍ଥା ଏଥିପାଇଁ ପ୍ରୟୋଜନ । ଉଦ୍ୟୋଗିକ ଶାନ୍ତି ଆଣିବାକୁ ହେଲେ ଶ୍ରମିକ ନିର୍ଯ୍ୟାତନାକୁ ଦୂର କରିବା ପାଇଁ ଶ୍ରମ ମଙ୍ଗଳ ଓ ପ୍ରକୃତ ଶ୍ରମ ସମ୍ପର୍କ ବ୍ୟବସ୍ଥା ହିଁ ଦେଇପାରିବ ।

୧୯୪୬ ମେ ମାସ ଶେଷଭାଗରେ ଆମ୍ବେଦକର ବଡଲାଟଙ୍କର ମନ୍ତ୍ରୀ ପରିଷଦରୁ ଇସ୍ତଫା ପ୍ରଦାନ କଲେ କାରଣ ବ୍ରିଟିଶ ସରକାର ଏକ ନୂତନ ସରକାର ନିଯୁକ୍ତ କରିବାକୁ ପୋଷଣା କଲେ ।

ଶ୍ରମ ବିଭାଗ ଦାୟିତ୍ୱ ନେଇ କାର୍ଯ୍ୟ କରିବା ଡକ୍ଟର ଆମ୍ବେଦକରଙ୍କ ଜୀବନର ଏକ ଉଲ୍ଲେଖନୀୟ ଘଟଣା । ଶ୍ରମ ସମସ୍ୟା ସମ୍ପର୍କରେ ଆଲୋଚନା କରିବା ବେଳେ ଆମ୍ବେଦକର କେବଳ କଳ କାରଖାନା ଶ୍ରମିକମାନଙ୍କ କଥା ଚିନ୍ତା କରୁ ନଥିଲେ,

ବରଂ ତାଙ୍କର ଚିନ୍ତା କୃଷି ଶ୍ରମିକମାନଙ୍କ ନିମିତ୍ତ ଭବିଷ୍ଯ ଥିଲା । ଶିଳ୍ପ ଶ୍ରମିକ ବା କୃଷି ଶ୍ରମିକ ସେ ସମସ୍ତଙ୍କ ପ୍ରତି ଉପଯୁକ୍ତ ଶ୍ରମ ବ୍ୟବସ୍ଥା, ପ୍ରୋଭିଡେଣ୍ଟ ଫଣ୍ଡ, ସ୍ୱାସ୍ଥ୍ୟ ବୀମା ସହିତ ଅକର୍ମଣ୍ୟ ବୀମା ବ୍ୟବସ୍ଥା କରିବାକୁ ଗୁରୁତ୍ୱ ଦେଉଥିଲେ ।

୧୯୪୬ ମେ ୧୦ ତାରିଖ ଦିନ ''ଇଣ୍ଡିଆନ୍ ଫେଡେରେସନ୍ ଅଫ ଲେବର''ର ବମ୍ବେ ଶାଖାର ଶ୍ରମିକ ସଭ୍ୟମାନେ ଡକ୍ଟର ଆମ୍ବେଦକରଙ୍କ ସମ୍ମାନାର୍ଥେ ଏକ ଚା' ପାର୍ଟିର ଆୟୋଜନ କଲେ । ସ୍ୱାଗତ ସମ୍ବର୍ଦ୍ଧନାର ଉତ୍ତର ଦେଇ ବାବାସାହେବ ଦୁଃଖ ପ୍ରକାଶ କରି କହିଲେ ଯେ ଭାରତର ଶ୍ରମିକମାନଙ୍କ ମଧ୍ୟରେ ଏକତା ଅପେକ୍ଷା ବିଭେଦ ବେଶି । ସେ ପରିଶେଷରେ କହିଲେ ଶ୍ରମିକମାନଙ୍କୁ ଭାରତରେ ଶ୍ରମିକ ସରକାର ପ୍ରତିଷ୍ଠା କରିବା ପାଇଁ ସଂଘର୍ଷ କରିବା ଦରକାର । ସ୍ୱାଧୀନତା ପାଇବା ବଡ କଥା ନୁହେ ; କିନ୍ତୁ ସ୍ୱରାଜ୍ୟ କାହା ହାତକୁ ଆସିବ, ତାହା ଗୁରୁତ୍ୱପୂର୍ଣ୍ଣ । ସେହିଦିନ ସେ ମହାରାଷ୍ଟ୍ର ଚାୟର୍ସ ଅଫ କମର୍ସରେ ଭାଷଣ ଦେଇ କହିଲେ, ''ସଂସାର ସଦାସର୍ବଦା ଯୁଦ୍ଧରେ ଅଭ୍ୟସ୍ତ ଏବଂ ତିନିଗୋଟି ରୋଗ ଦ୍ୱାରା ପୀଡିତ । ପ୍ରଥମ ରୋଗ ହେଉଛି ଗୋଟିଏ ରାଷ୍ଟ୍ରର ଅନ୍ୟ ରାଷ୍ଟ୍ର ଉପରେ ସାମ୍ରାଜ୍ୟବାଦ, ଦ୍ୱିତୀୟ ରୋଗ ରଙ୍ଗଭେଦ ଦୂର କରିବା ଦରକାର ଯାହା ଫଳରେ ଶାନ୍ତିଭଙ୍ଗ ନହୁଏ ଏବଂ ତୃତୀୟରୋଗ ହେଉଛି ଦାରିଦ୍ର୍ୟ । ରାଷ୍ଟ୍ରମାନଙ୍କ ମଧ୍ୟରେ ସମାନତା ଆଣିବା ପାଇଁ ଗରିବ ରାଷ୍ଟ୍ରମାନଙ୍କୁ ମଜଭୁତ କରିବା ଆବଶ୍ୟକ ।'' ସେ ପୁନର୍ବାର କହିଲେ, ''ଏକଥା ବୁଝା ପଡୁନାହିଁ ଯେ ବ୍ରିଟେନ୍ ଓ ଆମେରିକା ପ୍ରତ୍ୟେକ ଯୁଦ୍ଧରେ ଦୈନିକ ୧୪ କୋଟି ଟଙ୍କା ଖର୍ଚ୍ଚ କରୁଛନ୍ତି କିନ୍ତୁ ଶାନ୍ତି ସମୟରେ ଏହାର ଅଧା ଅର୍ଥ ଦାରିଦ୍ର୍ୟ ଦୂର କରିବାରେ ଖର୍ଚ୍ଚ କଲେ ପୀଡିତ ମନୁଷ୍ୟର ଅବସ୍ଥା ସୁଧୁରିଯାଆନ୍ତା ।'' ୧୯୪୩ ସେପ୍ଟେମ୍ବର ୧୬ ତାରିଖ ଦିନ ଅଲଇଣ୍ଡିଆ ଟ୍ରେଡ୍ ଇଉନିୟନ କ୍ୟାମ୍ପରେ ଭାଷଣ ଦେଇ ବାବାସାହେବ କହିଥିଲେ,

''ଶ୍ରମିକ ରାଷ୍ଟ୍ରବାଦ ଭାବନା ଦେଇ କାର୍ଯ୍ୟ କରେ । ଶ୍ରମିକ ଶ୍ରେଣୀ ରାଷ୍ଟ୍ରନିର୍ମାଣ ପାଇଁ ସବୁକିଛି ତ୍ୟାଗ କରେ । ସେ କେବେହେଲେ ପଚାରେ ନାହିଁ ଯେ ରାଷ୍ଟ୍ରବାଦ ପାଇଁ ସେ ଯାହା କିଛି ତ୍ୟାଗ କରିଛି, ଯେତେବେଳେ ତାହା ଗଠନ ହୋଇଯିବ, ସେତେବେଳେ ତାହା କ'ଣ ତାକୁ ସାମାଜିକ ଓ ଆର୍ଥିକ ସମାନତା ପ୍ରଦାନ କରିବ ?... ଯେ ପର୍ଯ୍ୟନ୍ତ ଟ୍ରେଡ୍ ଇଉନିୟନବାଦ ସରକାର ସମ୍ଭାଳିବାର ଲକ୍ଷ୍ୟ ନରଖିଛି, ତାହାର ନେତାମାନେ ଏହିପରି ଲଢୁଥିବେ ଏବଂ ଶ୍ରମିକମାନଙ୍କର କୌଣସି ମଙ୍ଗଳ କରିପାରିବେ ନାହିଁ ।

## ଭାରତଛାଡ ଆନ୍ଦୋଳନ

୧୯୪୨ ଅଗଷ୍ଟ ୭ ତାରିଖ ଦିନ ବମ୍ବେଠାରେ କଂଗ୍ରେସ କାର୍ଯ୍ୟକାରୀ କମିଟି ବସି 'ଭାରତଛାଡ ଆନ୍ଦୋଳନ' ପ୍ରସ୍ତାବ କଲେ । ଏଥିରେ 'କର ବା ମର'ର ଆହ୍ୱାନ ଦିଆଗଲା । ଅଗଷ୍ଟ ୮ ତାରିଖ ଦିନ ଗାନ୍ଧୀଜୀଙ୍କ ସମେତ ସମସ୍ତ କଂଗ୍ରେସ ନେତାମାନଙ୍କୁ ବନ୍ଦି କରିନିଆଗଲା । କଂଗ୍ରେସର ଏ ପ୍ରକାର ପଦକ୍ଷେପକୁ ଆମ୍ବେଦକର ସମର୍ଥନ କରିପାରିଲେ ନାହିଁ । ସେ ଏହାକୁ ଗାନ୍ଧି ରାଷ୍ଟ୍ରନୀତିଜ୍ଞଙ୍କର ଦିବାଳିଆପଣ (Bankruptcy of statesmanship) ବୋଲି ବର୍ଣ୍ଣନା କଲେ । କଂଗ୍ରେସ ମଧ୍ୟ ଆମ୍ବେଦକରଙ୍କୁ ସମାଲୋଚନା କରିବାକୁ ପଛେଇଲେ ନାହିଁ । ଗାନ୍ଧୀଜୀ ଫେବୃୟାରୀ ୧୦ ତାରିଖ ଦିନ ୨୧ ଦିନର ଅନଶନ କଲେ । ବଡଲାଟଙ୍କର ମନ୍ତ୍ରୀ ପରିଷଦ (Executive council)ରେ ଥିବା ଶ୍ରୀ ଏମ୍.ଏସ୍.ଆନି, ଶ୍ରୀ ଏଚ.ପି.ମୋଦି ଓ ଶ୍ରୀ ଏନ୍.ଆର ସରକାର ଇସ୍ତଫା ପ୍ରଦାନ କଲେ । କିନ୍ତୁ ଆମ୍ବେଦକର ଓ ଆଇ.ପି. ଶ୍ରୀବାସ୍ତବ ଇସ୍ତଫା ଦେଲେ ନାହିଁ ।

ବ୍ରିଟିଶ ସରକାର ଅଗଷ୍ଟ ବିପ୍ଳବକୁ ଦୃଢ଼ହସ୍ତରେ ଦମନ କଲେ । ସରକାରଙ୍କର ଏ ପ୍ରକାର ପଦକ୍ଷେପକୁ ଆମ୍ବେଦକର ସମର୍ଥନ କରି ଅହମଦାବାଦ ମ୍ୟୁନିସିପାଲିଟିରେ ଭାଷଣ ଦେବା ପ୍ରସଙ୍ଗରେ କହିଥିଲେ ଜାପାନ ଓ ଜର୍ମାନୀ ଭାରତକୁ ଅଧିକାର କରିଥାନ୍ତେ । ତାଙ୍କର ଏହି ବିବୃତି ସ୍ୱାଧୀନତା ସଂଗ୍ରାମରେ ଦଳିତ ଶ୍ରେଣୀ ଓ ଭାରତର ଅନ୍ୟ ଜନଗଣଙ୍କ ମଧ୍ୟରେ ବ୍ୟବଧାନ ସୃଷ୍ଟି କଲା ।

ଗାନ୍ଧି ଆଗା ଖାଁ ପ୍ରାସାଦ ଜେଲରୁ ମୁକ୍ତ ହେଲେ । ଆମ୍ବେଦକର ହିନ୍ଦୁ ମୁସଲମାନ ମଧ୍ୟରେ ଥିବା ସମସ୍ୟାକୁ ସମାଧାନ କରିବା ସହିତ ହିନ୍ଦୁ-ମୁସଲମାନ ଓ ଦଳିତମାନଙ୍କ ମଧ୍ୟରେ ଥିବା ସମସ୍ୟାକୁ ସମାଧାନ କଲେ ଭାରତର ରାଜନୈତିକ ଲକ୍ଷ୍ୟ ପୂରଣ ହେବ ବୋଲି ଗାନ୍ଧୀଜୀଙ୍କୁ ଚିଠି ଲେଖିଲେ । ଇଂରେଜ ସରକାର ଭାରତକୁ ସ୍ୱାଧୀନତା ଦେବାକୁ ବିଚାର କରୁଥାନ୍ତି । ଭାରତରେ ଦେଖା ଦେଇଥିବା ଏହି ସମସ୍ୟାକୁ ସମାଧାନ ପାଇଁ ସାପ୍ରୁ କମିଟି ଗଠନ କରାଗଲା । ଆମ୍ବେଦକର କିନ୍ତୁ ଏଥିରେ ସହଯୋଗ କଲେ ନାହିଁ । ୧୯୪୫ ମେ ୬ ତାରିଖ ଦିନ ଆମ୍ବେଦକର ଅନୁସୂଚିତ ଜାତି ସଂଘ (Scheduled Caste Federation) ବମ୍ବେର ପାରେଲ ଠାରେ ଅନୁଷ୍ଠିତ ହେବା ଅବକାଶରେ ସମ୍ବିଧାନ ସଂଶୋଧନ ପାଇଁ ତାଙ୍କର ପରିକଳ୍ପନାର ପ୍ରସ୍ତାବ ଦେଲେ । ସେହି ପ୍ରସ୍ତାବ ହେଲା (୧) ସଂଖ୍ୟା ଗରିଷ୍ଠ

ଶାସନ ତତ୍ତ୍ୱ ଅନୁସାରେ ଅସମର୍ଥନୀୟ ଓ କାର୍ଯ୍ୟ ଅନୁଯାୟୀ ଅଯୌକ୍ତିକ (୨) ହିନ୍ଦୁମାନେ ସଂଖ୍ୟାଗରିଷ୍ଠ ପ୍ରତିନିଧିତ୍ୱ ତାଙ୍କର ସଂଖ୍ୟା ଅନୁସାରେ ଦାବି କରିପାରିବେ ନାହିଁ; ଅତତଃ ଆନୁପାତିକ ଗରିଷ୍ଠତା ଚାହିଁ ପାରିବେ (୩) ଆନୁପାତିକ ଗରିଷ୍ଠ ପ୍ରତିନିଧିତ୍ୱ ହିନ୍ଦୁମାନଙ୍କର ଏତେ ବେଶି ହେବା ଉଚିତ ନୁହେ ଯେ ସେମାନେ କ୍ଷୁଦ୍ର ସଂଖ୍ୟା ଲଘୁମାନଙ୍କ ସହିତ ଶାସନ କରିପାରିବେ (୪) ସେହିପରି ସଂଖ୍ୟାଲଘୁମାନଙ୍କର ପ୍ରତିନିଧିତ୍ୱ ଏପରି ହେବ ନାହିଁ, ସେମାନେ ମିଶି ପୂର୍ଣ୍ଣ ଗରିଷ୍ଠତା ହାସଲ କରିବେ । (୫) ସଂଖ୍ୟା ଗରିଷ୍ଠମାନଙ୍କଠାରୁ ଯେଉଁ ଅନୁପାତ ନିଆଯିବ, ତାହା ସଂଖ୍ୟାଲଘୁ ମାନଙ୍କ ମଧ୍ୟରେ ଲଟା ଭାବରେ ବଣ୍ଟନ କରାଯିବ । (୬) ସମସ୍ତ ସଂଖ୍ୟାଲଘୁ ଏକତ୍ରିତ ହୋଇ ଆସେମ୍ଲିରେ ପୂର୍ଣ୍ଣ ସଂଖ୍ୟା ଗରିଷ୍ଠ ପ୍ରତିନିଧିତ୍ୱ ପାଉଥିବେ ।

ଏହି ପ୍ରସ୍ତାବକୁ ଆଧାର କରି ଆମ୍ବେଦକର କେନ୍ଦ୍ରୀୟ ଆସେମ୍ଲିକୁ ୪୦% ହିନ୍ଦୁ, ୩୨% ମୁସଲମାନ, ୨୦% ଅନୁସୂଚିତ ଜାତି, ୩% ଖ୍ରୀଷ୍ଟିୟାନ, ୪% ଶିଖ ଓ ୧% ଆଙ୍ଗ୍ଲୋ-ଇଣ୍ଡିଆନ୍ ଯିବାର ସୁପାରିଶ କଲେ । ୧୯୩୦ ଗୋଲ ଟେବୁଲ ବୈଠକ ସମୟରେ ଯେଉଁ ସଂଖ୍ୟାଲଘୁ ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା, ସେ ସେହି ଅବସ୍ଥାକୁ ଯିବାକୁ ଚାହିଁଲେ । ତାଙ୍କ ମତରେ ତାଙ୍କର ଏହି ପ୍ରସ୍ତାବ ମୁସଲମାନମାନଙ୍କୁ ଅଧିକା ସୁରକ୍ଷା ଓ ନିରାପଦ ଅବସ୍ଥା ଦେଇପାରିବ । ହିନ୍ଦୁମାନଙ୍କ ତରଫରୁ ଯେଉଁ ଭୟ ତାହା ରହିବ ନାହିଁ । ଆଦିମ ଅଧିବାସୀମାନଙ୍କୁ ପ୍ରତିନିଧିତ୍ୱ ଦେବାର ଆବଶ୍ୟକତା ନାହିଁ କାରଣ ସେମାନଙ୍କର କୌଣସି ରାଜନୈତିକ ବିଜ୍ଞତା ଆସିନାହିଁ । ସେ କୌଣସି ସାମ୍ବିଧାନିକ ସଭା(Constituent Assembly) ଗଠନ କରିବା ବିରୁଦ୍ଧରେ ଥିଲେ କାରଣ ଏହା ଗୃହଯୁଦ୍ଧ (Civil war) ଆଡକୁ ରାଷ୍ଟ୍ରକୁ ଟାଣିନେବ ।

୧୯୪୫ ୱାଭେଲ ପ୍ଲାନପରେ ସିମଳା ସମ୍ମିଳନୀ ଅନୁଷ୍ଠିତ ହେଲା । କିନ୍ତୁ ଏହା ମଧ୍ୟ କୌଣସି ନିଷ୍ପତ୍ତି ନନେଇ ଭାଙ୍ଗିଗଲା । ଲର୍ଡ ୱାଭେଲ ନିର୍ବାଚନ ଘୋଷଣା କଲେ । ୧୯୪୬ ଜାନୁୟାରୀ ୧୦ ତାରିଖ ଦିନ ବ୍ରିଟିଶ ସାଂସଦ ପ୍ରତିନିଧିମଣ୍ଡଳ ଭାରତ ଗସ୍ତରେ ଆସିଥିବାବେଳେ ଆମ୍ବେଦକରଙ୍କର ଏକ ସାକ୍ଷାତକାର ନେଲେ । ସେ କହିଲେ ଯଦି ସ୍ୱରାଜ୍ୟର ଅର୍ଥ ହେଉଛି ସଂଖ୍ୟାଲଘୁମାନଙ୍କର ସାହାଯ୍ୟ ଓ ସହଯୋଗ ସହିତ ସଂଖ୍ୟା ଗରିଷ୍ଠର ଶାସନ, ତେବେ ସେପରି ସ୍ୱରାଜ୍ୟକୁ ସେ ସ୍ୱାଗତ କରିବେ । ୧୯୪୬ ଏପ୍ରିଲ ୫ ତାରିଖ

ଦିନ ବ୍ରିଟିଶ କ୍ୟାବିନେଟ ମିଶନକୁ ସାକ୍ଷାତକାର ଦେଇ ସେ ଅନୁସୂଚିତ ଜାତିମାନଙ୍କ ପାଇଁ ପୃଥକ ନିର୍ବାଚନ ମଣ୍ଡଳୀ (electorates) ବ୍ୟବସ୍ଥା ସପକ୍ଷରେ ସ୍ମାରକ ପତ୍ର ପ୍ରଦାନ କଲେ । ଏହି ସ୍ମାରକ ପତ୍ରରେ ସେ ନୂତନ ବନ୍ଦୋବସ୍ତ, ବନ୍ଦୋବସ୍ତ କମିଶନର ନିଯୁକ୍ତି ଏବଂ ବିଭିନ୍ନ ପ୍ରତିନିଧି ସଭାରେ ଆନୁପାତିକ ପ୍ରତିନିଧିତ୍ୱ, ସେବାକର୍ମଚାରୀ, ସେବା କମିଶନ ଇତ୍ୟାଦିରେ ଦଳିତ ବର୍ଗର ପ୍ରତିନିଧିତ୍ୱ ସ୍ଥିର କରିବାକୁ ଦାବି କଲେ । ଅନୁସୂଚିତ ଜାତିମାନଙ୍କର ଏହି ଦାବି ପ୍ରକାଶିତ ଶ୍ୱେତପତ୍ର (white paper)ରେ ନଥିଲା । କ୍ୟାବିନେଟ ମିଶନ ଦ୍ୱାରା ଦଳିତମାନଙ୍କ ପ୍ରତି ଯେପରି ଅନ୍ୟାୟ କରାଯାଇଛି, ତାକୁ ସଂଶୋଧନ କରି ଦଳିତମାନଙ୍କର ସ୍ୱାର୍ଥକୁ ସାମ୍ବିଧାନିକ ସୁରକ୍ଷା ଦେବା ପାଇଁ ସେ ୧୯୪୬ ସେପ୍ଟେମ୍ବର ମାସରେ ଇଂଲଣ୍ଡ ଅଭିମୁଖେ ଯାତ୍ରା କଲେ । ସବର୍ଣ୍ଣ ହିନ୍ଦୁମାନଙ୍କଠାରୁ ନିଜକୁ ମୁକ୍ତ କରିବା ଏହା ଥିଲା ତାଙ୍କର ଉଦ୍ଦେଶ୍ୟ ।

୧୯୪୩ ଜାନୁୟାରୀ ୨୯ ତାରିଖ ଦିନ ଅନୁସୂଚିତ ଜାତି ସଂଘର ବାର୍ଷିକ ସମ୍ମିଳନୀ କାନପୁରଠାରେ ଅନୁଷ୍ଠିତ ହେଲା । ଏଥିରେ ଶ୍ରୀ ଏନ୍. ଶିବରାଜ ସଭାପତିତ୍ୱ କରିଥିଲେ । ଏଥିରେ କୁହାଗଲା ଯେ ଦଳିତ ଶ୍ରେଣୀର ଦାବିକୁ ଗ୍ରହଣ କରାଗଲେ ସେମାନେ କ୍ଷମତା ହସ୍ତାନ୍ତରକୁ ବିରୋଧ କରିବେ ନାହିଁ । ଯଦି ଜାତୀୟ ସରକାର ଗଠନରେ ଦଳିତମାନେ ନିଜର ଅଂଶ ନପାଆନ୍ତି, ତେବେ ସେହି ଲକ୍ଷ୍ୟ ହାସଲ ପାଇଁ ସେମାନେ ସଂଘର୍ଷ କରିବେ ।

ଅନୁସୂଚିତ ଜାତି ସଂଘର ଘୋଷଣାନାମା (manifesto) ରେ ନିମ୍ନଲିଖିତ ନିୟମଗୁଡିକୁ ରଖାଗଲା । ଧାର୍ମିକ, ଆର୍ଥିକ ଓ ରାଜନୈତିକ ସ୍ୱାଧୀନତା, ସମସ୍ତଙ୍କୁ ସମାନ ସୁଯୋଗର ଅଧିକାର, ପ୍ରତ୍ୟେକ ଭାରତୀୟ ନାଗରିକ ଭୟରୁ ମୁକ୍ତ ହେବା ରାଷ୍ଟ୍ରର ଦାୟିତ୍ୱ, ସାମ୍ୟ, ମୈତ୍ରୀ ଓ ପ୍ରୀତିର ରକ୍ଷଣାବେକ୍ଷଣ, ନିର୍ଯ୍ୟାତନାରୁ ସୁରକ୍ଷା ଏବଂ ମନୁଷ୍ୟ ଦ୍ୱାରା ମନୁଷ୍ୟ, ଶ୍ରେଣୀ ଦ୍ୱାରା ଶ୍ରେଣୀ, ରାଷ୍ଟ୍ର ଦ୍ୱାରା ରାଷ୍ଟ୍ର ନିର୍ଯ୍ୟାତିତ ହେବାର ବିଲୋପ ଓ ଗଣତାନ୍ତ୍ରିକ ପଦ୍ଧତିର ସରକାର ପ୍ରତିଷ୍ଠା ।

ଅନୁସୂଚିତ ସଂଘ ନିର୍ବାଚନ ପ୍ରଚାର କରିବାକୁ ଆରମ୍ଭ କଲେ । ପ୍ରତ୍ୟେକ ପ୍ରଦେଶରେ ଆମ୍ବେଦକର ଭାଷଣ ଦେଲେ । ସେହି ଭାଷଣମାନଙ୍କରେ ସେ ଘୋଷଣା କଲେ ଯେ ସେମାନଙ୍କର ସମ୍ମତି ବିନା କୌଣସି ସମ୍ବିଧାନକୁ ସେମାନେ ଗ୍ରହଣ କରିପାରିବେ ନାହିଁ ।

## ସମ୍ବିଧାନ ସଭା ଗଠନ

### (କ) ସମ୍ବିଧାନ ସଭାର ସଭ୍ୟ

୧୯୪୬ ନିର୍ବାଚନରେ ଅନୁସୂଚିତ ଜାତିସଂଘ ସମ୍ପୂର୍ଣ୍ଣଭାବେ ପରାସ୍ତ ହେଲେ । ଆମ୍ବେଦକର ସାମ୍ବିଧାନିକ ଆସେମ୍ବ୍ଲିକୁ (ବଂଗ ବିଧାନସଭା) ବେଙ୍ଗଲ ଆସେମ୍ବ୍ଲିରୁ ନିର୍ବାଚିତ ହେଲେ ।

୧୯୪୬ ଡିସେମ୍ବର ୯ ତାରିଖ ଦିନ ସମ୍ବିଧାନ ସଭା ଭାରତ ସମ୍ବିଧାନ ନିର୍ମାଣର ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ହାତକୁ ନେଲା । ଯଦିଓ ନିର୍ବାଚନ ନିୟନ୍ତ୍ରିତ ମତାଧିକାର(restricted franchise) ମଧ୍ୟରେ ହୋଇ ଥିଲା, ତଥାପି ସମସ୍ତ ପ୍ରକାର ମତ ଓ ସମ୍ପ୍ରଦାୟର ଲୋକମାନେ ଏହି ସଭାରେ ପ୍ରତିନିଧିତ୍ୱ କରୁଥିଲେ । ସମୁଦାୟ ୨୯୬ ଜଣ ସଭ୍ୟଙ୍କ ମଧ୍ୟରୁ ଯେଉଁଦିନ ସଭାର ଉଦ୍‌ଘାଟନ ହେବ, ସେଦିନ ୨୦୭ ଜଣ ଯୋଗଦେଇଥିଲେ । ଅନୁପସ୍ଥିତ ରହିଥିବା ସଭ୍ୟମାନେ ହେଲେ ମୁସଲିମ୍ ଲିଗର ସଭ୍ୟ । କାରଣ ସେମାନେ ସାମ୍ବିଧାନିକ ସଭାକୁ ପ୍ରତ୍ୟାଖାନ କରିଥିଲେ । ଡିସେମ୍ବର ୧୧ ତାରିଖରେ ଡକ୍ଟର ଏସ.ସିହ୍ନା ଅସ୍ଥାୟୀ ଚେୟାରମ୍ୟାନ ଥିଲେ ।

୧୯୪୬ ଡିସେମ୍ବର ୧୩ ତାରିଖ ଦିନ ପ୍ରଧାନମନ୍ତ୍ରୀ ନେହେରୁ ସଭାରେ ଏକ ପ୍ରସ୍ତାବ ଆଗତ କଲେ । ସେହି ପ୍ରସ୍ତାବରେ ସେ କହିଲେ, "ଏହା ଆମର ଲକ୍ଷ୍ୟ, ଯୋଜନାର ଖସଡା ଏବଂ ନିର୍ଦ୍ଦିଷ୍ଟ ରାସ୍ତା ନିର୍ଣ୍ଣୟ କରିବାର ସଂଜ୍ଞା ନିରୂପଣ କରିବ ।"

ଡକ୍ଟର ଏମ୍.ଆର. ଜୟକର ଏହି ପ୍ରସ୍ତାବର ବିରୋଧ କଲେ । ତାଙ୍କର ମତ ଥିଲା ଯେ ମୁସଲିମ୍ ଲିଗର ଅନୁପସ୍ଥିତିରେ, ସମ୍ବିଧାନର ମୌଳିକ ନୀତି କ'ଣ ହେବ ତାହା ସ୍ଥିର କରିବା ଠିକ୍ ହେବ ନାହିଁ । ଏତଦ୍ ବ୍ୟତୀତ ଏପରି ପ୍ରସ୍ତାବ ୧୯୪୬ ମେ ୧୬ ତାରିଖ କ୍ୟାବିନେଟ୍ ମିଶନ୍ ବକ୍ତବ୍ୟର ପରିସର ବାହାରେ । ସେ ତେଣୁ ନେହେରୁଙ୍କର ପ୍ରସ୍ତାବକୁ ଗୃହୀତ ନକରି ଘୁଞ୍ଚାଇ ଦେବାକୁ ଏକ ପ୍ରସ୍ତାବ ରଖିଲେ । ଏଥିରେ କଂଗ୍ରେସ ସଭ୍ୟମାନେ ଉତ୍‌କ୍ଷିପ୍ତ ହେଲେ । ଗୃହରେ ଉତ୍ତପ୍ତ ବାତାବରଣ ସୃଷ୍ଟି ହେଲା । ଏହି ସମୟରେ ଡିସେମ୍ବର ୧୭ ତାରିଖ ଦିନ ଆମ୍ବେଦକର ନିଜର ଭାଷଣ ଉପସ୍ଥାପିତ କଲେ ।

ଆମ୍ବେଦକର ଭାଷଣ ଦେବାକୁ ଉଠିବାରୁ କଂଗ୍ରେସ ସଭ୍ୟମାନେ କି ପ୍ରକାର ଆଚରଣ କରିଥିଲେ ତାହା ଉଲ୍ଲେଖ କରି ଧନଞ୍ଜୟ କିର ଲେଖିଛନ୍ତି, "ଏବଂ ତାପରେ ସମ୍ବିଧାନ ସଭାର ଅଧ୍ୟକ୍ଷ ଜଣେ ସଭ୍ୟଙ୍କୁ ଡାକି ତାଙ୍କୁ ବକ୍ତବ୍ୟ ରଖିବାକୁ କହିଲେ । ଏହି ଆହ୍ବାନରେ ଜଣେ ବଡ ମୁଣ୍ଡ ଥିବା ଏକ ବିରାଟ ପୁରୁଷ, ଅଣ୍ଡାକୃତି ମୁଖମଣ୍ଡଳ ଓ ଜିଦ୍‌ଖୋର ମନୋବୃତ୍ତିର ବ୍ୟକ୍ତି ନିଜ ଆସନରୁ ଜୟକରଙ୍କର ସଂଶୋଧନକୁ ସମର୍ଥନ କରିବାକୁ ଠିଆହେଲେ । ସେ ଥିଲେ ଆମ୍ବେଦକର । ଆମ୍ବେଦକର କଂଗ୍ରେସର ଚିରାଚରିତ ଶତ୍ରୁ ଥିଲେ । ସେ କଂଗ୍ରେସର ନୀତି ଓ ନେତାଙ୍କ ପ୍ରତି ଘରୋଇ ଭାବେ ଓ ସର୍ବସାଧାରଣରେ ତିକ୍ତ ସମାଲୋଚନା କରିଥିଲେ । ସମସ୍ତେ ଭାବିଥିଲେ ଆମ୍ବେଦକର ଏକ ବିପଦଜନକ ଭୂମିକା ନେବେ ଏବଂ ବ୍ୟକ୍ତିଙ୍କର ସମର୍ଥନରେ ନିଜର ମତବ୍ୟକ୍ତ କରିବେ । କଂଗ୍ରେସ ନେତା ସେମାନଙ୍କର ଇଚ୍ଛା ଓ ଉଦ୍ଦେଶ୍ୟ ବିରୁଦ୍ଧରେ ଯିବା ଅର୍ଥ ନିଜକୁ ବିପଦ ଆଣିବା । କଂଗ୍ରେସ ସଭ୍ୟମାନେ ବଦ୍ଧମୁଷ୍ଟି ହୋଇ ତାଙ୍କର ପ୍ରକାଶ୍ୟ ଶତ୍ରୁଙ୍କୁ ବିକଳାଙ୍ଗ କରିଦେବାକୁ ପ୍ରସ୍ତୁତ ହୋଇ ରହିଥିଲେ ।"

ପ୍ରସ୍ତାବର (୫) ଓ (୭) ଧାରା ସମ୍ପର୍କରେ ନିଜର ଅସନ୍ତୋଷ ବ୍ୟକ୍ତ କରିବା ପରେ, ଯେଉଁଥିରେ "ଭବିଷ୍ୟତ ସମ୍ବିଧାନର ଲକ୍ଷ୍ୟ ସମ୍ପର୍କରେ କୁହାଯାଇଛି, "ଆମ୍ବେଦକର ଜୟକରଙ୍କର ସଂଶୋଧନ ପ୍ରସ୍ତାବ ଉପରେ କହିଲେ । ସେ ପ୍ରସ୍ତାବକାରୀଙ୍କର ସଂଶୋଧନ ପ୍ରସ୍ତାବକୁ ସମର୍ଥନ କରି ଏହାକୁ ଘୁଞ୍ଚାଇ ଦେବାକୁ ଏକ ଅନ୍ୟ ଏକ କାରଣରୁ କହିଲେ । ସେଥିରେ କି ପ୍ରକାର ଆଇନଗତ ପ୍ରଶ୍ନ ରହିଛି, ତାକୁ ଏଡାଇଯାଇ, ସମ୍ବିଧାନ ସଭାର କ୍ଷମତା ଏପରି ପ୍ରସ୍ତାବକୁ ଗ୍ରହୀତ କରିବାର ଅଛି ବୋଲି କହି, ତଥାପି ଏହାକୁ ଘୁଞ୍ଚାଇ ଦେବାକୁ ଯୁକ୍ତିକଲେ କାରଣ ସେ ଦେଶର ଏକତା ଓ ସ୍ବାର୍ଥ ରକ୍ଷାପାଇଁ ଏପରି ବିଚାର କରିବାକୁ ଅନୁରୋଧ କଲେ । ନିଜର ସ୍ବରକୁ ଉଠାଇ ସେ ଜଣେ ରାଷ୍ଟ୍ରନୀତିଜ୍ଞ ଭାବରେ କହିଲେ, "ମହାଶୟ, ବର୍ତ୍ତମାନ ମୋ ମନରେ ଏହି ବିରାଟ ଦେଶର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ରୂପରେଖ ପରିଶେଷରେ କିପରି ଆକାର ଧାରଣ କରିବ, ସେ ସମ୍ପର୍କରେ ବିନ୍ଦୁଏ ମାତ୍ରା ସନ୍ଦେହ ନାହିଁ ।

ମୁଁ ଏହା ମଧ୍ୟ ଭଲଭାବେ ଜାଣେ ଯେ ଆମ୍ଭେ ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଭାବେ ଭାଗ ଭାଗ । ଆମ୍ଭେମାନେ ଯୁଦ୍ଧକରୁଥିବା ଗୋଟିଏ ଗୋଟିଏ ଗୋଷ୍ଠୀ ଏବଂ ମୋର ସ୍ବୀକାର କରିବାରେ ଆଦୌ ଦ୍ବିଧା ନାହିଁ ଯେ ସେହିପରି

ଗୋଷ୍ଠୀର ମୁଁ ମଧ୍ୟ ଜଣେ ନେତା ।''

''କିନ୍ତୁ ମହାଶୟ, ଏହା ସତ୍ତ୍ୱେ ମୁଁ ଦୃଢ଼ ବିଶ୍ୱାସୀ ଯେ ସମୟ ଓ ପରିସ୍ଥିତି ଅନୁଯାୟୀ ଏହି ରାଷ୍ଟ୍ର ଗୋଟିଏ ରାଷ୍ଟ୍ରରେ ପରିଗଣିତ ହେବାକୁ ବିଶ୍ୱର କୌଣସି ରାଷ୍ଟ୍ର ବାଧା ଦେଇପାରିବ ନାହିଁ । (ତାଳି) ଆମର ସମସ୍ତ ଜାତି ଓ ଉପଜାତି ସତ୍ତ୍ୱେ, ମୋର ସାମାନ୍ୟତମ ଦ୍ୱିଧା ନାହିଁ ଯେ ଆମ୍ଭେମାନେ କୌଣସି ରୂପରେ ଏକତ୍ରିତ ରାଷ୍ଟ୍ର ହେବୁ । (ହର୍ଷୋଲ୍ଲାସ) ମୋର ଏହା ମଧ୍ୟ କହିବାର ଦ୍ୱିଧା ନାହିଁ ଯେ ଭାରତକୁ ଭାଗ ଭାଗ କରିବା ପାଇଁ ମୁସଲିମ୍‌ଲିଗର ଆନ୍ଦୋଳନ ସମୟକ୍ରମେ ସେମାନଙ୍କ ନିଜ୍ୱେ ବିବେକ ଉଦ୍ରେକ କରାଇବ ଏବଂ ସେମାନେ ମଧ୍ୟ ଭାବିବେ ଯେ ସେମାନଙ୍କ ପାଇଁ ମଧ୍ୟ ଏକ ଅଖଣ୍ଡ ଭାରତର ପ୍ରୟୋଜନ ।'' (ଖୁବ୍ ଜୋରରେ ତାଳି)

''ଆମର ଶେଷ ଲକ୍ଷ୍ୟ ସମ୍ପର୍କରେ, ମୁଁ ଭାବୁଛି କାହାର କୌଣସି ସନ୍ଦେହ ରହିବା ଉଚିତ୍ ନୁହେ । ଆମର ଭବିଷ୍ୟତ ଶେଷରେ କ'ଣ ହେବ, ସେ ସମ୍ପର୍କରେ ଆମର କୌଣସି ଅସୁବିଧା ନାହିଁ । ଆମର ପ୍ରକୃତ ଅସୁବିଧା ହେଉଛି ବହୁଧା ବିଭକ୍ତ ଜନଗଣଙ୍କୁ ନେଇ ଏକ ସର୍ବସମ୍ମତ ନିଷ୍ପତ୍ତି ଗ୍ରହଣ ପୂର୍ବକ ଆମକୁ ଆଗେଇଯାଇ ଏକତ୍ୱ ପ୍ରତିଷ୍ଠା କରିବାକୁ ହେବ । ସମାପ୍ତି କ'ଣ ହେବ ସେଥିପାଇଁ ଆମର ଅସୁବିଧା ନାହିଁ; ଆମର ଅସୁବିଧା ଆରମ୍ଭ । ଅଧ୍ୟକ୍ଷ ମହାଶୟ ତେଣୁ ମୁଁ ଭାବୁଛି ଯେ ଆମେମାନେ ସମସ୍ତେ ଗ୍ରହଣୀୟ ବନ୍ଧୁ ହେବା ପାଇଁ ଏ ଦେଶର ସମସ୍ତ ଦଳ ଓ ଗୋଷ୍ଠୀମାନଙ୍କୁ ଏକ ବାଟରେ ଯିବାକୁ ପ୍ରବର୍ତ୍ତାଇବା ପାଇଁ, ସଂଖ୍ୟା ଗରିଷ୍ଠ ଦଳର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ରାଷ୍ଟ୍ରନୀତି ହେବ ଏହି ସୁବିଧା ପ୍ରଦାନ କରିବା ଯେଉଁମାନେ ଉଦ୍ଦେଶ୍ୟମୂଳକ ଭାବେ ଗୋଟିଏ ମାର୍ଗର ସହଯାତ୍ରୀ ହେବାକୁ ଅନିଚ୍ଛୁକ ଏବଂ ଏଇଥିପାଇଁ, ମୁଁ ଏହି ଅନୁରୋଧ ପ୍ରସ୍ତାବ ଉପସ୍ଥାପିତ କରୁଛି । ଚାଲ, ଆମର ରଣଧ୍ୱନିମାନଙ୍କୁ ଅଲଗା ରଖିବା, ଚାଲ ସେହି ଶବ୍ଦମାନଙ୍କୁ ପୃଥକ୍ ରଖିବା ଯାହା ଲୋକମାନଙ୍କୁ ଭୟଭୀତ କରେ । ଚାଲ ଆମର ପ୍ରତିକୂଳ ବିରୋଧି ମାନଙ୍କୁ କିଛି ସୁବିଧା ପ୍ରଦାନ କରି, ସେମାନଙ୍କ ଆମ ଭିତରକୁ ଆଣିବା, ଯାହା ଫଳରେ ସେମାନେ ସମ୍ମତ ହୋଇ ଆମ ସହିତ ଯୋଗଦେବେ ଓ ସେହି ରାସ୍ତାରେ ଚାଲିବାକୁ ଲାଗିବେ, ଯାହା ମୁଁ କହିଲି, ଯଦି ଆମେ ଏହିପରି ଚାଲୁ, ତେବେ ତାହା ଏକତା ଆଡକୁ ମୁହାଇଁ ନେବ ।''

''ତେଣୁ, ଯଦି ମୁଁ ଏଠାରୁ ଜୟକରଙ୍କର ସଂଶୋଧନ ପ୍ରସ୍ତାବକୁ ସମର୍ଥନ

କରେ ଏହା ଏଇଥିପାଇଁ ଯେ ଆମେ ସମସ୍ତେ ଅନୁଭବ କରିବା ଉଚିତ ଯେ ଆମେ ଠିକ୍ ବା ଭୁଲ୍ ହେଉ ଆମର ପଦକ୍ଷେପ ଆଇନ୍ ଅନୁମୋଦିତ ହୋଇଥାଉ ବା ନଥାଉ ତାହା ମେ ୧୬ ବା ଡିସେମ୍ବର ୬ ତାରିଖର ବକ୍ତବ୍ୟ ଅନୁସାରେ ହେଉ ବା ନହେଉ, ତାହାକୁ ଆମେ ପୃଥକ୍ ରଖିବା । ଏହା ଆଇନଗତ ଅଧିକାର କି ନୁହେ, ତାହା ବିଚାର କରିବା ବହୁତ ବଡ ପ୍ରଶ୍ନ । ଏହା ଆଦୌ ଆଇନଗତ ପ୍ରଶ୍ନ ନୁହେ । ଆମେ ସମସ୍ତ ଆଇନଗତ ବିଚାରକୁ ପୃଥକ୍ ରଖି କିଛି ପ୍ରଚେଷ୍ଟା କରିବା ଯାହାଫଳରେ ଯେଉଁମାନେ ଆସିବାକୁ ଆଦୌ ପ୍ରସ୍ତୁତ ନୁହନ୍ତି, ସେମାନେ ଆସିବେ । ଚାଲ ସମସ୍ତେ ମିଳିମିଶି ସେମାନଙ୍କର ଆସିବାକୁ ସମ୍ଭବ କରିପାରିବା - ତାହା ହିଁ ମୋର ନିବେଦନ ।''

ତାଙ୍କର ବକ୍ତବ୍ୟର ଏହି ବିଷୟକୁ ପୁନରାୟ ଆଗକୁ ନେବାକୁ ଆମ୍ବେଦକର କହିଲେ, ''ମହାଶୟ, ଗତକାଲି ମୋର ବନ୍ଧୁ ଡକ୍ଟର ଜୟକର ତାଙ୍କର ବକ୍ତବ୍ୟ ରଖିବାକୁ ଯାଇ ନିଷ୍ପତ୍ତିକୁ ଘୁଞ୍ଚାଇବାକୁ ଯୁକ୍ତି ଦର୍ଶାଇଥିଲେ;ତାଙ୍କୁ ଆଦୌ କୌଣସି ଅପମାନିତ ନକରି ମୁଁ ଆଇନଗତ ଭାବେ ତାହାକୁ କରିପାରେ । ତାଙ୍କ ଯୁକ୍ତିର ଭିତ୍ତିଥିଲା, ଆମର ଏହା କରିବାର ଅଧିକାର ଅଛିକି ? ସେ କ୍ୟାବିନେଟ୍ ମିଶନ୍‌ର କିଛି ବକ୍ତବ୍ୟ ପଢ଼ିଲେ ଯାହା ସାମ୍ବିଧାନିକ ସଭାର ବ୍ୟବସ୍ଥା କ'ଣ ହେବ ସେ ସମ୍ପର୍କରେ କୁହାଯାଇଛି । ଏବଂ ତାଙ୍କର ମତଥିଲା ଯେ ସାମ୍ବିଧାନିକ ସଭା ଯେଉଁ କାର୍ଯ୍ୟବିଧି ଏହି ପ୍ରସ୍ତାବକୁ ଗ୍ରହଣ କରିବାକୁ ଯାଉଛି, ତାହା ସିଧାସିଧା କାଗଜରେ ଲିପିବଦ୍ଧ କାର୍ଯ୍ୟବିଧିର ସମ୍ପୂର୍ଣ୍ଣ ବିରୋଧାଚରଣ କରୁଛି ।''

''ସାର୍ ! ମୁଁ ଏହି ବିଷୟଟିକୁ ଟିକିଏ ଅଲଗା ବାଗରେ କହିବାକୁ ଚାହେଁ । ମୁଁ ଯାହା କହିବାକୁ ଚାହୁଁଛି, ତାହା ଏହିପରି । ଆପଣ ଏହି ପ୍ରସ୍ତାବକୁ ସିଧା ପାଶ କରିବାର ଅଧିକାର ଅଛି କି ନାହିଁ, ତାହା ବିଚାର କରିବାକୁ ମୁଁ କହୁନାହିଁ । ଏହା ମଧ ହୋଇପାରେ ଯେ ଆପଣଙ୍କର ଏହା କରିବାର ଅଧିକାର ରହିଛି । ମୁଁ ଯେଉଁ ପ୍ରଶ୍ନ ପଚାରିବାକୁ ଯାଉଛି, ତାହା ଏହିପରି । ଏହା କରିବା ଆପଣଙ୍କ ପକ୍ଷରେ ବିଜ୍ଞତା ହେବ କି ? ଏହା ଆପଣଙ୍କ ଦ୍ୱାରା କରିବା ବୁଦ୍ଧିମତ୍ତାର କାର୍ଯ୍ୟ ହେବ କି ?

କ୍ଷମତା ଗୋଟିଏ କଥା, ବୁଦ୍ଧିମତ୍ତା ଅଲଗା କଥା ଏବଂ ମୁଁ ଚାହେଁ ଏହି ଗୃହ ସେହି ଦୃଷ୍ଟିକୋଣରୁ ଏହାକୁ ବିଚାର କରୁ, ଏହା ନୁହେ ଯେ ସମ୍ବିଧାନ ସଭା ଉପରେ କ୍ଷମତା ନ୍ୟସ୍ତ ହୋଇଛି ବୋଲି । ଏହି ଗୃହ ଅନ୍ୟ ଏକ ଦୃଷ୍ଟିକୋଣରୁ

ଏହାକୁ ବିଚାର କରୁ ବୋଲି ମୁଁ ଭାବୁଛି ; ବିଶେଷ କରି, ଏ ଅବସ୍ଥାରେ ଏହାକୁ କରିବା ବିଜ୍ଞତା ଓ ବୁଦ୍ଧିମତ୍ତାର କାର୍ଯ୍ୟ ହେବକି ? ମୋର ଉତ୍ତର ହେଉଛି ଯେ କଂଗ୍ରେସ ଓ ମୁସଲିମ ଲିଗ୍ ମଧ୍ୟରେ ହୋଇଥିବା ଦ୍ୱନ୍ଦର ସମାଧାନ ପାଇଁ ଆଉଥରେ ଚେଷ୍ଟା ହେଉ । ଏହି ବିଷୟ ଏତେ ଗୁରୁତ୍ୱପୂର୍ଣ୍ଣ ଓ ବିଶେଷତା ବହନ କରେ ଯେ ମୁଁ ଭାବୁଛି ଏ ଦଳ ବା ସେ ଦଳର ସମ୍ମାନର ଭିତ୍ତି ଉପରେ ପ୍ରତିଷ୍ଠିତ ହେବା ଉଚିତ ନୁହେ । ଲୋକମାନଙ୍କର ଭାଗ୍ୟ ନିର୍ଦ୍ଧାରଣ କରିବାବେଳେ ବ୍ୟକ୍ତି, ନେତା ବା ଦଳମାନଙ୍କର ସମ୍ମାନ କୌଣସି ମୂଲ୍ୟ ରଖେନା । ବର୍କ କହିଛନ୍ତି, ''କ୍ଷମତା ଦେବା ସହଜ କିନ୍ତୁ ବିଜ୍ଞତା ଦେବା କଷ୍ଟସାଧ୍ୟ ।'' ଆମେ ଆମର ବ୍ୟବହାର ଦ୍ୱାରା ପ୍ରମାଣ କରିବା ଯେ ଆମମାନଙ୍କର କେବଳ କ୍ଷମତା ନାହିଁ ପରନ୍ତୁ ବିଜ୍ଞତା ମଧ୍ୟ ରହିଛି ଦେଶର ସମସ୍ତ ଗୋଷ୍ଠୀକୁ ଗୁଡିକୁ ସାଙ୍ଗରେ ନେବା ପାଇଁ, ଯାହା ଆମକୁ ଏକତ୍ୱ ଆଡକୁ ଅଗ୍ରସର କରାଇବ ।'' (ସମସ୍ତଙ୍କର ଆନନ୍ଦଧ୍ୱନି)

ଡକ୍ଟର ଆମ୍ବେଦକରଙ୍କର ଦେଶର ଏକତା ସମ୍ପର୍କରେ ଅଖଣ୍ଡ ବିଶ୍ୱାସ ସ୍ଥାପନ ସଭାରେ ଥିବା ସମସ୍ତ ସଭ୍ୟମାନଙ୍କୁ ବହୁତ ପ୍ରଭାବିତ କରିଥିଲା ଏବଂ ଦୀର୍ଘ ସମୟ ଧରି କରତାଳିରେ ସଭାଗୃହ କମ୍ପମାନ ହୋଇଉଠିଥିଲା । ତାଙ୍କର ସମ୍ମାନବୋଧ ଓ କ୍ଷମତା ଛାଡି ବିଜ୍ଞତାର ସହ ବିଚାର କରିବାର ମତକୁ ସମସ୍ତେ ଗ୍ରହଣ କରିଥିଲେ ଓ ସାମ୍ବିଧାନିକ ସଭା ପ୍ରସ୍ତାବର ଲକ୍ଷ୍ୟ ସମ୍ପର୍କରେ ଆଲୋଚନା କରିବାକୁ ପରବର୍ତ୍ତୀ ବୈଠକ ପର୍ଯ୍ୟନ୍ତ ଘୁଞ୍ଚାଇ ଦେଇଥିଲେ ।

୧୯୪୭ ଜାନୁୟାରୀ ୨୦ ତାରିଖରେ ସମ୍ବିଧାନ ସଭା ପୁନରାୟ ବସିଲା । ସମ୍ବିଧାନ ନିର୍ମାଣ କରିବା ପାଇଁ ମୁସଲିମ ଲିଗ ସହଯୋଗ କରିବାକୁ ବା ଯୋଗ ଦେବାକୁ ଚାହିଁଲା ନାହିଁ । ଡକ୍ଟର ଜୟକର ତାଙ୍କର ସଂଶୋଧନ ପ୍ରସ୍ତାବକୁ ପ୍ରତ୍ୟାହାର କରିନେଲେ । ସମ୍ବିଧାନର ଉଦ୍ଦେଶ୍ୟ ଓ ଲକ୍ଷ୍ୟ ସମ୍ପର୍କରେ ନେହେରୁ ଆଣିଥିବା ପ୍ରସ୍ତାବ ୧୯୪୭ ଜାନୁୟାରୀ ୨୨ ତାରିଖ ଦିନ ସର୍ବସମ୍ମତ କ୍ରମେ ଗୃହୀତ ହେଲା । ଡକ୍ଟର ଆମ୍ବେଦକର ବିଭିନ୍ନ କମିଟିରେ ରହି ନିଜର ବିଚକ୍ଷଣତାର ପ୍ରମାଣ ଦେଇଥିଲେ । ଫଳରେ ବଙ୍ଗ ବିଭାଜନ ପରେ ଆମ୍ବେଦକରଙ୍କୁ ବମ୍ବେ ପ୍ରଦେଶରୁ ନିର୍ବାଚିତ କରିବା ପାଇଁ ସମ୍ବିଧାନ ସଭାର ସଭାପତି ଡକ୍ଟର ରାଜେନ୍ଦ୍ର ପ୍ରସାଦ ବମ୍ବେ ମୁଖ୍ୟମନ୍ତ୍ରୀ ଶ୍ରୀ ବି.ଜି. ଖେରଙ୍କୁ ପତ୍ର ଲେଖିଥିଲେ । ୧୯୪୭ ଜୁଲାଇ ମାସରେ ସମ୍ବିଧାନ ସଭାର ସଭ୍ୟ ଭାବରେ ସେ ନିର୍ବାଚିତ ହୋଇ ଆସିଲେ । ଅଗଷ୍ଟ ୧୫ ତାରିଖ ୧୯୪୭ରେ ଯେତେବେଳେ ସ୍ୱାଧୀନ ଭାରତର ପ୍ରଥମ

ମନ୍ତ୍ରୀମଣ୍ଡଳ ଗଠନ କରାଗଲା, ପଣ୍ଡିତ ନେହେରୁ ତାଙ୍କୁ ତାଙ୍କ ମନ୍ତ୍ରୀମଣ୍ଡଳରେ ଯୋଗ ଦେବାକୁ ଦେଶର ବୃହତ୍ତର ସ୍ୱାର୍ଥ ଦୃଷ୍ଟିରୁ ଅନୁରୋଧ କଲେ । ସେ ହେଲେ ଆଇନମନ୍ତ୍ରୀ । ଅଗଷ୍ଟ ୨୯ ତାରିଖ ଦିନ ସମ୍ବିଧାନ ସଭା ତାଙ୍କୁ ସର୍ବସମ୍ମତ ଭାବେ ସମ୍ବିଧାନ ନିର୍ମାଣ ପାଇଁ ଯେଉଁ ଡ୍ରାଫ୍ଟିଙ୍ଗ୍ କମିଟି(ଚିଠା ସମିତି) ଗଠନ ହେଲା ତାହାର ଅଧ୍ୟକ୍ଷ ଭାବେ ନିର୍ବାଚିତ କଲେ ।

ସ୍ୱାଧୀନ ଭାରତର ସମ୍ବିଧାନ ନିର୍ମାଣର ସେ ହେଲେ ବିଧାତା ।

## (ଖ) ଭାରତର ସମ୍ବିଧାନ ନିର୍ମାଣରେ ବ୍ରତୀ

୧୫ ଅଗଷ୍ଟ ୧୯୪୭ ମସିହାରେ ଭାରତ ସ୍ୱାଧୀନତା ଲାଭ କଲା । ପଣ୍ଡିତ ନେହେରୁ ଯେଉଁ ମନ୍ତ୍ରୀମଣ୍ଡଳ ଗଠନ କଲେ ସେଥିରେ ଡକ୍ଟର ଆମ୍ବେଦକର ଆଇନମନ୍ତ୍ରୀ ଭାବରେ ଯୋଗଦେଲେ । ସମ୍ବିଧାନ ସଭା ସମ୍ବିଧାନ ନିର୍ମାଣ ପାଇଁ ଯେଉଁ ଡ୍ରାଫ୍ଟିଙ୍ଗ୍ କମିଟି କଲେ, ତା'ର ହେଲେ ସେ ଅଧ୍ୟକ୍ଷ ।

ଡ୍ରାଫ୍ଟିଙ୍ଗ୍ କମିଟି ୧୪୧ ଦିନ ଏହି କାର୍ଯ୍ୟରେ ମନୋନିବେଶ କରିଥିଲେ । ୧୯୪୮ ଫେବୃୟାରୀ ୨୧ ତାରିଖ ଦିନ ଚିଠା ସମ୍ବିଧାନକୁ ଅଧ୍ୟକ୍ଷ ଶ୍ରୀ ଆମ୍ବେଦକର ସମ୍ବିଧାନ ସଭାର ସଭାପତି ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ହାତରେ ଅର୍ପଣ କଲା । ଏହି ଚିଠା ସମ୍ବିଧାନ ସମସ୍ତ ପ୍ରାଦେଶିକ ଆସେମ୍ବ୍ଲିକୁ ସେମାନଙ୍କର ମତାମତ ପାଇଁ ପଠାଗଲା । ୧୯୪୮ ନଭେମ୍ବର ୪ ତାରିଖରେ ସମ୍ବିଧାନ ସଭାରେ ଏହି ଚିଠା ସମ୍ବିଧାନକୁ ଡକ୍ଟର ଆମ୍ବେଦକର ଆଗତ କରି ସମ୍ବିଧାନର ରୂପରେଖ ସମ୍ପର୍କରେ ସୂଚନା ଦେଇ ସମ୍ବିଧାନ ସଭା ମାଧ୍ୟମରେ ଭାରତର ଲୋକମାନେ ଏହାକୁ ଅନୁମୋଦନ କରିବାକୁ ସେ ଉପସ୍ଥାପିତ କରି କହିଲେ, "ଦେଶକୁ ପ୍ରାରମ୍ଭିକ ଭାବରେ ଚଳାଇବାକୁ ଏହା ଏକ ଉତ୍ତମ ପ୍ରଚେଷ୍ଟା ।"

"ସଭାପତି ମହାଶୟ; ମୁଁ ଡ୍ରାଫ୍ଟିଙ୍ଗ୍ କମିଟି ଦ୍ୱାରା ନିର୍ଦ୍ଧାରିତ ହୋଇଥିବା ଚିଠା ସମ୍ବିଧାନ ବିଚାର ପାଇଁ ଉପସ୍ଥାପିତ କରୁଛି ।"

ଏହି ଚିଠା ସମ୍ବିଧାନ ଯାହାକୁ ଡ୍ରାଫ୍ଟିଂ କମିଟି ପ୍ରସ୍ତୁତ କରିଛି ବଡ଼ ଦୁର୍ଜ୍ଜୟ ଦସ୍ତାବିଜ । ଏଥିରେ ୩୧୫ ଅନୁଚ୍ଛେଦ (article) ଓ ୮ ଅନୁସୂଚୀ (schedule) ରହିଛି । ଏହା ସ୍ୱୀକାର୍ଯ୍ୟ ଯେ କୌଣସି ଦେଶର ସମ୍ବିଧାନ ଭାରତର ଏହି ଚିଠା ସମ୍ବିଧାନ ପରି ବୃହତ କଳେବର ନୁହେ । ଯେଉଁମାନେ ଏହାକୁ ଭଲଭାବରେ

ଅନୁଧାନ କରିନାହାନ୍ତି, ସେମାନ ଏହି ସମ୍ବିଧାନର ପ୍ରମୁଖ ଓ ବିଶେଷ ବୈଶିଷ୍ଟ୍ୟ ହୃଦୟଙ୍ଗମ କରିପାରିବେ ନାହିଁ ।

ଏହି ଚିଠା ସମ୍ବିଧାନ ସର୍ବସାଧାରଣଙ୍କ ଗୋଚରାର୍ଥେ ଦୀର୍ଘ ୮ ମାସ ଧରି ରଖାଯାଇଛି । ଏହି ଦୀର୍ଘ ସମୟ ମଧ୍ୟରେ ବନ୍ଧୁ, ସମାଲୋଚକ, ବିରୋଧିମାନେ ବହୁ ସମୟ ଦେଇ ସେମାନଙ୍କର ପ୍ରତିକ୍ରିୟା ଏଥିରେ ଥିବା ବ୍ୟବସ୍ଥା ସମ୍ପର୍କରେ ପ୍ରକାଶ କରିଛନ୍ତି । ମୁଁ ଦୃଢ଼ଭାବରେ କହିପାରେ ଯେ ସେଥିରୁ କେତେକ ଭୁଲ ବୁଝାମଣାରୁ ସୃଷ୍ଟି ଏବଂ ଅନ୍ୟ କେତେକ ଅନୁଚ୍ଛେଦ ସମ୍ପର୍କିତ ଆବଶ୍ୟକୀୟ ବୁଝାମଣାର ଅଭାବ । କିନ୍ତୁ ସେମାନଙ୍କର ସେହି ସମାଲୋଚନା ରହିଛି ଏବଂ ସେମାନଙ୍କୁ ଉତ୍ତର ଦେବାକୁ ହେବ ।

ଏହି ଉଭୟ କାରଣରୁ ଏହା ଆବଶ୍ୟକ ଯେ ପ୍ରସ୍ତାବ ବିଚାର ପାଇଁ ଯିବାବେଳେ, ମୁଁ ଏହାର ବୈଶିଷ୍ଟ୍ୟ ପ୍ରତି ଆପଣଙ୍କର ଦୃଷ୍ଟି ଆକର୍ଷଣ କରୁଛି ଏବଂ ଯେଉଁ ସମାଲୋଚନା ଏହା ଉପରେ ଲଦାଯାଇଛି, ତାର ମୁକାବିଲା କରାଯାଇଛି ।

ସମ୍ବିଧାନ ଆଇନର ଛାତ୍ର ହାତରେ ଯଦି ଏହି ସମ୍ବିଧାନର ଏକ କିତା ନକଲ ଦିଆଯାଏ, ତେବେ ସେ ନିଶ୍ଚୟ ଦୁଇଟି ପ୍ରଶ୍ନ ପଚାରିବେ । ପ୍ରଥମତଃ ଏହି ସମ୍ବିଧାନରେ କି ପ୍ରକାର ସରକାର ସଂଘୀୟ ସମ୍ପର୍କରେ ମନନ କରାଯାଇଛି ଏବଂ ଦ୍ୱିତୀୟରେ ସମ୍ବିଧାନର ରୂପରେଖ କ'ଣ ? କାରଣ ଏହି ଦୁଇଟି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ଯାହାକୁ ପ୍ରତ୍ୟେକ ସମ୍ବିଧାନ ବିଚାରକ ପଚାରିବେ । ମୁଁ ଏହି ଦୁଇଟି ପ୍ରଶ୍ନରୁ ପ୍ରଥମରୁ ହିଁ ଆରମ୍ଭ କରିବି ।

ଚିଠା ସମ୍ବିଧାନରେ, ଭାରତୀୟ ସଂଘର ମୁଖ୍ୟ ପୁରୋଧାଙ୍କୁ ଭାରତୀୟ ସଂଘର ରାଷ୍ଟ୍ରପତି ଭାବରେ ଆମେରିକାର ରାଷ୍ଟ୍ରପତିଙ୍କ ପରି କୁହାଯାଇଛି । କେବଳ ନାମଟି ପରସ୍ପର ସହିତ ସମାନ ହେଲେ ହେଁ, ସେମାନଙ୍କ ମଧ୍ୟରେ ଆମେରିକାର ସରକାରର ରୂପ ବା ଭାରତୀୟ ବା ଭାରତୀୟ ଚିଠା ସମ୍ବିଧାନର ରୂପ ସମ୍ପର୍କରେ ଅନ୍ୟ କୌଣସି ସାମଞ୍ଜସ୍ୟ ନାହିଁ । ଆମେରିକାରେ ଯେଉଁ ସରକାରୀ ରୂପ ରହିଛି, ତାହା ରାଷ୍ଟ୍ରପତି ପ୍ରଧାନ ସରକାର । ଚିଠା ସମ୍ବିଧାନ ଯାହା ପ୍ରସ୍ତାବ ରଖିଛି ତାହା ହେଉଛି ଗଣତାନ୍ତ୍ରିକ ବ୍ୟବସ୍ଥା । ତେଣୁ ଉଭୟ ମୌଳିକଭାବେ ତଫାତ୍ ଅଟନ୍ତି ।

ଆମେରିକାର ରାଷ୍ଟ୍ରପତି ଶାସନ ବ୍ୟବସ୍ଥାରେ ରାଷ୍ଟ୍ରପତି ଶାସନ ମୁଖ୍ୟ । ସମ୍ବିଧାନରେ ସମସ୍ତ ଶାସନଗତ ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ । ବ୍ରିଟିଶ ସମ୍ବିଧାନରେ

ରାଣୀଙ୍କର ସ୍ଥିତି ଯାହା, ଚିଠା ସମ୍ବିଧାନରେ ରାଷ୍ଟ୍ରପତି ସେହି ସ୍ଥାନ ମଣ୍ଡନ କରନ୍ତି । ସେ ରାଷ୍ଟ୍ରର ମୁଖ୍ୟ କିନ୍ତୁ ଶାସନର ମୁଖ୍ୟ ନୁହନ୍ତି । ସେ ରାଷ୍ଟ୍ରର ପ୍ରତିନିଧିତ୍ୱ କରନ୍ତି କିନ୍ତୁ ରାଷ୍ଟ୍ରକୁ ଶାସନ କରନ୍ତି ନାହିଁ ।

ଆମ୍ବେଦକର ଆମେରିକାର ରାଷ୍ଟ୍ରପତି ଶାସନ ବ୍ୟବସ୍ଥା ସହିତ ତୁଳନା କରି କହିଲେ ଯେ ଏକ ଗଣତାନ୍ତ୍ରିକ କାର୍ଯ୍ୟନିର୍ବାହୀ (democratic executive) ଦୁଇଟି ଅବସ୍ଥାକୁ ପୂରଣ କରୁଥିବା ଆବଶ୍ୟକ ।

୧- ଏହା ଏକ ସ୍ଥାୟୀ କାର୍ଯ୍ୟନିର୍ବାହୀ ହୋଇଥିବ ।

୨- ଏହା ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟନିର୍ବାହୀ ହୋଇଥିବ ।

କିନ୍ତୁ ଦୁର୍ଭାଗ୍ୟ ବଶତଃ ଏ ପର୍ଯ୍ୟନ୍ତ ସମାନୁପାତିକ ଭାବେ ଉଭୟ ଅବସ୍ଥାକୁ ପୂରଣ କରୁଥିବା ବ୍ୟବସ୍ଥା ଏ ପର୍ଯ୍ୟନ୍ତ ବାହାରି ପାରିନଥିବାରୁ ଚିଠା ସମ୍ବିଧାନ ଲୋକ ପ୍ରତିନିଧିମୂଳକ କାର୍ଯ୍ୟନିର୍ବାହୀ ପ୍ରସ୍ତାବକୁ ଗ୍ରହଣ କରିଛି କାରଣ ଏହାର ସ୍ଥାୟିତ୍ୱ କମ୍ ହେଲେ ମଧ୍ୟ ଏହାର ଦାୟିତ୍ୱ ବେଶି ।

ଏହାପରେ ଆମ୍ବେଦକର ଭାରତୀୟ ସଂଘୀୟ ଅବସ୍ଥାର ରୂପ, କେନ୍ଦ୍ର ରାଜ୍ୟ ସମ୍ପର୍କ, ସଂଖ୍ୟାଲଘୁମାନଙ୍କର ସୁରକ୍ଷା ଇତ୍ୟାଦି ସମ୍ପର୍କରେ ବୁଝାଇ ଥିଲେ । ସମ୍ବିଧାନରେ ଥିବା ମୌଳିକ ଅଧିକାର (fundamental right), ରାଷ୍ଟ୍ରରେ ନିର୍ଦ୍ଦେଶନୀତି(directive principles of state policy), ଭାରତୀୟ ସଂଘୀୟ ବ୍ୟବସ୍ଥାର ନାମତାଲିକା (Nomenclature of the Indian Federation) ଏବଂ ସମ୍ବିଧାନର ସଂଶୋଧନ ଇତ୍ୟାଦିର ଉତ୍ତର ଦେଇ ତାଙ୍କର ଐତିହାସିକ ଭାଷଣ ଶେଷ କରିବା ପୂର୍ବରୁ କହିଲେ,

"ମୁଁ ବିଶ୍ୱାସ କରୁଛି ଯେ ଚିଠା ସମିତି (drafting committee) ଦ୍ୱାରା ନିର୍ଦ୍ଧାରିତ ହୋଇଥିବା ଚିଠା ସମ୍ବିଧାନ ଉପରେ ଯେଉଁ ସବୁ ଆଲୋଚନା ହୋଇଥିଲା, ମୁଁ ତାର ବିଶଦ ଆଲୋଚନା କରିଛି । ମୁଁ ଭାବୁଛି ଯେ ମୁଁ କୌଣସି ଗୁରୁତ୍ୱପୂର୍ଣ୍ଣ ସମାଲୋଚନା ବା ମତ (comment)କୁ ଛାଡିନାହିଁ ଯାହା ଦୀର୍ଘ ୮ ମାସ ମଧ୍ୟରେ କରାଯାଇଛି ଯେଉଁ ସମୟରେ ସମ୍ବିଧାନକୁ ସର୍ବସାଧାରଣଙ୍କ ସମ୍ମୁଖରେ ରଖାଯାଇଛି । ବର୍ତ୍ତମାନ ଏହା ସମ୍ବିଧାନ ସଭାର ନିଷ୍ପତ୍ତି ଉପରେ ନିର୍ଭର କରେ । ସେମାନେ ଏହାକୁ ଚିଠା ସମିତି (drafting committe) ଯାହ

ନିର୍ଦ୍ଧାରିତ କରିଛନ୍ତି, ତାକୁ ଗ୍ରହଣ କରିପାରିନ୍ତି କିମ୍ବା ଗ୍ରହଣ କରିବା ପୂର୍ବରୁ ଏଥିରେ ଆବଶ୍ୟକୀୟ ସଂଶୋଧନ କରିପାରନ୍ତି ।''

''କିନ୍ତୁ ଆହୁରି ମଧ ମୁଁ କହିବାକୁ ଚାହେଁ ଯେ ଏହି ସମ୍ବିଧାନ ଭାରତର କେତେଗୁଡ଼ିଏ ପ୍ରାଦେଶିକ ସଭାମାରେ ଆଲୋଚିତ ହୋଇଛି । ଏହା ବମ୍ବେ, କେନ୍ଦ୍ରୀୟ ପ୍ରଦେଶ, ପଶ୍ଚିମବଙ୍ଗ, ବିହାର, ମାନ୍ଦ୍ରାଜ ଓ ପୂର୍ବ ପଞ୍ଜାବରେ ଆଲୋଚିତ ହୋଇଛି । କେତେକ ପ୍ରାଦେଶିକ ସଭାରେ ସମ୍ବିଧାନରେ ଥିବା ଆର୍ଥିକ ଅବସ୍ଥା ସମ୍ପର୍କରେ ଅତି ଗୁରୁତ୍ୱପୂର୍ଣ୍ଣ ଆପତ୍ତି କରାଯାଇଛି ଏବଂ ମାନ୍ଦ୍ରାଜରେ ୨୨୬ ଅନୁଚ୍ଛେଦକୁ ମଧ (Article 226) । କିନ୍ତୁ ଏହା ବ୍ୟତୀତ, କୌଣସି ପ୍ରାଦେଶିକ ସଭା ସମ୍ବିଧାନର ଅନୁଚ୍ଛେଦ ସମ୍ପର୍କରେ କିଛି ଆପତ୍ତି କରିନାହାନ୍ତି । କୌଣସି ସମ୍ବିଧାନ ସ୍ୱୟଂସମ୍ପୂର୍ଣ୍ଣ ନୁହେ ଏବଂ ଚିଠା ସମିତି ମଧ ଚିଠା ସମ୍ବିଧାନରେ କେତେକ ସଂଶୋଧନ (amendment) ପାଇଁ ପ୍ରସ୍ତାବ କରିଛି । କିନ୍ତୁ ପ୍ରାଦେଶିକ ସଭାମାନଙ୍କରେ ହୋଇଥିବା ତାର୍କିକ (debate) ଆଲୋଚନା ମତେ ସାହସ ଦେଇଛି ଯେ ଚିଠାସମିତି ଦ୍ୱାରା ନିର୍ଦ୍ଧାରିତ ହୋଇଥିବା ସମ୍ବିଧାନ ମୋଟା ମୋଟି ପ୍ରାରମ୍ଭିକ ଦେଶ ପରିଚାଳନା ପାଇଁ ଉପଯୁକ୍ତ ।''

''ମୁଁ ଅନୁଭବ କରୁଛି ଯେ ଏହା କାର୍ଯ୍ୟକ୍ଷମ, ନମନୀୟ ଏବଂ ବଳିଷ୍ଠ ଯାହା ଏ ରାଷ୍ଟ୍ରକୁ ଶାନ୍ତି ଓ ଯୁଦ୍ଧ ସମୟରେ ଧରି ରଖିବାକୁ ସମର୍ଥ ହେବ । ଅପରନ୍ତୁ, ଯଦି ମୁଁ କହେ ଯେ ଯଦି ନୂତନ ସମ୍ବିଧାନରେ କିଛି ଭୁଲଭ୍ରାନ୍ତି ଘଟେ, ତା'ର କାରଣ ଆମ୍ଭେମାନେ ଏକ ମନ୍ଦ ସମ୍ବିଧାନ ଗ୍ରହଣ କରିଛନ୍ତି ବୋଲି ନୁହେ ବରଂ ଆମକୁ କହିବାକୁ ହେବ ଯେ ମଣିଷମାନେ ନୀଚ ।''

''ଚାଲନ୍ତୁ ବର୍ତ୍ତମାନ ଦେଖିବା କିପରି ଭାବରେ ସମ୍ବିଧାନର ବିଭିନ୍ନ ଅନୁଚ୍ଛେଦ ସମ୍ବିଧାନ ସଭାଦ୍ୱାରା ପରିଶେଷରେ ନିର୍ମିତ ହୋଇଛି । ଏଠାରେ ଆମେ କେବଳ ଆମର ଦୃଷ୍ଟି କୋଣକୁ ସମ୍ବିଧାନରେ କେତେଗୁଡ଼ିଏ ଗୁରୁତ୍ୱପୂର୍ଣ୍ଣ ବୈଶିଷ୍ଟ୍ୟ ପ୍ରତି ଦୃଷ୍ଟି ଦେବା : ଯଥା - ଉଦ୍ଦେଶିକା (Preamble) ଭାରତ ଏକ ରାଷ୍ଟ୍ର ସଂଘ, ମୌଳିକ ଅଧିକାର ଓ ରାଷ୍ଟ୍ରର ନିର୍ଦ୍ଦେଶକ ନୀତି (directive principle of state policy) ।''

ସମ୍ବିଧାନର ଉଦ୍ଦେଶିକାରେ କୁହାଯାଇଥିବା ବାକ୍ୟ, ଆମ୍ଭେ ଭାରତର ଜନଗଣ(we, the people of India)କୁ କେତେକ ବିରୋଧ କରିବାର

ଉତ୍ତର ଦେଇ ଡକ୍ଟର ଆମ୍ବେଦକର କହିଲେ, ''ବିତର୍କର ବିନ୍ଦୁ ହେଉଛି ଯେ ଏହି ସମ୍ବିଧାନ ଜନସାଧାରଣଙ୍କ ଠାରୁ ନିସୃତ ହୋଇଛି କି ନାହିଁ ? ମୁଁ କହୁଛି, ଏହା ହୋଇଛି । ମୁଁ ବ୍ୟକ୍ତିଗତ ଭାବେ ବୁଝିପାରୁନାହିଁ ଯେ ଯଦି ଜଣେ ବ୍ୟକ୍ତି ସମ୍ପୂର୍ଣ୍ଣଭାବେ ବିଦ୍ୟାଭିମାନୀ ନ ହୋଇଥାଏ, ତେବେ ୨୯୨ ସଭ୍ୟ ବିଶିଷ୍ଟ ସଭା, ଯାହା ଏହି ବିଶାଳ ଉପମହାଦେଶକୁ ପ୍ରତିନିଧିତ୍ୱ କରୁଛି, ସେମାନଙ୍କର ପ୍ରତିନିଧିତ୍ୱ କ୍ଷମତା ବଳରେ କହିପାରୁନାହାନ୍ତି ଯେ ସେମାନେ ଏହି ରାଷ୍ଟ୍ରର ଜନଗଣଙ୍କ ନାମରେ କାର୍ଯ୍ୟ କରୁଛନ୍ତି ।''

''ମୁଁ କହୁଛି ଯେ ଏହି ଉଦ୍ଦେଶିକା ଏହି ଗୃହର ସମସ୍ତ ସଭ୍ୟର ଇଚ୍ଛାକୁ ରୂପାୟିତ କରୁଛି ଯେ ସମ୍ବିଧାନର ମୂଳ, ପ୍ରାଧିକାର (authority), ସାର୍ବଭୌମତ୍ୱ ଜନସାଧାରଣଙ୍କ ଠାରୁ ଆସିଛି । ତେଣୁ, ମୁଁ ଏହାର ସଂଶୋଧନକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହେ ।''

ଏହି ଉଦ୍ଦେଶିକା ସମ୍ବିଧାନର ଭାବକୁ ଅତ୍ୟନ୍ତ ବିଚକ୍ଷଣଭାବେ ବ୍ୟକ୍ତ କରିଛି ଏବଂ ଭାରତୀୟ ଜନସାଧାରଣଙ୍କର ରାଷ୍ଟ୍ରର ଏକାତାକୁ ରକ୍ଷା କରିବାର ଦୃଢ଼ତାକୁ ସନ୍ନିବଷ୍ଟ କରିପାରିଛି ।

ଭାରତ - ରାଜ୍ୟମାନଙ୍କର ସଂଘ ଚିଠା ସମ୍ବିଧାନରେ ଉଲ୍ଲେଖ ଥିବାରୁ ତାହାର ସଂଶୋଧନ କରି ଏହାକୁ ମହାସଂଘ (ଫେଡେରେସନ) ନାମରେ ନାମିତ କରିବା ପାଇଁ କରାଯାଇଥିବା ପ୍ରସ୍ତାବ ସମ୍ପର୍କରେ ଉଲ୍ଲେଖ କରି ସେ କହିଲେ, ''ଯଦିଓ ଚିଠା ସମିତି ପରିଷ୍କାର କରି କହେଯେ ଭାରତ ଏକ ଫେଡେରେସନ୍ (ମହାସଂଘ) ହେବ କିନ୍ତୁ ଏହି ମହାସଂଘ କୌଣସି ଚୁକ୍ତିନାମା ଦ୍ୱାରା ରାଜ୍ୟଗୁଡିକର ଏହି ମହାସଂଘରେ ଯୋଗଦାନ କରିବାରୁ ହୋଇନାହିଁ ଏବଂ ମହାସଂଘ ଚୁକ୍ତିନାମାର ଫଳ ସ୍ୱରୂପ ନୁହେ । କୌଣସି ରାଜ୍ୟ ଏଥିରୁ ପୃଥକ୍ ହୋଇପାରିବ ନାହିଁ । ମହାସଂଘ ହେଉଛି ଗୋଟିଏ ସଂଘ କାରଣ ଏହା ଲୋପ ପାଇବନାହିଁ ।''

ଠିକ୍ ସେହିପରି କେତେକ ସଭ୍ୟଙ୍କର ପ୍ରସ୍ତାବ ଥିଲା ଯେ ଏଥିରେ ଧର୍ମ ନିରପେକ୍ଷ(secular) ସଂଘ (federal) ସାମ୍ୟ (socialist) ଇତ୍ୟାଦିକୁ ରାଜ୍ୟସଙ୍ଘ(union of states) ପୂର୍ବରୁ ଉଲ୍ଲେଖ କରାଯାଉ । ଡକ୍ଟର ଆମ୍ବେଦକର ଏହି ସମ୍ବିଧାନକୁ ବିରୋଧ କରି କହିଲେ ଯେ ଲୋକମାନଙ୍କୁ କି ପ୍ରକାର ସମାଜ ବ୍ୟବସ୍ଥାରେ ରହିବାକୁ ହେବ, ସେଥିରେ ବାନ୍ଧି ଦିଆଯାଇପାରିବ

ନାହିଁ । ସେ କହିଲେ, "ଗୋଟିଏ ସମ୍ବିଧାନ ରାଷ୍ଟ୍ରର ବିଭିନ୍ନ ଅଙ୍ଗଗୁଡିକୁ କି ପ୍ରକାର ଭାବରେ ନିୟନ୍ତ୍ରଣ କରିବ, ତାହାର ଯନ୍ତ୍ର । ଏହା କାର୍ଯ୍ୟଭାର ଗ୍ରହଣ କରୁଥିବା ବ୍ୟକ୍ତି ବା ଦିନମାନଙ୍କର ଯନ୍ତ୍ର ବିଶେଷ ନୁହେ ।"

ଅନ୍ୟକେତେକଙ୍କର ସଂଶୋଧନ ଥିଲା ଇଣ୍ଡିଆ ନାମକୁ ପରିବର୍ତ୍ତନ କରି ଭାରତ ବା ଭାରତବର୍ଷ ବା ହିନ୍ଦୁସ୍ଥାନ ରଖାଯାଉ । କାରଣ ବହୁ ସଭ୍ୟଙ୍କର ମତ ଥିଲା ନୂତନ ସମ୍ବିଧାନରେ ଇଣ୍ଡିଆ ତାର ପ୍ରାଚୀନ ନାମ ବହନ କରୁ । ୧୯୪୮ ନଭେମ୍ବର ୧୭ ତାରିଖରେ ଆମ୍ବେଦକର ଏକ ସଂଶୋଧନ ପ୍ରସ୍ତାବ ଆଣି କହିଲେ, "India that is Bharat shall be a union of states," ଏହା ସମ୍ବିଧାନ ସଭା ଦ୍ୱାରା ଗୃହୀତ ହେଲା ।

ସମ୍ବିଧାନ ସଭାରେ ମୌଳିକ ଅଧିକାର (fundamental rights) ସମ୍ପର୍କରେ ଆଲୋଚନା ଆରମ୍ଭ ହେଲା । ସେ ନିଜର ମତରଖି କହିଲେ, "ମୌଳିକ ଅଧିକାରର ଉଦ୍ଦେଶ୍ୟ ହେଉଛି ପ୍ରଥମତଃ ସମସ୍ତ ନାଗରିକ ମାନେ ଏହି ଅଧିକାର ପାଇବାକୁ ଦାବି କରିପାରିବେ । ଦ୍ୱିତୀୟତଃ ସମସ୍ତ ପ୍ରକାର ପ୍ରାଧିକାର (authoroity) ମାନଙ୍କୁ ଆଇନତଃ ବାଧ କରିବ । ଏଠାରେ ବର୍ତ୍ତମାନ ମୁଁ ପ୍ରାଧିକାର କହିଲେ କ'ଣ ବୁଝାଯାଏ, ତାହା ବ୍ୟାଖ୍ୟା କରିବି । ଯେଉଁ ପ୍ରାଧିକାରମାନେ ଆଇନ ତିଆରି କରିବାର ଅଧିକାର ପାଇବେ, ବା ଯେଉଁମାନଙ୍କ ପରେ ବିବେକ ଭାବରେ କ୍ଷମତା ପ୍ରୟୋଗ କରିବା ନ୍ୟସ୍ତ ରହିବ । ତେଣୁ, ଏହା ପରିଷ୍କାର ଯେ ଯଦି ମୌଳିକ ଅଧିକାର ପରିଷ୍କୃତ ରହେ, ତେବେ ତାହା କେନ୍ଦ୍ର ସରକାରଙ୍କୁ ଆବଦ୍ଧ କରିବ, ତାହା ରାଜ୍ୟ ସରକାରଙ୍କୁ ଆବଦ୍ଧ କରିବ, କେବଳ ଭାରତୀୟ ରାଜ୍ୟମାନଙ୍କରେ ପ୍ରତିଷ୍ଠିତ ସରକାରକୁ ଆବଦ୍ଧ କରିବ ନାହିଁ, ସେଗୁଡିକ ଜିଲ୍ଲାବୋର୍ଡ, ମ୍ୟୁନିସିପାଲଟି ଏପରିକି ଗ୍ରାମ ପଞ୍ଚାୟତ, ତାଲୁକବୋର୍ଡ, ଏପରିକି ଆଇନ୍‌ଦ୍ୱାରା ଆଇନ୍ ତିଆରି କରିବା ପାଇଁ ପାଇଥିବା କ୍ଷମତା, ଆଇନ, ଉପ ଆଇନ ଗଠିତ ସମସ୍ତ ପ୍ରକାର ପ୍ରାଧିକାରକୁ ଆବଦ୍ଧ କରିବ ।" ସମ୍ବିଧାନର ମୌଳିକ ଅଧିକାର ସମ୍ପର୍କିତ ସମସ୍ତ ସମାଲୋଚନାର ଉତ୍ତର ଦେଇ ସେ କହିଥିଲେ, "ମୋତେ ଦୁଃଖର ସହିତ କହିବାକୁ ହେଉଛି ଯେ ମୌଳିକ ଅଧିକାର ସମ୍ପର୍କରେ ସମସ୍ତ ସମାଲୋଚନା ଭ୍ରାନ୍ତ ଧାରଣା ଉପରେ ପର୍ଯ୍ୟବସିତ । ପ୍ରଥମେ ମୌଳିକ ଅଧିକାର ଥିବା ଓ ମୌଳିକ ଅଧିକାର ନଥିବା ମଧ୍ୟରେ ପୃଥକୀକରଣ ଉପରେ ସମାଲୋଚନା ଠିକ୍ ନୁହେ । ଏହା କହିବା ଆଦୌ ସଠିକ୍ ନୁହେ ଯେ ମୌଳିକ

ଅଧିକାର ନିରଙ୍କୁଶ ଯେତେବେଳେ ମୌଳିକ ଅଧିକାର ନଥିବା ଅଧିକାର ନିରଙ୍କୁଶ ନୁହେ । ଏମାନଙ୍କ ମଧ୍ୟରେ ପ୍ରକୃତ ପାର୍ଥକ୍ୟ ହେଉଛି ଯେ ଯେଉଁ ଗୁଡିକ ମୌଳିକ ଅଧିକାର ନୁହେ, ସେଗୁଡିକ ଦ୍ୱିପାକ୍ଷିକ ଚୁକ୍ତି (agreement) ଦ୍ୱାରା ଗଠିତ ହୋଇଥିବାବେଳେ ମୌଳିକ ଅଧିକାର ଗୁଡିକ ଆଇନ୍‌ର ଦାନ । ଯେହେତୁ ମୌଳିକ ଅଧିକାର ରାଷ୍ଟ୍ରର ଦାନ, ତେଣୁ କୁହାଯିବ ନାହିଁ ଯେ ରାଷ୍ଟ୍ର ସେଥିପାଇଁ ଯୋଗ୍ୟ ନୁହେ ।''

ସମ୍ବିଧାନ ସଭା ସମ୍ବିଧାନ ବିଲ୍‌ର ତୃତୀୟ ପାଠ ୧୯୪୯ ନଭେମ୍ବର ୧୭ ତାରିଖରେ ଆରମ୍ଭ କଲେ । ୯ ଦିନ ଧରି ଏ ସମ୍ପର୍କରେ ବିତର୍କ ଚାଲିବାପରେ ଆମ୍ବେଦକର ୨୫ ତାରିଖ ଦିନ ଏହାର ଉତ୍ତର ଦେଲେ । ତାଙ୍କୁ ଦେଶର ସେବା କରିବା ପାଇଁ ଏପରି ସୁଯୋଗ ଦିଆଯାଇଥିବାରୁ ସଭାକୁ ଧନ୍ୟବାଦ ଦେଇ ସେ କହିଲେ ''ସମ୍ବିଧାନ ସଭାର କାର୍ଯ୍ୟର ପଶ୍ଚାତ୍ ଦୃଷ୍ଟି କଲେ ଦେଖାଯାଏ ଆରମ୍ଭ ହେବା ଦିନଠୁଁ ଏଯାଏଁ ବର୍ତ୍ତମାନ ଏହା ଦୁଇବର୍ଷ, ଏଗାର ମାସ ସତର ଦିନ ହେବ । ଏହି ସମୟ ମଧ୍ୟରେ ସମ୍ବିଧାନ ସଭାର ଏଗାର ଥର ଅଧିବେଶନ ହୋଇଛି । ଏହି ଏଗାର ଗୋଟି ଅଧିବେଶନ ମଧ୍ୟରୁ ପ୍ରଥମ ଛଅଗୋଟି ଅଧିବେଶନରେ ଉଦ୍ଦେଶ୍ୟ ସମ୍ପର୍କିତ ପ୍ରସ୍ତାବ ପାଳିତ କରିବାରେ ଯାଇଛି । ଏଥି ସହିତ ମୌଳିକ ଅଧିକାର, ସଂଘୀୟ ସମ୍ବିଧାନ, ସଂଘୀୟ କ୍ଷମତା, ପ୍ରାଦେଶିକ ସମ୍ବିଧାନ, ସଂଖ୍ୟାଲଘୁ ଏବଂ ଅନୁସୂଚିତ ଅଞ୍ଚଳ, ଅନୁସୂଚିତ ଜନଜାତିର ସମିତି ମାନଙ୍କର ରିପୋର୍ଟ ସମ୍ପର୍କରେ ମଧ୍ୟ ଆଲୋଚନା ହୋଇଛି । ସପ୍ତମ, ଅଷ୍ଟମ, ନବମ, ଦଶମ ଓ ଏକାଦଶ ଅଧିବେଶନ ଚିଠା ସମ୍ବିଧାନ ପ୍ରସ୍ତାବ ବିଚାରରେ ବ୍ୟୟିତ ହୋଇଛି । ସମ୍ବିଧାନ ସଭାର ଏହି ଏଗାର ଗୋଟି ଅଧିବେଶନରେ ସମୁଦାୟ ୧୬୫ ଦିନ ବ୍ୟୟିତ ହୋଇଛି । ଏଥି ମଧ୍ୟରୁ କେବଳ ୧୧୪ ଦିନ ସଭା ଚିଠା ସମ୍ବିଧାନ ଆଲୋଚନା କରିଛି ।

୧୯୪୭ ଅଗଷ୍ଟ ମାସ ୨୯ ତାରିଖରେ ଚିଠା ସମ୍ବିଧାନ ସମିତି ନିର୍ବାଚନ ହେଲା । ଏହାର ପ୍ରଥମ ବୈଠକ ବସିଲା ଅଗଷ୍ଟ ୩୦ ତାରିଖରେ । ଏହା ୧୪୧ ଦିନ ବସି ଚିଠା ପ୍ରସ୍ତାବ ପ୍ରସ୍ତୁତ କରିବାରେ ବ୍ୟୟିତ କରିଛି । ଚିଠା ସମ୍ବିଧାନ ଯାହା ସମ୍ବିଧାନ ଉପଦେଷ୍ଟା ମାନଙ୍କ ଦ୍ୱାରା ଚିଠା ସମିତି ପାଇଁ ପ୍ରସ୍ତୁତ ହୋଇଥିଲା ସେଥିଲେ ୨୪୩ ଅନୁଚ୍ଛେଦ ଓ ୧୩ ଅନୁସୂଚୀ ରହିଥିଲା ।

ପ୍ରଥମ ଚିଠା ସମ୍ବିଧାନ ଯାହାକୁ ଚିଠା ସମିତି ଉପସ୍ଥାପିତ କରିଥିଲା, ସେଥିରେ ୩୧୫ ଅନୁଚ୍ଛେଦ ଓ ୮ ଅନୁସୂଚୀ ଥିଲା । ବିଚାର ପର୍ଯ୍ୟାୟପରେ, ଚିଠା

ସମ୍ବିଧାନ ୩୮୬କୁ ବୃଦ୍ଧି ପାଇଲା । ଏହାର ସର୍ବଶେଷ ରୂପହେଲା ଚିଠା ସମ୍ବିଧାନରେ ୩୯୫ ଅନୁଚ୍ଛେଦ ଓ ୮ ଅନୁସୂଚୀ । ଚିଠା ସମ୍ବିଧାନ ଉପରେ ସଂଶୋଧନ ପ୍ରସ୍ତାବ ଉପସ୍ଥାପିତ ହୋଇଥିଲା ୭୬୩୫ ଏବଂ ଗୃହରେ ଆଲୋଚିତ ହୋଇଥିଲା ୨୪୭୩ ।''

''ମୁଁ ଏହି ସବୁ ତଥ୍ୟ ଉପସ୍ଥାପିତ କରିବାର କାରଣ ହେଉଛି ଯେ ସଭା ଏହି କାର୍ଯ୍ୟ ଶେଷ କରିବାକୁ ବହୁ ସମୟ ନେଇଥିବାର କୁହାଯାଇଛି । ଏହା ଧୀରେ ସୁସ୍ଥେ ଚାଲିଛି ଏବଂ ଅଯଥା ଜନସାଧାରଣଙ୍କର ଅର୍ଥବ୍ୟୟ କରୁଛି । ଏହି ଅଭିଯୋଗର କୌଣସି ଯୁକ୍ତି ଅଛି କି ?''

''ଚିଠା ସମିତିର ଗୁଣାତ୍ମକ କାର୍ଯ୍ୟ ସମ୍ପର୍କରେ ଉଲ୍ଲେଖ କରି ମିଷ୍ଟର ନାଜିରୁଦ୍ଦିନ ଅହମ୍ମଦ ଏହାକୁ ସମ୍ପୂର୍ଣ୍ଣଭାବେ ନିନ୍ଦା କରିଛନ୍ତି । ତାଙ୍କ ମତରେ, ଚିଠା ସମିତି ଦ୍ୱାରା କରାଯାଇଥିବା କାର୍ଯ୍ୟ ଅଭିନନ୍ଦନ ଯୋଗ୍ୟ ହେବାତ ଦୂରର କଥା, ଅତି ନିମ୍ନମାନର । ଚିଠା ସମିତିର କରିଥିବା କାର୍ଯ୍ୟ ସମ୍ପର୍କରେ ସମସ୍ତଙ୍କର କହିବାର ଅଧିକାର ଅଛି । ମିଷ୍ଟର ନାଜିରୁଦ୍ଦିନ ଅହମ୍ମଦ ନିଜକୁ ଚିଠା ସମିତିର ଅନ୍ୟ ସଭ୍ୟମାନଙ୍କ ଠାରୁ ଅଧିକ ପ୍ରତିଭାବାନ୍ ବୋଲି ଭାବୁଛନ୍ତି । ତାଙ୍କର ଏହି ଦାବିକୁ ଚିଠା ସମିତି ଆଦୌ ଆପତ୍ତି କରିବାକୁ ଇଚ୍ଛା କରୁ ନାହାନ୍ତି । ଅପରପକ୍ଷରେ, ଚିଠା ସମିତି ତାଙ୍କୁ ତାଙ୍କ ଗଠଣରେ ପାଇଥିଲେ ସ୍ୱାଗତ କରିଥାନ୍ତେ ଯଦି ସଭା ତାଙ୍କୁ ଏହାର ସଭ୍ୟ ହେବାକୁ ଯୋଗ୍ୟ ବୋଲି ବିବେଚିତ କରି ନିଯୁକ୍ତି ପ୍ରଦାନ କରିଥା'ନ୍ତା ।''

''ମୁଁ ଆନନ୍ଦିତ ଯେ କେବଳ ଜଣେ ମାତ୍ର ସଭ୍ୟଙ୍କୁ ଛାଡିଦେଲେ, ସମଗ୍ର ସମ୍ବିଧାନ ସଭାର ସଭ୍ୟମାନଙ୍କର ସାଧାରଣ ସହମତି ରହଛି ଓ ପ୍ରଶଂସିତ ହୋଇଛି । ମୁଁ ନିଶ୍ଚିତ ଯେ ଚିଠା ସମିତି ସେମାନଙ୍କର ପରିଶ୍ରମ ପାଇଁ ଅଯାଚିତ ଭାବେ ସ୍ୱେଚ୍ଛାକୃତ ସ୍ୱୀକୃତି ଲାଭ କରିଛନ୍ତି । ମୋ ପ୍ରତି ଏହି ସଭାର ସଭ୍ୟମାନେ ଓ ମୋର ସହକର୍ମୀ ଚିଠା ସମିତିର ସଭ୍ୟମାନେ ଯେପରି ପ୍ରଶଂସା କରିଛନ୍ତି, ସେଥିରେ ମୁଁ ଅଭିଭୂତ ହୋଇପଡିଛି ଏବଂ ସେମାନଙ୍କ ପ୍ରତି କୃତଜ୍ଞତା ଜଣାଇବାକୁ ମୋ ପାଖରେ ଭାଷା ନାହିଁ । ମୁଁ ସମ୍ବିଧାନ ସଭାକୁ କେବଳ ଅନୁନ୍ନତ ଜାତିମାନଙ୍କର ସ୍ୱାର୍ଥର ସୁରକ୍ଷା କରିବା ବ୍ୟତୀତ ଅନ୍ୟ କୌଣସି ବିଶେଷ ଉଚ୍ଚାକାଂକ୍ଷା ନେଇ ଆସିନଥିଲି । ମୋର ସାମାନ୍ୟତମ ଧାରଣ ନଥିଲା ଯେ ମୋତେ ଅଧିକ ଦାୟିତ୍ୱ ସମ୍ପନ୍ନ କାର୍ଯ୍ୟ ତୁଲାଇବାକୁ ପଡିବ । ତେଣୁ ମୋତେ ଯେତେବେଳେ ଏହି ସଭା

ଚିଠା ସମ୍ବିଧାନ ସମିତିକୁ ନିର୍ବାଚିତ କଲା, ସେତେବେଳେ ଆଶ୍ଚର୍ଯ୍ୟ ହୋଇଥିଲି । ଏବଂ ତା'ଠାରୁ ଅଧିକ ଆଶ୍ଚର୍ଯ୍ୟ ହେଲି ଯେତେବେଳେ ଚିଠା ସମିତି ମୋତେ ଏହାର ଅଧକ୍ଷ ଭାବେ ନିର୍ବାଚିତ କଲେ । ଏହି ଚିଠା ସମିତିରେ ମୋ ଠାରୁ ଅଧିକ ଉନ୍ନତ, ବିଶାଳ ଏବଂ ଦକ୍ଷ ବ୍ୟକ୍ତି ଥିଲେ ଯେପରିକି ମୋର ବନ୍ଧୁ ସାର୍ ଆଲାଦି କ୍ରିଷ୍ଣସ୍ୱାମୀ ଆୟାର । ମୁଁ ସମ୍ବିଧାନ ସଭା ଓ ଚିଠା ସମିତି ନିକଟରେ କୃତଜ୍ଞ କାରଣ ସେମାନେ ମୋ ଉପରେ ସେମାନଙ୍କର ଆସ୍ଥା ଓ ବିଶ୍ୱାସକୁ ସ୍ଥାପନ କରି ମୋତେ ସେମାନଙ୍କର ମାଧମ କରିଛନ୍ତି ଏବଂ ମୋ ଦେଶର ସେବା କରିବାକୁ ମୋତେ ସୁଯୋଗ ପ୍ରଦାନ କରିଛନ୍ତି ।''

''ସମ୍ବିଧାନ ସଭାର କାର୍ଯ୍ୟବିଧି ମାନ୍ଦା ପଡିଥା'ନ୍ତା ଯଦି ସଭ୍ୟମାନେ ଦଳଗତ ଶୃଙ୍ଖଳା ପ୍ରତି ଗୁରୁତ୍ୱ ଦେଇଥାନ୍ତେ । ଦଳଗତ ଶୃଙ୍ଖଳା, ଯଦି ଦୃଢ଼ ଭାବରେ ପାଳନ ହୋଇଥାନ୍ତା, ତେବେ ଏହି ସଭାକୁ କେବଳ ସ୍ତାବକମାନଙ୍କର ଏକତ୍ରୀକରଣରେ ପରିବର୍ତ୍ତନ କରିଥାନ୍ତା । ସୌଭାଗ୍ୟକ୍ରମେ, ବିଦ୍ରୋହୀମାନେ ମଧ ଥିଲେ । ସେମାନେ ହେଲେ ମିଃ କାମାଥ, ଡକ୍ଟର ପି.ଏସ୍. ଦେଶମୁଖ, ମିଷ୍ଟର ସିଧଓ୍ୱା, ପ୍ରଫେସର ସକ୍ସେନା, ଏବଂ ପଣ୍ଡିତ ଠାକୁର ଦାସ ଭାର୍ଗବ । ଏମାନଙ୍କ ସହିତ ମଧ ଥିଲେ ପ୍ରଫେସର କେ.ଟି ଶାହା ଏବଂ ପଣ୍ଡିତ ହୃଦୟନାଥ କୁଞ୍ଜୁର । ସେମାନେ ଯେଉଁ ମତ ଉତ୍‌ଥାପନ କଲେ ସେ ଗୁଡିକ ପ୍ରାୟତଃ ଆଦର୍ଶଗତ । ମୁଁ ସେମାନଙ୍କର ସେହିସବୁ ପ୍ରସ୍ତାବକୁ ଗ୍ରହଣ କରିନାହିଁ ଯଦିଓ ସେମାନଙ୍କର ପ୍ରସ୍ତାବର ଗୁରୁତ୍ୱ ରହିଥିଲା । ସେମାନଙ୍କର ଏହି ସଭା ପ୍ରତି ସେବା ଏହାର କାର୍ଯ୍ୟସୂଚୀକୁ ଉଜ୍ଜୀବିତ କରିଛି । ମୁଁ ସେମାନଙ୍କ ପ୍ରତି କୃତଜ୍ଞ । ସେମାନଙ୍କ ବ୍ୟତିରେକେ, ମୁଁ ସମ୍ବିଧାନରେ ନିହିତ ନୀତି ପ୍ରତି ଯେପରି ବ୍ୟାଖ୍ୟା କରିବାର ସୁଯୋଗ ପାଇଛି, ତାହା ହୁଏତ ପାଇନଥାନ୍ତି ଯାହା ସମ୍ବିଧାନକୁ ଗୃହୀତ କରିବା ଯନ୍ତ୍ରଚାଳିତ କାର୍ଯ୍ୟଠାରୁ ଅଧିକ ମହତ୍ୱପୂର୍ଣ୍ଣ ।''

''ପରିଶେଷରେ, ମୁଁ ସଭାପତି ମହାଶୟ, ଆପଣଙ୍କୁ ଧନ୍ୟବାଦ ଦେବି ଯେପରି ଭାବରେ ଆପଣ ଏହି ସଭାର କାର୍ଯ୍ୟସୂଚୀକୁ ପରିଚାଳନା କଲେ । ଯେଉଁ ସଭ୍ୟମାନେ ଏହି ସଭାର କାର୍ଯ୍ୟସୂଚୀରେ ଅଂଶଗ୍ରହଣ କଲେ, ସେମାନଙ୍କ ପ୍ରତି ଆପଣ ଯେପରି ସଦିଚ୍ଛା ଓ ସହଯୋଗ ପ୍ରଦର୍ଶନ କରିଛନ୍ତି ତାହା ମଧ ଭୁଲି ହେବ ନାହିଁ । ଏପରି ମଧ ପରିସ୍ଥିତି ଉପୁଜିଛି ଯେତେବେଳେ ଚିଠା ସମିତିର ସଂଶୋଧନ ପ୍ରସ୍ତାବକୁ ପ୍ରାୟୋଗିକ ତ୍ରୁଟି କାରଣରୁ ଖାରଜ କରିଦେବାକୁ ଚେଷ୍ଟା ହୋଇଛି ।

ମୋ ପାଇଁ ଅନେକ ବିଚଳିତ ସମୟ ମଧ୍ୟ ଆସିଛି । ସେଥିପାଇଁ ମୁଁ ବିଶେଷଭାବେ, ଆପଣଙ୍କ ନିକଟରେ କୃତଜ୍ଞ କାରଣ ଆପଣ ଅତ୍ୟଧିକ ଆଇନଜ୍ଞଙ୍କୁ ପ୍ରଶ୍ରୟ ଦେଇ ସମ୍ବିଧାନ ପ୍ରଣୟନ କାର୍ଯ୍ୟରେ ବାଧା ସୃଷ୍ଟି କରିବାକୁ ଅନୁମତି ଦେଇନାହାଁନ୍ତି ।''

''କୌଣସି ସମ୍ବିଧାନର କାର୍ଯ୍ୟକାରିତା ସମ୍ବିଧାନର ସ୍ୱରୂପ ଉପରେ ପୂର୍ଣ୍ଣ ନିର୍ଭର କରେ ନାହିଁ । ସମ୍ବିଧାନ କେବଳ ରାଷ୍ଟ୍ରପାଇଁ ଏକ ମୁଖପତ୍ର । ଯେପରି ବିଧାନମଣ୍ଡଳ, କାର୍ଯ୍ୟ ନିର୍ବାହକ ଓ ନ୍ୟାୟପାଳିକା । ରାଷ୍ଟ୍ରର ଏହି ମୁଖପତ୍ର ଗୁଡ଼ିକର କାର୍ଯ୍ୟକାରିତାର ଗୁଣନୀୟକ ଲୋକମାନଙ୍କ ଉପରେ ନିର୍ଭର କରେ ଏବଂ ସେମାନଙ୍କ ଦ୍ୱାରା ସେମାନଙ୍କର ଆଶା ଓ ନୀତିକୁ କାର୍ଯ୍ୟକାରୀ କରିବାର ମାଧ୍ୟମ ହେଉଥିବା ରାଜନୈତିକ ଦଳ ମାନଙ୍କ ଉପରେ ନିର୍ଭର କରେ । କିଏ କହିପାରିବ ଭାରତବର୍ଷର ଲୋକେ ଓ ରାଜନୈତିକ ଦଳମାନେ କିପରି ବ୍ୟବହାର କରିବେ ? ସେମାନେ ସେମାନଙ୍କର ଉଦ୍ଦେଶ୍ୟ ସାଧନ ପାଇଁ ସାମ୍ବିଧାନିକ ପ୍ରଣାଳୀର ସୁରକ୍ଷା କରିବେ କି ନାହିଁ କିମ୍ବା ସେମାନେ ବିପ୍ଳବାତ୍ମକ ପନ୍ଥାରେ ସେଗୁଡ଼ିକୁ ହାସଲ କରିବା ପାଇଁ ଚେଷ୍ଟା କରିବେ ? ଯଦି ସେମାନେ ବିପ୍ଳବାତ୍ମକ ପନ୍ଥା ଗ୍ରହଣ କରନ୍ତି, ସମ୍ବିଧାନ ଯେତେ ଉପଯୁକ୍ତ ହେଲେ ମଧ୍ୟ, ଏଥିପାଇଁ କେହି ଦିଗ୍‌ଦ୍ରଷ୍ଟାର କହିବାକୁ ଆବଶ୍ୟକ ପଡ଼ିବ ନାହିଁ ଯେ ଏହା ବିଫଳ ହେବ । ତେଣୁ କୁହାଯାଇପାରେ ଯେ, ଭାରତର ଜନସାଧାରଣ ଓ ସେମାନଙ୍କର ରାଜନୈତିକ ଦଳମାନେ କିପରି ଭୂମିକା ନେବେ ତାକୁ ବିଚାରକୁ ନନେଇ ସମ୍ବିଧାନ ସମ୍ପର୍କରେ କୌଣସି ବିଚାର ରଖିବା ନିରର୍ଥକ ।''

ତାଙ୍କର ବକ୍ତବ୍ୟକୁ ଆଗକୁ ବଢ଼ାଇ ଭାରତୀୟ ସମ୍ବିଧାନର ପ୍ରଣେତା ଡକ୍ଟର ଆମ୍ବେଦକର କହିଲେ, ''ଏଠାରେ ମୁଁ ଆଉ କିଛି ଯୋଗ କରିପାରେ । କିନ୍ତୁ ମୋର ମନ ଆମ ଦେଶର ଭବିଷ୍ୟତ ଚିନ୍ତାରେ ପୂର୍ଣ୍ଣ । ତେଣୁ ମୁଁ ଅନୁଭବ କରୁଛି ଯେ ମୋର ଭାବନାର ପ୍ରତିଛବିକୁ ମୁଁ ବ୍ୟକ୍ତ କରିବି । ଜାନୁୟାରୀ ୨୬ ତାରିଖ ୧୯୫୦ ମସିହାରେ ଭାରତ ସ୍ୱାଧୀନ ରାଷ୍ଟ୍ର ହେବ । କ'ଣ ଘଟିବ ତା'ର ଏହି ସ୍ୱାଧୀନତାକୁ ? ସେ ତା'ର ଏହି ସ୍ୱାଧୀନତାକୁ ରକ୍ଷା କରିପାରିବ ନା ହରାଇବ ? ଏହି ଭାବନା ପ୍ରଥମେ ମୋ ମନକୁ ଆସୁଛି । ଏହା ନୁହେ ଯେ ଭାରତ କେବେ ସ୍ୱାଧୀନ ରାଷ୍ଟ୍ର ନଥିଲା । ତାହାର ଥିବା ସ୍ୱାଧୀନତାକୁ ସେ ଥରେ ହରାଇଥିଲା । ସେ କ'ଣ ଦ୍ୱିତୀୟ ଥର ପାଇଁ ତାକୁ ହରାଇବ ? ଏହି ଭାବନା ମତେ ଭବିଷ୍ୟତ ପାଇଁ ବ୍ୟସ୍ତ କରି

ପକାଉଛି । ମୁଁ ଅତ୍ୟନ୍ତ ବିବ୍ରତ କାରଣ ଅତୀତରେ ଭାରତ ତା'ର କେତେକ ନିଜଲୋକଙ୍କର ବିଶ୍ୱାସଘାତକତା ଓ ଅନ୍ଧବିଶ୍ୱାସ କାରଣରୁ ସ୍ୱାଧୀନତା ହରାଇଛି । ଯେତେବେଳେ ମହମ୍ମଦ ବିନ-କାଶିମ ସିନ୍ଧୁ ଆକ୍ରମଣ କଲେ, ରାଜା ଦାହାରଙ୍କର ସେନାଧକ୍ଷ ମହମ୍ମଦ-ବିନ-କାଶିମଙ୍କର ଏଜେଣ୍ଟଠାରୁ ଲାଞ୍ଚ ନେଇଥିଲେ ଏବଂ ରାଜାଙ୍କ ପକ୍ଷରେ ଯୁଦ୍ଧ କରିବାକୁ ମନା କରିଦେଇଥିଲେ । ପୁନଶ୍ଚ ରାଜା ଜୟଚନ୍ଦ୍ର ଯେକି ମହମ୍ମଦ ଘୋରୀକୁ ଭାରତ ଆକ୍ରମଣ କରିବାକୁ ନିମନ୍ତ୍ରଣ କରିଥିଲେ ଏବଂ ପୃଥ୍ୱୀରାଜଙ୍କ ବିରୁଦ୍ଧରେ ଯୁଦ୍ଧ କରିବାକୁ କହି, ସେ ତାଙ୍କ ନିଜ ପକ୍ଷରୁ ସୋଲାଙ୍କି ରାଜାମାନଙ୍କ ତରଫରୁ ସାହାଯ୍ୟ କରିବାକୁ କହିଥିଲେ । ଯେତେବେଳେ ଶିବାଜୀ ହିନ୍ଦୁମାନଙ୍କର ମୁକ୍ତି ପାଇଁ ସଂଗ୍ରାମ କରୁଥିଲେ ସେତେବେଳେ ଅନ୍ୟାନ୍ୟ ମରାଠା ଯୋଦ୍ଧା ଓ ରାଜପୁତ ରାଜାମାନେ ମୋଗଲ ସମ୍ରାଟଙ୍କ ସପକ୍ଷରେ ଯୁଦ୍ଧ କରୁଥିଲେ ।

ଯେତେବେଳେ ବ୍ରିଟିଶମାନେ ଶିଖ୍ ଶାସକମାନଙ୍କୁ ଭାଙ୍ଗିବା ପାଇଁ ଚେଷ୍ଟା କରୁଥିଲେ, ସେମାନଙ୍କର ପ୍ରଧାନ ସେନାଧକ୍ଷ ଗୁଲାବସିଂ ନୀରବରେ ବସିଥିଲେ ଏବଂ ଶିଖ ରାଜ୍ୟକୁ ରକ୍ଷା କରିବା ପାଇଁ ସାହାଯ୍ୟ କରି ନଥିଲେ । ୧୮୫୭ ମସିହାରେ, ଯେତେବେଳେ ଭାରତର ଏକ ବଡ ଅଂଶ ବ୍ରିଟିଶ ବିରୁଦ୍ଧରେ ସ୍ୱାଧୀନତା ଲାଭ ପାଇଁ ଯୁଦ୍ଧ ଘୋଷଣା କଲେ, ଶିଖ୍ମାନେ ନୀରବ ଦ୍ରଷ୍ଟା ଭାବରେ ଠିଆ ହୋଇ ଚାହିଁ ରହିଲେ ।''

''ଇତିହାସର କ'ଣ ବାରମ୍ବାର ପୁନରାବୃତ୍ତି ହେବ ? ଏହି ଚିନ୍ତା ମୋତେ ଉଦ୍‌ବେଳିତ କରୁଛି । ଏହି ଉଦ୍‌ବେଗ ଗଭୀର ହେବାରେ ଲାଗୁଛି । କାରଣ ଆମର ପୁରାତନ ଶତ୍ରୁ ଜାତି ଓ ଧର୍ମମତ ସହିତ ଆମେ ବହୁ ପରସ୍ପର ବିଭିନ୍ନତା ଓ ବିରୋଧି ଧର୍ମମତର ରାଜନୈତିକ ଦଳମାନଙ୍କୁ ପାଇବାକୁ ଯାଉଥାଇଁ । ଭାରତୀୟ ଲୋକମାନେ କ'ଣ ରାଷ୍ଟ୍ରକୁ ଧର୍ମମତ ଠାରୁ ଊର୍ଦ୍ଧ୍ୱରେ ରଖିବାକୁ ଚାହୁଁଛନ୍ତି କିମ୍ବା ଧର୍ମମତକୁ ରାଷ୍ଟ୍ରର ଊର୍ଦ୍ଧ୍ୱରେ ? ମୁଁ ତାହା ଜାଣେ ନାହିଁ । କିନ୍ତୁ ଏହା ନିଶ୍ଚିତ ଯେ ଯଦି ଦଳମାନେ ଧର୍ମମତକୁ ରାଷ୍ଟ୍ରର ଊର୍ଦ୍ଧ୍ୱରେ ରଖନ୍ତି, ତେବେ ଦ୍ୱିତୀୟ ଥର ପାଇଁ ଆମର ସ୍ୱାଧୀନତା ସଙ୍କଟାପନ୍ନ ହେବ ଏବଂ ସମ୍ଭବତଃ ସବୁଦିନ ପାଇଁ ଲିଭିଯାଇପାରେ । ଆମ୍ଭେ ସମସ୍ତେ ପ୍ରତିଜ୍ଞାବଦ୍ଧ ହୋଇ ଏହି ସମ୍ଭାବ୍ୟ ଘଟଣା ବିରୁଦ୍ଧରେ ସତର୍କ ରହିବା ଉଚିତ । ଆମେ ଆମର ଶେଷ ରକ୍ତ ବିନ୍ଦୁ ପର୍ଯ୍ୟନ୍ତ ଦେଇ ଦେଶର ସ୍ୱାଧୀନତାର ସୁରକ୍ଷା କରିବା ପାଇଁ ସଙ୍କଳ୍ପବଦ୍ଧ ହେବା ।''

ସେ ପୁନରାୟ କହିଲେ, ''ଜାନୁୟାରୀ ୨୬ ତାରିଖ ୧୯୫୦ ମସିହାରେ ଭାରତ ଏକ ଗଣତାନ୍ତ୍ରିକ ରାଷ୍ଟ୍ର ହେବ ଏହି ଦୃଷ୍ଟିକୋଣରୁ ଯେ ସେହିଦିନ ଲୋକମାନଙ୍କ ଦ୍ୱାରା, ଲୋକମାନଙ୍କ ପାଇଁ ଓ ଲୋକମାନଙ୍କ ନିମିତ୍ତ ଗୋଟିଏ ସରକାର ପ୍ରତିଷ୍ଠା ହେବ । ସେହି ଚିନ୍ତା ମୋ ମନକୁ ଆସୁଛି । କ'ଣ ହେବ ତା'ର ଗଣତାନ୍ତ୍ରିକ ସମ୍ବିଧାନ ପ୍ରତି ? ସେ କ'ଣ ଏହାର ରକ୍ଷଣାବେକ୍ଷଣ କରିପାରିବ କିମ୍ବା ପୁଣିଥରେ ହରାଇବ ? ଏହି ଦ୍ୱିତୀୟ ଚିନ୍ତା ମଧ୍ୟ ମୋ ମନକୁ ଆସୁଛି ଏବଂ ମୋତେ ପ୍ରଥମ ଚିନ୍ତା ପରି ଏହା ମଧ୍ୟ ଉଦ୍‌ବିଗ୍ନ କରୁଛି ।''

''ଯଦି ଆମକୁ ଏହି ଗଣତନ୍ତ୍ରକୁ ରକ୍ଷଣାବେକ୍ଷଣ କରିବାକୁ ହେବ, କେବଳ ରୂପରେ ନୁହେ ବରଂ ବିଷୟରେ, ତେବେ ଆମେ କ'ଣ କରିବା ? ମୋ ବିଚାରରେ ପ୍ରଥମ କଥା, ଆମ୍ଭେ ଆମର ସାମାଜିକ ଓ ଅର୍ଥନୈତିକ ଉଦ୍ଦେଶ୍ୟଗୁଡିକୁ ସମ୍ବିଧାନ ପ୍ରତିକ୍ରିୟାକୁ ସୁଦୃଢ଼ ସହିତ ଧାରଣ କରି ତା' ମାଧ୍ୟମରେ ହାସଲ କରିବା । ଏହାର ଅର୍ଥ ଆମ୍ଭକୁ ଆମର ରକ୍ତପାତ ମାଧ୍ୟମ ବିପ୍ଳବକୁ ପରିତ୍ୟାଗ କରିବାକୁ ହେବ । ଏହାର ଅର୍ଥ ଆମ୍ଭେ ଅସହଯୋଗ, ଆଇନ୍ ଅମାନ୍ୟ ଓ ସତ୍ୟାଗ୍ରହ ପଦ୍ଧତିକୁ ତ୍ୟାଗ କରିବାକୁ ହେବ । ଯେତେବେଳେ କୌଣସି ରାସ୍ତା ସାମ୍ବିଧାନିକ ବ୍ୟବସ୍ଥା ମଧ୍ୟରେ ଅର୍ଥନୈତିକ ଓ ସାମାଜିକ ଉଦ୍ଦେଶ୍ୟ ହାସଲ କରିବାକୁ ମିଳିବ ନାହିଁ, ସେତେବେଳେ ସାମ୍ବିଧାନିକ ବ୍ୟବସ୍ଥା ମଧ୍ୟ ଦେଇ ସାମାଜିକ ଓ ଅର୍ଥନୈତିକ ଉଦ୍ଦେଶ୍ୟ ହାସଲର କୌଣସି ଯୁକ୍ତି ଅଛି । କିନ୍ତୁ ଯେଉଁଠାରେ ସାମ୍ବିଧାନିକ ବ୍ୟବସ୍ଥା ଉନ୍ମୁକ୍ତ ରହିଛି, ସେଠାରେ ଏହି ଅସଂବିଧାନିକ ବ୍ୟବସ୍ଥାର କୌଣସି ନ୍ୟାୟସଙ୍ଗତ ଯୁକ୍ତି ନାହିଁ । ଏହି ବ୍ୟବସ୍ଥା କେବଳ ଅରାଜକତା ଛଡା ଅନ୍ୟ କିଛି ନୁହେ ଏବଂ ଏହାକୁ ଯେତେ ଶୀଘ୍ର ପ୍ରତ୍ୟାଖ୍ୟାନ କରାଯିବ, ଆମ୍ଭମାନଙ୍କ ପାଇଁ ସେତେ ଭଲ ।''

ଦ୍ୱିତୀୟତଃ ସମ୍ବିଧାନର ସୁରକ୍ଷା ପାଇଁ ସାବଧାନତା ଲୋଡା । ମିଲ୍ କହିଛନ୍ତି ''ସ୍ୱାଧୀନତାକୁ କୌଣସି ମହାନ୍ ବ୍ୟକ୍ତିର ପାଦତଳେ କେବେହେଲେ ସମର୍ପି ଦେବା ଉଚିତ୍ ନୁହେ କିମ୍ବା ସବୁ ପ୍ରକାର କ୍ଷମତା ଦେଇ ବିଶ୍ୱାସ ସ୍ଥାପନ କଲେ ସେ ଅନୁଷ୍ଠାନ ଗୁଡିକୁ ଯଥେଚ୍ଛା ପରିବର୍ତ୍ତନ କରିଦେବେ ।''

ତାଙ୍କ ପ୍ରତି କୃତଜ୍ଞ ରହିବାରେ କିଛି ଭୁଲ ନାହିଁ ଯେଉଁ ବ୍ୟକ୍ତି ସମଗ୍ର ଜୀବନ ରାଷ୍ଟ୍ର ସେବାରେ ବ୍ୟୟିତ କରିଛନ୍ତି, ଯେଉଁମାନେ ଗଣତାନ୍ତ୍ରିକ ବ୍ୟବସ୍ଥାର ରକ୍ଷଣାବେକ୍ଷଣ ସମ୍ପର୍କରେ ଆଗ୍ରହୀ ସେମାନଙ୍କୁ ଜନ୍ ଷ୍ଟୁଆର୍ଟ ମିଲ୍‌ଙ୍କର କଥାକୁ ମନେ ରଖିବାକୁ ହେବ କିନ୍ତୁ ରାଷ୍ଟ୍ରର ସ୍ୱାଧୀନତା ବିନିମୟରେ ନୁହେ ।

ଏହି ସତର୍କତା ଅନ୍ୟ ରାଷ୍ଟ୍ର ଅପେକ୍ଷା ଭାରତ ପାଇଁ ଅଧିକ ପ୍ରଯୁଜ୍ୟ । କାରଣ ଭାରତରେ ଭକ୍ତି କିମ୍ବା ଆମ୍ଭେ ଯାହାକୁ କହୁଛୁ ସମର୍ପିତ ମାର୍ଗ ବା ବ୍ୟକ୍ତି-ପୂଜା (hero-worship) ରାଜନୀତିରେ ମଧ୍ୟ ମୁଖ୍ୟ ଭୂମିକା ଗ୍ରହଣ କରୁଛି ଯାହାର ଅସମାନ୍ୟ ପ୍ରଧାନ୍ୟ ବିଶ୍ୱର ଅନ୍ୟ କୌଣସି ପ୍ରାନ୍ତରରେ ଦେଖାଯାଏ ନାହିଁ । ଧର୍ମରେ ଭକ୍ତିଭାବ ହୁଏତ ଆତ୍ମାର ମୁକ୍ତି ଆଡକୁ ରାସ୍ତା ଉନ୍ମୁକ୍ତ କରେ । କିନ୍ତୁ ରାଜନୀତିରେ ଭକ୍ତି ବା ବ୍ୟକ୍ତିପୂଜା ନିମ୍ନଗାମୀ ହେବାର ମାର୍ଗ ଏବଂ ଶେଷକୁ ସ୍ୱେଚ୍ଛାଚାରୀ ଶାସନ ଆଡକୁ ମୁହାଁଏ ।''

ତୃତୀୟ କଥା ଆମ୍ଭକୁ କରିବାକୁ ହେବ ଯେ ଆମେ କେବଳ ରାଜନୈତିକ ଗଣତନ୍ତ୍ରରେ ସନ୍ତୁଷ୍ଟ ହେବା ନାହିଁ । ଆମ୍ଭକୁ ଆମର ରାଜନୈତିକ ଗଣତନ୍ତ୍ରକୁ ସାମାଜିକ ଗଣତନ୍ତ୍ରରେ ରୂପାନ୍ତରିତ କରିବାକୁ ହେବ । ରାଜନୈତିକ ଗଣତନ୍ତ୍ର ତିଷ୍ଠି ପାରିବ ନାହିଁ ଯଦି ଏହାର ମୂଳରେ ସାମାଜିକ ଗଣତନ୍ତ୍ର ନଥାଏ । ସାମାଜିକ ଗଣତନ୍ତ୍ରର ଅର୍ଥ କ'ଣ ? ଏହାର ଅର୍ଥ ହେଉଛି ବଞ୍ଚିବାର ଗୋଟିଏ ମାର୍ଗ ଯାହା ସମାନତା, ସ୍ୱତନ୍ତ୍ରତା ଓ ଭ୍ରାତୃତ୍ୱକୁ ଜୀବନର ନିୟମ ଭାବେ ଗ୍ରହଣ କରେ । ଏହି ତିନିଗୋଟିର ଏକତ୍ୱର ଅର୍ଥ ହେଉଛି ଯେ ଯଦି ଗୋଟିଏ ଅନ୍ୟଟିଠାରୁ ପୃଥକ୍ କରି ଦିଆଯାଏ, ତେବେ ଗଣତନ୍ତ୍ରର ଯାହା ଉଦ୍ଦେଶ୍ୟ ତାହା ପରାଭୂତ ହେବ । ସ୍ୱତନ୍ତ୍ରତାକୁ ସମାନତା ଠାରୁ ପୃଥକ୍ କରିହେବ ନାହିଁ, ସମାନତା ମଧ୍ୟ ସ୍ୱତନ୍ତ୍ରତା ଠାରୁ ପୃଥକ୍ ହୋଇପାରିବ ନାହିଁ । ସମାନତା ବ୍ୟତୀତ ସ୍ୱତନ୍ତ୍ରତା ଅଳ୍ପ କେତେକଙ୍କର ବହୁ ଲୋକଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରିବ । ସମାନତା ସ୍ୱତନ୍ତ୍ରତା ବ୍ୟତୀତ ବ୍ୟକ୍ତିଗତ ପ୍ରେରଣାକୁ ହତ୍ୟା କରିବ । ଠିକ୍ ସେହିପରି ଭ୍ରାତୃତ୍ୱ ବିନା ସ୍ୱତନ୍ତ୍ରତା ଓ ସମାନତା ପ୍ରାକୃତିକ ଅବସ୍ଥା ହୋଇପାରିବ ନାହିଁ । ଭ୍ରାତୃତ୍ୱର ଅର୍ଥ କ'ଣ ? ଭାତୃତ୍ୱର ଅର୍ଥ ହେଉଛି ସମସ୍ତ ଭାରତୀୟଙ୍କ ମଧ୍ୟରେ ଏକ ସାଧାରଣ ଭାଇଚାରାର ଭାବନା, କାରଣ ସମସ୍ତ ଭାରତୀୟ ଗୋଟିଏ ଲୋକ । ଏହି ନିୟମ ହିଁ ଏକତ୍ୱ ଓ ସଂହତି ସାମାଜିକ ଜୀବନକୁ ପ୍ରଦାନ କରେ । ଏହା ହାସଲ କରିବା କଷ୍ଟସାଧ୍ୟ ।

ତାଙ୍କର ଏହି ଐତିହାସିକ ଭାଷଣକୁ ଶେଷ କରିବାକୁ ଯାଇ ସେ କହିଲେ, ''ଆମ ଆଗରେ ଯେଉଁ କାର୍ଯ୍ୟ ରହିଛି, ସେ ସମ୍ପର୍କରେ ଏହା ମୋର ପ୍ରତିଫଳନ । ଏହା କେତେକଙ୍କୁ ସୁଖକର ନ ହୋଇପାରେ । କିନ୍ତୁ କହିବାର କୌଣସି ଦ୍ୱିଧା ନାହିଁ ଯେ ଏହି ଦେଶର ରାଜନୈତିକ କ୍ଷମତା ବହୁଦିନ ଧରି କେତେକ ମୁଷ୍ଟିମେୟ ଲୋକଙ୍କର ଏକାଧିପତ୍ୟ ହୋଇଛି ଏବଂ ବହୁଲୋକ ଏହି ବୋଝର ପଶୁ

ହୋଇନାହାନ୍ତି ବରଂ ପଶୁ ପରି ଶିକାର ହୋଇଛନ୍ତି । ଏହି ଏକାଧିପତ୍ୟ ସେମାନଙ୍କୁ ଉନ୍ନତିରୁ କେବଳ ବଞ୍ଚିତ କରିନାହିଁ, ବରଂ ଜୀବନର ବିଶେଷତ୍ୱ କ'ଣ ତାହା ଜାଣିବା ତାଙ୍କଠାରୁ ଛଡାଇ ନିଆଯାଇଛି । ଏହି ନିମ୍ନଶ୍ରେଣୀର ଲୋକମାନେ ଶାସିତ ହେବାରୁ କ୍ଳାନ୍ତ । ସେମାନେ ନିଜକୁ ନିଜେ ଶାସନ କରିବାକୁ ଅଧୀର । ନିମ୍ନଶ୍ରେଣୀର ଲୋକମାନଙ୍କ ମଧ୍ୟରେ ନିଜକୁ ନିଜ ଶାସିତ ହେବାର ଏହି ଅପରୋକ୍ଷାନୁଭୂତିକୁ ଶ୍ରେଣୀ ସଂଘର୍ଷ ବା ଶ୍ରେଣୀ ଯୁଦ୍ଧ ହେବାକୁ ପ୍ରଶ୍ରୟ ଦେବା ଠିକ୍ ହେବ ନାହିଁ । ଏହା ଏହି ଗୃହକୁ ବିଭକ୍ତ କରିବା ଆଡକୁ ଅଗ୍ରସର କରିବ । ତାହା ହେବ ବିନାଶର ଦିନ ।''

''ମୁଁ ଏହି ଗୃହକୁ ଅଧିକ ଭାରାକ୍ରାନ୍ତ କରିବାକୁ ଚାହୁଁ ନାହିଁ । ସ୍ୱାଧୀନତା, ନିଃସନ୍ଦେହ ଭାବରେ ଆନନ୍ଦର ଘଟଣା । କିନ୍ତୁ ଆମେ ଭୁଲିଗଲେ ଚଳିବ ନାହିଁ ଯେ ଏହି ସ୍ୱାଧୀନତା ଆମ ଉପରେ ବହୁ ଗୁରୁଦାୟିତ୍ୱ ନ୍ୟସ୍ତ କରିଛି । ସ୍ୱାଧୀନତା ପାଇବା ଦ୍ୱାରା କିଛି ଭୁଲତ୍ରୁଟି ହେଲେ ବ୍ରିଟିଶ ମାନଙ୍କୁ ଦୋଷ ହେବାର ଅଧିକାର ଆମେ ହରାଇଥାଇଁ । ଯଦି ଏହାପରେ କିଛି ଭୁଲ ତ୍ରୁଟି ହୁଏ, ତେବେ ଆମ୍ଭେ ଅନ୍ୟ କାହାକୁ ଦୋଷ ନଦେଇ ଆମ୍ଭକୁ ହିଁ ଦୋଷ ଦେବା । ଭୁଲ୍ ହୋଇଯିବାର ବହୁ ବିପଦ ଆଗକୁ ରହିଛି । ସମୟ ଦ୍ରୁତ ଗତିରେ ବଦଳୁଛି । ଲୋକମାନେ ଏପରିକି ଆମ ଲୋକେ ମଧ୍ୟ ନୂତନ ଆଦର୍ଶରେ ପରିଚାଳିତ ହେଉଛନ୍ତି । ସେମାନେ ଲୋକମାନଙ୍କ ଦ୍ୱାରା ଶାସନରେ ଅତିଷ୍ଠ ହୋଇଗଲେଣି । ସେମାନେ ଲୋକମାନଙ୍କ ପାଇଁ ସରକାର ପାଇଁ ପ୍ରସ୍ତୁତ ଏବଂ ଲୋକମାନଙ୍କ ଦ୍ୱାରା ବା ଲୋକମାନଙ୍କର ସରକାର ପ୍ରତି ପରାଙ୍ମୁଖ । ଯଦି ଆମେ ଏହି ସମ୍ବିଧାନକୁ ରକ୍ଷା କରିବାକୁ ଇଚ୍ଛା କରୁଥାଉ, ଯେଉଁଥିରେ ଆମେ ଲୋକମାନଙ୍କ ପାଇଁ ଲୋକମାନଙ୍କ ନିମିତ୍ତ, ଲୋକମାନଙ୍କ ଦ୍ୱାରା ସରକାର ଲିପିବଦ୍ଧ କରିଛେ, ତାଲ ଶପଥ କରିବା ଯେ ଆମ ରାସ୍ତାରେ ଥିବା କଣ୍ଟକ ପ୍ରତି ଭ୍ରୂକ୍ଷେପ କରିବା ନାହିଁ ଏବଂ ଲୋକମାନଙ୍କୁ ଲୋକମାନଙ୍କ ପାଇଁ ସରକାର ବୋଲି ପ୍ରବର୍ତ୍ତାଇବା ଯେଉଁ ସରକାର ଲୋକମାନଙ୍କ ଦ୍ୱାରା ପରିଚାଳିତ ହେବ । ତାହା ହିଁ ହେବ ଏ ଦେଶର ସେବା କରିବାର ଏକମାତ୍ର ମାର୍ଗ । ମୁଁ ଅନ୍ୟକିଛି ଉତ୍କୃଷ୍ଟ ମାର୍ଗ ଜାଣେ ନାହିଁ ।''

୧୯୪୯ ନଭେମ୍ବର ୨୬ ତାରିଖ ଦିନ ଡକ୍ଟର ରାଜେନ୍ଦ୍ର ପ୍ରସାଦ ତାଙ୍କର ସଭାପତିତ୍ୱ ଅଭିଭାଷଣ ଉପସ୍ଥାପିତ କରି ଘୋଷଣା କଲେ ବର୍ତ୍ତମାନ ଏହି ଗୃହ ସମ୍ବିଧାନ ଉପରେ ଭୋଟ ନେବ । ସମ୍ବିଧାନ ହର୍ଷ ଓ କରତାଳି ଧ୍ୱନିରେ ଗୃହୀତ ହେଲା ।

୧୯୫୦ ଜାନୁୟାରୀ ୨୪ ତାରିଖ ଦିନ ପୁନରାୟ ସମ୍ବିଧାନ ସଭାର ବୈଠକ ବସିଲା । ସଭାର ସମସ୍ତ ୩୦୮ ଜଣ ସଭ୍ୟ ସେହି ଐତିହାସିକ ହାତଲେଖା ଦସ୍ତାବିଜରେ ହିନ୍ଦୀ ଓ ଇଂରାଜୀରେ ଦସ୍ତଖତ କଲେ । ଇଂରାଜୀରେ ଛପା ହୋଇଥିବା ଅନ୍ୟ ଏକ କପିରେ ମଧ୍ୟ ଦସ୍ତଖତ କଲେ । ଏହାର ଦୁଇଦିନ ପରେ ଭାରତର ସମ୍ବିଧାନ ରାଷ୍ଟ୍ରର ଆଇନ୍ ହେଲା ଏବଂ ଆଶା, ଶାନ୍ତି ଓ ପ୍ରଗତିର ଆରମ୍ଭ ହେଲା ଏକ ନୂତନ ଅଧ୍ୟାୟ ।

ଡକ୍ଟର ଆମ୍ବେଦକରଙ୍କର ଉତ୍ସାହ ଓ ନିଷ୍ଠାକୁ ପ୍ରଶଂସା କରି ଡକ୍ଟର ରାଜେନ୍ଦ୍ର ପ୍ରସାଦ କହିଥିଲେ, ‘‘ଏହି ଆସନରେ ବସି ଓ ପ୍ରତ୍ୟେକଦିନ ଏହି ସଭାର କାର୍ଯ୍ୟ ବିବରଣୀକୁ ଲକ୍ଷ୍ୟ କରି ମୋର ହୃଦବୋଧ ହୋଇଛି ଯେ ଚିଠା ସମିତିର ସଭ୍ୟମାନଙ୍କର ଉତ୍ସାହ ଓ ନିଷ୍ଠା ବ୍ୟତିରେକେ ଅନ୍ୟ କେହି ଏହାକୁ କରିପାରିନଥାନ୍ତେ । ବିଶେଷ କରି ଏହାର ଅଧ୍ୟକ୍ଷ ଡକ୍ଟର ଆମ୍ବେଦକର ତାଙ୍କର ଶାରୀରିକ ଅସୁସ୍ଥତା ସତ୍ତ୍ୱେ ଏହି କାର୍ଯ୍ୟ ସମ୍ପନ୍ନ କରିଛନ୍ତି । ଆମେ ହୁଏତ ଏପରି ଏକ ନିଷ୍ପତ୍ତି କେବେ କରିବା ନାହିଁ କିମ୍ବା ଏହା ଏତେ ଅଭ୍ରାନ୍ତ ହେବ ନାହିଁ ଯେତେବେଳେ ଆମେ ତାଙ୍କୁ ଚିଠା ସମିତିର ସଭ୍ୟଭାବେ ରଖିଲେ ଏବଂ ତାହାର ଅଧ୍ୟକ୍ଷ ମଧ୍ୟ ନିର୍ବାଚିତ କଲେ । ସେ କେବଳ ତାଙ୍କର ମନୋନୟନକୁ ସିଦ୍ଧାନ୍ତ କରିନାହାନ୍ତି ବରଂ ସେ ଯେଉଁ କାର୍ଯ୍ୟ କରିଛନ୍ତି, ସେହି କାର୍ଯ୍ୟରେ ଯୋଗ କରିଛନ୍ତି ।’’

ଆମ୍ବେଦକରଙ୍କୁ ବହୁ ସଭ୍ୟ ‘ଆଧୁନିକ ମନୁ’ ନାମରେ ବର୍ଣ୍ଣନା କରିଥିଲେ । ଏସ୍.ସହାୟ ମତ ଦେଇ କହିଥିଲେ, ‘‘ଭାରତ ସ୍ୱାଧୀନତା ହାସଲ କରିବାର ଗୌରବ ମହାତ୍ମାଜୀଙ୍କୁ ଦିଆଯିବାବେଳେ ଏହାର ବର୍ଗୀକରଣ (codification) ମହାତ୍ମାଜୀଙ୍କର ସବୁଠାରୁ ବଡ ସମାଲୋଚକ ଅର୍ଥାତ୍ ଭାରତୀୟ ସମ୍ବିଧାନର ନିର୍ମାତା ଡକ୍ଟର ଆମ୍ବେଦକର ଅଟନ୍ତି ।’’ ସେ ପୁନରାୟ କହିଲେ, ‘‘ସେ କେବଳ ଏହି ସଭାର ନୁହେ ବରଂ ସମଗ୍ର ଦେଶର କୃତଜ୍ଞତା ପାଇବାର ଯୋଗ୍ୟ ।’’ ତାଙ୍କର ସୁଦକ୍ଷ ପରାଚାଳନାକୁ ବର୍ତ୍ତମାନ ଓ ଆଗାମୀ ଭବିଷ୍ୟତର ବଂଶଧର ମାନେ କୃତଜ୍ଞତାର ସହ ମନେ ରଖିବ ।’’ ଆର.ଭି. ଧୂଲେକର ମତ ଦେଇ କହିଲେ, ‘‘ମୁଁ କହିବି ନାହିଁ ଯେ ଏହି କାର୍ଯ୍ୟ ଅତ୍ୟନ୍ତ କଠିନ, କାରଣ ତାହା ଅତ୍ୟନ୍ତ କ୍ଷୁଦ୍ରଶବ୍ଦ । ସେ ଯେଉଁ କାର୍ଯ୍ୟ ସମ୍ପାଦନ କଲେ, ତାହା ମହାନ୍ ପାଣ୍ଡବ ଭୀମଙ୍କର କୃତିତ୍ୱ ସହ ଯୋଗ୍ୟ ।

ସେ ତାଙ୍କ ନାମ ଭୀମରାଓଙ୍କୁ ଯଥାର୍ଥ ପ୍ରତିପାଦନ କରିଛନ୍ତି ଏବଂ ସେହି

ନିର୍ଦ୍ଧାରିତ ଦାୟିତ୍ୱକୁ ସ୍ୱଚ୍ଛ ଦୂରଦୃଷ୍ଟି, ସ୍ୱଚ୍ଛ ଚିନ୍ତା ଓ ସ୍ୱଚ୍ଛ ଭାଷା ଦ୍ୱାରା ସୁଚାରୁଭାବେ ତୁଲାଇଛନ୍ତି ।''

ଆଲାଦି କୃଷ୍ଣସ୍ୱାମୀ ଆୟାର, ଚିଠା ସମିତିର ଅନ୍ୟତମ ସଭ୍ୟ ତାଙ୍କର ଭାଷଣ ଶେଷ କରିବା ପୂର୍ବରୁ କହିଲେ, ''ମୁଁ ମୋର ବନ୍ଧୁ, ମହାମାନ୍ୟ ଡକ୍ଟର ଆମ୍ବେଦକର ଯେଉଁ କୁଶଳତା ଓ ଦକ୍ଷତାର ସହ ସମ୍ବିଧାନକୁ ପରିଚାଳନା କଲେ ଓ ଚିଠା ସମିତିର ଅଧକ୍ଷ ଭାବେ ତାଙ୍କର ଅକ୍ଳାନ୍ତ ପରିଶ୍ରମ ପାଇଁ ଯଦି ମୁଁ ପ୍ରଶଂସା ନ କରେ, ତେବେ ମୁଁ ମୋ କର୍ତ୍ତବ୍ୟରେ ଅବହେଳା କରିବି ।''

ଗୋବିନ୍ଦ ବଲ୍ଲଭ ପନ୍ଥ ତାଙ୍କୁ ପଣ୍ଡିତ ଆଖ୍ୟା ଦେବାବେଳେ ଡକ୍ଟର ପଟ୍ଟାଭି ସୀତାରାମାୟ କହିଲେ, ''ମୁଁ ଆମ୍ବେଦକରଙ୍କୁ କହିବାକୁ ଇଚ୍ଛାକରେ ଯେ ସେ ତାଙ୍କର ବାଷ୍ପୀୟ ଜ୍ଞାନ ସଦୃଶ ବୁଦ୍ଧିମତ୍ତା ଦ୍ୱାରା ଏହିପରି ବିପୁଳ ଓ ଚମତ୍କାର ଦାୟିତ୍ୱକୁ ଗ୍ରହଣ କରିପାରିଲେ । ଯାହା ସେ ହୃଦବୋଧ କଲେ ଠିକ୍ ବୋଲି, ତାର ଫଳାଫଳ କ'ଣ ହେବ ସେଥିପ୍ରତି ଭ୍ରୂକ୍ଷେପ ନକରି ସେ ଅତ୍ୟନ୍ତ ଦୁର୍ଜୟ, ଦୁର୍ବାର ଓ ଅପରାଜେୟ ଭାବେ ବୃହତ ତାଳ ବୃକ୍ଷଠାରୁ କ୍ଷୁଦ୍ର ଗୁଳ୍ମ ପର୍ଯ୍ୟନ୍ତକୁ ମାଡି ମକଚି ସମତୁଲ କରି ଦେଲେ ।''

ଯେ କେହି ବ୍ୟକ୍ତି ଏହି ସମ୍ବିଧାନକୁ ପଢ଼ିବ ଏବଂ ଏହାର ପୃଷ୍ଠଭୂମି ସମ୍ପର୍କରେ ଜ୍ଞାତ ହେବ, ସେ ନିଶ୍ଚିତ ଭାବରେ ଆମ୍ବେଦକରଙ୍କୁ ଜଣେ ସମ୍ବିଧାନବିତ୍ ଭାବେ ବିଚାର କରି ପ୍ରଶଂସା କରିବ ବୋଲି ଡକ୍ଟର ପାଲି ମତ ଦେଇଥିଲେ ।

ପଣ୍ଡିତ ନେହେରୁ ୧୯୫୬ ଡିସେମ୍ବର ୬ ତାରିଖ ଦିନ ତାଙ୍କ ମୃତ୍ୟୁରେ ଶୋକ ପ୍ରକାଶ କରି ଲୋକ ସଭାରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାକୁ ଯାଇ କହିଥିଲେ, ''ଭାରତର ସମ୍ବିଧାନର ଗଠନରେ ଡକ୍ଟର ଆମ୍ବେଦକର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିଭାଇଛନ୍ତି । ପ୍ରକୃତ ପକ୍ଷେ କହିଲେ ଡକ୍ଟର ଆମ୍ବେଦକର ସମ୍ବିଧାନ ନିର୍ମାଣରେ ଏକ ସକାରାତ୍ମକ ଭୂମିକା ନିଭେଇଛନ୍ତି ଏପରିକି ସେ ଚିଠା ସମିତିର ସଭ୍ୟଭାବେ ନିର୍ବାଚିତ ହେବା ପୂର୍ବରୁ ।'' ପୁନରାୟ ନେହେରୁ ମତ ଦେଇ କହିଲେ, ''ଡକ୍ଟର ଆମ୍ବେଦକରଙ୍କ ବ୍ୟତୀତ ଅନ୍ୟ କେହି ସମ୍ବିଧାନ ନିର୍ମାଣ ପାଇଁ ଏତେ କଷ୍ଟ ଓ ଯତ୍ନ ନେଇ ନାହାନ୍ତି ।''

ଆମ୍ବେଦକର ତାଙ୍କର ମହନୀୟ ଯୋଗଦାନ ଦ୍ୱାରା ଭାରତୀୟ ସମ୍ବିଧାନର

ମୁଖ୍ୟ ସ୍ଥପତି ବା ଜନକ ହେବା ଦ୍ୱାରା ସେ କେବଳ ଅନୁନ୍ନତ ଶ୍ରେଣୀର ନେତା ନରହି ରାଷ୍ଟ୍ରନାୟକ ପାଲଟି ଗଲେ । ଏହା ଫଳରେ ସେ ତାଙ୍କ ମନରୁ ପୃଥକ୍ ନର୍ବାଚନ ମଣ୍ଡଳୀ ଭାବନା ତ୍ୟାଗ କରି ଜାତୀୟ ନେତୃମଣ୍ଡଳୀଙ୍କ ସହିତ ହାତ ମିଳାଇଲେ ଏବଂ ଏପରି ଏକ ସମ୍ବିଧାନ ଆଣିଲେ ଯାହା ସଂଖ୍ୟାଲଘୁ ମାନଙ୍କର ସ୍ୱାର୍ଥକୁ ସୁରକ୍ଷା କରିବା ସହିତ ରାଜନୈତିକ ଓ ଅର୍ଥନୈତିକ ଗଣତନ୍ତ୍ର ପାଇଁ ପଥ ପରିଷ୍କାର କରିଦେଲା ।

ଡକ୍ଟର କେ.ଭି.ରାଓ ସମ୍ବିଧାନ ନିର୍ମାଣରେ ଆମ୍ବେଦକରଙ୍କର ଭୂମିକାକୁ ଅତି ତୀକ୍ଷ୍ଣ ସମାଲୋଚନା କରିଥିଲେ । ତାଙ୍କ ମତରେ ଆମ୍ବେଦକର ସମ୍ବିଧାନର 'ଜନକ' ନହୋଇ 'ଜନନୀ' ଅଟନ୍ତି । ସେ ମନ୍ତବ୍ୟ କରିଥିଲେ, ''ଯଦି ପିତାର ଅର୍ଥ ଭବିଷ୍ୟତ ଜୀବନର ସ୍ରଷ୍ଟାକୁ ବୁଝାଏ, ଭାବ ଗୁଡିକର ଅଙ୍କୁରିତ କରିବାକୁ କୁହାଯାଏ, ତେବେ ତାଙ୍କର ଭୂମିକା ସମ୍ପର୍କରେ ସାବଧାନତା ସହକାରେ ବିଚାରବିମର୍ଶ ହେବା ଉଚିତ୍ । ଏହା ବ୍ୟତୀତ ନିଷ୍ପତ୍ତି ନେବାରେ ସେ କୌଣସି ଭୂମିକା ପାଳନ କରିନାହାନ୍ତି, ଭାବ ଅଙ୍କୁରୋଦ୍‌ଗମ କରିବା ଦୂରେ ଥାଉ, ବରଂ ସେ ନିଜ ବିଚାରର ଆପୋଷତା କରିଛନ୍ତି, ନିଜ ଉଦ୍ଦେଶ୍ୟରେ ବିଫଳ ହୋଇଛନ୍ତି ଏବଂ ପରିଶେଷରେ ଅନ୍ୟର ଭାବକୁ ଗ୍ରହଣ କରି, ସେ ସମ୍ପର୍କରେ ଓକିଲାତି କରିଛନ୍ତି । ସେ ଅନୁସୂଚିତ ଜାତିର ସୁରକ୍ଷା କରିବାକୁ ଆସିଥିଲେ ଏବଂ ସେଥିରେ ଅତି ଦୟନୀୟ ଭାବରେ ବିଫଳତା ପାଇଛନ୍ତି । ଏବଂ ଏପରିକି ସେ ପଟେଲଙ୍କ ଠାରୁ ନିଜ ସମ୍ପ୍ରଦାୟ ପାଇଁ ଗୋଟିଏ ହେଲେ ଆସନ ସଂରକ୍ଷଣର ରିହାତି ପାଇପାରିନାହାନ୍ତି । ତାଙ୍କର ନିଜର ବିଶ୍ୱାସଠାରୁ ସମସ୍ତ ବ୍ୟବସ୍ଥା ଭିନ୍ନ । ଉଦାହରଣ ସ୍ୱରୂପ, ସେ ତାଙ୍କ ଲେଖାରେ ରାଷ୍ଟ୍ରପତି କାର୍ଯ୍ୟନିର୍ବାହୀ ଭାରତୀୟ ଅବସ୍ଥାକୁ ସୁହାଇବ ବୋଲି ଯୁକ୍ତି କରିବାବେଳେ, ପରବର୍ତ୍ତୀ ସମୟରେ ସମ୍ବିଧାନ ସଭାରେ ତାଙ୍କୁ ଏହାର ବିରୋଧ କରିବାକୁ ହୋଇଛି ।

ଡକ୍ଟର କେ.ଭି.ରାଓ ପୁନଶ୍ଚାୟ କହିଛନ୍ତି, ''ସମ୍ବିଧାନ ଅଧ୍ୟୟନ କରି ମୋର ହୃଦବୋଧ ହୋଇଛି ଯେ ଡକ୍ଟର ଆମ୍ବେଦକରଙ୍କୁ ''ସମ୍ବିଧାନର ଜନକ'' କୁହାଯିବା ଠିକ୍ ନୁହେ । ଯଦି କେହି ଲୋକକୁ ଏହା କୁହାଯିବାର ଯୋଗ୍ୟ ସେମାନେ ହେଲେ ନେହେରୁ ଓ ପଟେଲ କିନ୍ତୁ ମୁଁ ସେମାନଙ୍କୁ ''ଅଧିଷ୍ଠାତା ଦେବତା'' (Presiding deities) ବୋଲି କହିବି - ଯେଉଁମାନେ ସମ୍ବିଧାନର ସମସ୍ତ ଭାବର ଉତ୍ସ, ପ୍ରକୃତ ସମ୍ବିଧାନର ନିର୍ମାତା, ମୁଁ ସେମାନଙ୍କୁ ଓ ସେମାନଙ୍କ ସହିତ ସାଧାରଣ ଭାବେ ଚିଠା

ସମିତିକୁ 'ପିତୃତ୍ୱ'ର ଗୌରବ ପ୍ରଦାନ କରିବି କିନ୍ତୁ ମୁଁ ଡକ୍ଟର ଆମ୍ବେଦକରଙ୍କୁ ଏକାକୀ ଏହି ଗୌରବ ଦେଇପାରିବି ନାହିଁ । ଆମେ ତାଙ୍କୁ ଯାହା ବେଶୀ ଯଥାଯୋଗ୍ୟ ହେବ ସମ୍ବିଧାନର 'ଜନନୀ' ବୋଲି କହିପାରିବା - ଏବଂ ମୁଁ ଏହା କହିବା ଦ୍ୱାରା ତାଙ୍କୁ ନ୍ୟୂନ କରି ବା ଥଟ୍ଟା କରି କହୁନାହିଁ । ଡକ୍ଟର ଆମ୍ବେଦକର ପ୍ରକୃତ ପକ୍ଷେ ଅନ୍ୟର ଭାବଗୁଡିକୁ ବହନ କରି ତାହାର ପାଳନ ପୋଷଣ କଲେ ଏବଂ ନିଜର ଭାବରେ ତାକୁ ପ୍ରକାଶ କଲେ ଏବଂ ଏହାକୁ ଅତି ଉଲ୍ଲେଖନୀୟ ଭାବରେ "ଆଇନଗତ ସୂକ୍ଷ୍ମବୁଦ୍ଧି, ଅକ୍ଳାନ୍ତ ପ୍ରଚେଷ୍ଟା, ନିୟମ ନମନୀୟ ନିୟମରେ ତଥା କୌଶଳର ସହ ସମାପନ କଲେ ।"

ଡକ୍ଟର ରାଓଙ୍କର ଏହି ସମାଲୋଚନା ଆମ୍ବେଦକରଙ୍କ ସମ୍ପର୍କରେ ଗଣନା ଓ ମୂଲ୍ୟ ନିର୍ଦ୍ଧାରଣକୁ ନ୍ୟୂନ କରିଦିଏ । ଆମ୍ବେଦକରଙ୍କର ସ୍ଥାନ ସମ୍ବିଧାନ ସଭାରେ ଥିଲା ଗୌଣ କାରଣ ସେ କଂଗ୍ରେସ ନେତୃତ୍ୱ ଚାରିପାଖରେ ଘୁରି ବୁଲୁଥିଲେ ଯେପରି ସୂର୍ଯ୍ୟ ଗ୍ରହମାନଙ୍କ ଚାରିପାଖରେ ବୁଲେ । ସେ ସ୍ୱେଚ୍ଛାକୃତ ଭାବରେ ଏହି ଭୂମିକା ଗ୍ରହଣ କରିଥିଲେ କାରଣ ଦଳିତ ଶ୍ରେଣୀର ସ୍ୱାର୍ଥକୁ ସ୍ୱାଧୀନ ଭାରତ ସମ୍ବିଧାନରେ ସୁରକ୍ଷା କରିବାର ଆବଶ୍ୟକତା ଥିଲା । ସମ୍ବିଧାନ ସଭାରେ ଆମ୍ବେଦକର ଆତ୍ମବିଶ୍ୱାସର ସହ ଚିଠା ସମ୍ବିଧାନକୁ ପରିଚାଳିତ କରିଥିଲେ ମଧ୍ୟ ଏଥିପାଇଁ ସେ କଂଗ୍ରେସ ଦଳକ ପ୍ରଶଂସା କରିଥିଲେ । ସେ କହିଥିଲେ ଯେ ଆସେମ୍ବ୍ଲି ମଧ୍ୟରେ କଂଗ୍ରେସ ଦଳ କାର୍ଯ୍ୟସୂଚୀକୁ ଅତ୍ୟନ୍ତ ଶୃଙ୍ଖଳାର ସହିତ ସମ୍ପନ୍ନ କରିବାରେ ସାହାଯ୍ୟ କରିଥିଲେ । ଯେଉଁ କଂଗ୍ରେସର ସେ ବିରୋଧି ଓ ସମାଲୋଚକ ଥିଲେ, ତାହାର ପ୍ରଶଂସା ସେ ବିଚାରଶୀଳ ଭାବରେ କରିଥିଲେ । କାରଣ ଯେତେବେଳେ ନେହେରୁ ସମ୍ବିଧାନର ଉଦ୍ଦେଶ୍ୟ ସମ୍ପର୍କରେ ପ୍ରସ୍ତାବ ରଖିଲେ ଯଦିଓ ସେ ତାହାକୁ ବିରୋଧ କରିଥିଲେ କିନ୍ତୁ ପରବର୍ତ୍ତୀ ସମୟରେ ଦେଶ ବିଭାଜନ ହେବାପରେ ସେ ହୃଦୟଙ୍ଗମ କଲେ ଯେ ରାଜନୈତିକ ବାସ୍ତବତା ଦୃଷ୍ଟିରୁ ଯେଉଁମାନଙ୍କ ହାତରେ ବାସ୍ତବ ରାଜନୈତିକ କ୍ଷମତା ରହିଛି, ସେମାନଙ୍କ ପ୍ରତି ଏକ ଆପୋଷ ଦୃଷ୍ଟିଭଙ୍ଗୀ ନେବା ଉଚିତ । କଂଗ୍ରେସ ନେତୃତ୍ୱ ମଧ୍ୟ ଆମ୍ବେଦକରଙ୍କର ଏହି ଦୃଷ୍ଟିଭଙ୍ଗୀକୁ ଗ୍ରହଣ କରି ତାଙ୍କୁ ସମ୍ବିଧାନ ଚିଠା ସମିତିର ଅଧ୍ୟକ୍ଷ ପଦରେ ଆସୀନ କରିଥିଲେ ।

୧୯୪୭ ଏପ୍ରିଲ୍ ୨୯ ତାରିଖରେ ସମ୍ବିଧାନ ସଭା ଘୋଷଣା କଲା, "ଯେକୌଣସି ରୂପରେ ଅସ୍ପୃଶ୍ୟତାକୁ ଉଚ୍ଛେଦ କରାଗଲା ଏବଂ ଯଦି ସେ ସମ୍ପର୍କରେ କେହି କୌଣସି ଅକ୍ଷମତା ଲଦି ଦିଏ, ତେବେ ତାହା ଧର୍ତ୍ତବ୍ୟ ଅପରାଧ

ହେବ । ସର୍ଦ୍ଦାର ପଟେଲ ଏହି ଖଣ୍ଡ (clause) କୁ ଉପସ୍ଥାପିତ କରିଥିଲେ । ଅସ୍ପୃଶ୍ୟତା ଦୋଷରୁ ମୁକ୍ତ ହେବାପାଇଁ ଏହି ଘୋଷଣା କ୍ଷମତାରୂଢ଼ ହେବାକୁ ଯାଉଥିବା ଶାସକ ଦଳର ଇଚ୍ଛା ଏଥିରେ ପ୍ରକାଟିତ ହୋଇଥିଲା ଏବଂ ଭାରତ ଇତିହାସରେ ଏ ଦିନଟି ଥିଲା ଏକ ଗୌରବୋଜ୍ଜ୍ୱଳ ଦିବସ । ବିଶ୍ୱର ସମସ୍ତ ଖବରକାଗଜ ଏହି ଘଟଣାକୁ ଅସ୍ପୃଶ୍ୟମାନଙ୍କର ସ୍ୱାଧୀନତା, ଅସ୍ପୃଶ୍ୟମାନଙ୍କର ମୁକ୍ତି ଓ ମାନବ ମୁକ୍ତିର ବିଜୟ ହେଲା ବୋଲି ଘୋଷଣା କରିଥିଲେ ।

ଭାରତର ଏହି ମହାନ୍ ସଫଳତା ପାଇଁ ସେମାନେ ଗାନ୍ଧୀଜୀଙ୍କର ପ୍ରଶଂସାରେ ଶତମୁଖ ହୋଇ ଉଠିଥିଲେ । ବସ୍ତୁତଃ ଏହା ଥିଲା କଂଗ୍ରେସଦଳ ଯେକି ଅସ୍ପୃଶ୍ୟତାର ବିଲୋପ ଘୋଷଣା କରୁଥିଲା । କୌଣସି ବିଦେଶୀ ପ୍ରେସରେ ଆମ୍ବେଦକରଙ୍କର ନାମ ନଥିଲା ଯଦିଓ ତାଙ୍କର ପ୍ରେରଣାର ଶକ୍ତି ଦ୍ୱାରା ହିଁ ଏହି କାର୍ଯ୍ୟ ରାଷ୍ଟ୍ର ଦ୍ୱାରା ସମ୍ପନ୍ନ ହୋଇଥିଲା । ସମ୍ବିଧାନ ସଭା ଦ୍ୱାରା ଗୃହୀତ ସମ୍ବିଧାନ ସଭ୍ୟମାନଙ୍କର ମିଳିତ ବିଚାରର ପରିପ୍ରକାଶ ହୋଇଥିଲେ ହେଁ ଆମ୍ବେଦକରଙ୍କର ରାଜନୈତିକ ଦର୍ଶନର ଝଲକ ଏବଂ ବ୍ୟକ୍ତିଗତ ବିଚାରର ଦଲିଲ "ରାଷ୍ଟ୍ର ଓ ସଂଖ୍ୟାଲଘୁ" ଶୀର୍ଷକ ଦସ୍ତାବିଜରୁ ଦେଖିବାକୁ ମିଳେ ଯାହା ଅଖିଳ ଭାରତ ଅନୁସୂଚିତ ଜାତି ସଂଘ ତରଫରୁ ୧୯୪୬ ମସିହାରେ ସମ୍ବିଧାନ ସଭାକୁ ସ୍ମାରକ ପତ୍ର ଆକାରରେ ଉପସ୍ଥାପିତ କରାଯାଇଥିଲା । ଏପରିକି ଭାଷାଭିତ୍ତିକ ରାଜ୍ୟ, ଦେଶ ବିଭାଜନ ଓ ସଂଖ୍ୟା ଲଘୁ ସମ୍ପର୍କରେ ତାଙ୍କର ମତରେ ଭାରତ ଗୋଟିଏ ରାଷ୍ଟ୍ର ସମ୍ପର୍କରେ ତାଙ୍କର ଦୂରଦୃଷ୍ଟିର ପରିଚୟ ମିଳେ ।

ଭାଷାଭିତ୍ତିକ ରାଜ୍ୟ ସମ୍ପର୍କରେ ମତ ଦେଇ ଭାରତର ଏକତା ଏହା ଦ୍ୱାରା ବିପନ୍ନ ହେବ ଏବଂ ଏଥିପାଇଁ କେନ୍ଦ୍ର ଓ ରାଜ୍ୟମାନଙ୍କର ସରକାରୀ ଭାଷା ଏକ ହେବା ଉପରେ ଗୁରୁତ୍ୱ ଆରୋପ କରିଥିଲେ । କାରଣ ତାଙ୍କ ମତରେ ଭାଷାଭିତ୍ତିକ ପ୍ରଦେଶର ଭାଷା ସହିତ କୌଣସି ସମ୍ପର୍କ ନାହିଁ ।

ଦ୍ୱିତୀୟ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଯାହାକୁ ରାଷ୍ଟ୍ରକୁ ସମ୍ମୁଖୀନ ହେବାକୁ ପଡିଥିଲା ତାହା ଥିଲା ଭାରତ ଓ ପାକିସ୍ଥାନର ବିଭାଜନ । ୧୯୪୫ ମସିହାରେ ଆମ୍ବେଦକର ଏହି ସମସ୍ୟାକୁ ନେଇ 'ପାକିସ୍ଥାନ ବା ଭାରତ ବିଭାଜନ' ଶୀର୍ଷକ ପୁସ୍ତକ ରଚନା କରିଥିଲେ । ଦୁଇଟି ଭାଗରେ ବିଭକ୍ତ ଏହି ପୁସ୍ତକରେ ପାକିସ୍ଥାନ ରାଷ୍ଟ୍ର ଜନ୍ମ ହେବା ପୂର୍ବରୁ ସେ ଲେଖି ଥିଲେ, "ସମ୍ମାନ ରହିତ, ପୁଞ୍ଜି ରହିତ, ଶିକ୍ଷା ରହିତ

ମୁସଲମାନଙ୍କୁ ହିନ୍ଦୁମାନଙ୍କ ସମ୍ମୁଖୀନ ହେବାକୁ ଛାଡି ଦିଆଗଲା । ଛଅ ଶହ ବର୍ଷ ଧରି, ମୁସଲମାନମାନେ ହିନ୍ଦୁମାନଙ୍କର ମାଲିକ ରହି ଆସିଥିଲେ । ବ୍ରିଟିଶ ଅଧିକାର ପରେ ସେମାନଙ୍କୁ ହିନ୍ଦୁମାନଙ୍କ ସ୍ତରକୁ ଅଣାଯାଇଥିଲା । ମାଲିକ ଅବସ୍ଥାଠାରୁ ପ୍ରଜାସ୍ତରକୁ ସେମାନଙ୍କର ଅଧଃପତନ ଥିଲା ଯଥେଷ୍ଟ, କିନ୍ତୁ ସମାସ୍କନ୍ଧ ପ୍ରଜାଠାରୁ ହିନ୍ଦୁମାନଙ୍କର ପ୍ରଜା ହେବା ସେମାନଙ୍କ ପ୍ରତି ବାସ୍ତବିକ ଥିଲା ଅବମାନନା । ସେଥିପାଇଁ ମୁସଲମାନମାନେ ପ୍ରଶ୍ନ କରିଥିଲେ ଏହା ଅପ୍ରାକୃତିକ କିଏ ଯଦି ଏହି ଅସହ୍ୟ ପରିସ୍ଥିତିରୁ ମୁସଲମାନମାନେ ଶାନ୍ତିରେ ରହିବାପାଇଁ ଏକ ପୃଥକ୍ ରାଷ୍ଟ୍ରର ସୃଷ୍ଟି କରନ୍ତି ଯେଉଁଠାରେ ଦୁଇଟି ଜାତି ମଧ୍ୟରେ ଶାସିତ ଓ ଶାସକ ଭାବର ଦ୍ୱନ୍ଦ ରହିବ ନାହିଁ ।''

ଦ୍ୱିତୀୟ ଭାଗରେ ଆମ୍ବେଦକର ହିନ୍ଦୁମାନଙ୍କର ମତକୁ ମଧ୍ୟ ଦୃଢ଼ ଭାବରେ ଉପସ୍ଥାପିତ କରିଥିଲେ । (୧) ପାକିସ୍ଥାନ ଗଠନ ହେବା ଅର୍ଥ ଭାରତର ଏକତ୍ୱକୁ ବିଭକ୍ତ କରିବା (୨) ଭାରତର ପ୍ରତିରକ୍ଷାକୁ ଦୁର୍ବଳ କରିବା (୩) ଏହା ସାମ୍ପ୍ରଦାୟିକ ସମସ୍ୟା ସମାଧାନ କରିବାରେ ବିଫଳ ହେବ । ସେ ଦର୍ଶାଇ ଥିଲେ ଯେ ଭାରତରେ ଥିଲେ ମଧ୍ୟ ଏହି ଦୁଇଗୋଷ୍ଠୀ ମଧ୍ୟରେ କେବେ ହେଲେ ଏକତା ନଥିଲା ବରଂ ଗୋଟିଏ ଭୌଗୋଳିକ ସ୍ଥିତି ମଧ୍ୟରେ ପରସ୍ପର ପରସ୍ପରର ବିରୋଧି ରାଷ୍ଟ୍ର ରୂପେ ରହିଥିଲେ । ଦ୍ୱିତୀୟତଃ ଉପନିବେଶନୀତି ଅନୁସାରେ ପ୍ରତିରକ୍ଷା ଶକ୍ତି ସୃଷ୍ଟି ହୋଇଥିଲା । ତେଣୁ ବିଭାଜନ ପ୍ରତିରକ୍ଷା କ୍ଷେତ୍ର ଉପରେ ଦୁର୍ବଳତା ଆଣି ନପାରେ । ତୃତୀୟ ପ୍ରଶ୍ନ ହେଉଛି ସାମ୍ପ୍ରଦାୟିକତା । ପାକିସ୍ଥାନ ସୃଷ୍ଟି ହେଲେ ସାମ୍ପ୍ରଦାୟିକତା ସମସ୍ୟା ସମାଧାନ ହେବ ବୋଲି କୁହାଯିବା ଠିକ୍ ନୁହେ । ସେ ତେଣୁ କହିଥିଲେ, ପାକିସ୍ଥାନ ଯଦିଓ ହିନ୍ଦୁସ୍ଥାନକୁ ସମ୍ପୂର୍ଣ୍ଣ ଭାବରେ ସାମ୍ପ୍ରଦାୟିକ ସମସ୍ୟାରୁ ମୁକ୍ତ କରୁନାହିଁ, ତଥାପି ତାହା ଦ୍ୱାରା ହିନ୍ଦୁମାନେ ମୁସଲମାନଙ୍କ ଦେଶର ପ୍ରମୁଖ ଭାଗୀଦାରିତାରୁ ମୁକ୍ତ ହେବେ ।

ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ପାକିସ୍ଥାନ ସୃଷ୍ଟି ବ୍ୟତୀତ ଅନ୍ୟ କିଛି ବିକଳ୍ପ ରହିଛି କି ନାହିଁ, ସେ ଆଲୋଚନା କରିଥିଲେ ଓ ଏହି ସମସ୍ୟାର କି ପ୍ରକାର ସମାଧାନ କରାଯାଇପାରିବ ତାହା ମଧ୍ୟ ଦର୍ଶାଇଥିଲେ ।

''ରାଜ୍ୟ ଓ ସଂଖ୍ୟାଲଘୁ'' ଉପରେ ତାଙ୍କର ମତଦେଇ ସେ ଅନୁସୂଚିତ ଜାତି (scheduled caste) ମାନଙ୍କୁ ସଂଖ୍ୟାଲଘୁ ଭୁକ୍ତ କରିଥିଲେ । ''ରାଜ୍ୟ ଓ ସଂଖ୍ୟା ଲଘୁ'' (state and minorities) ଏକ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ

ଦଳିଲ ଯାହାକୁ ବାସ୍ତବିକ ଭାରତୀୟ ସମ୍ବିଧାନଠାରୁ ଅଧିକ ବୋଲି କୁହାଯାଇପାରିବ ଏବଂ ଯେଉଁଥିରେ ଆମ୍ବେଦକରଙ୍କର ସାମ୍ବିଧାନିକ, ରାଜନୈତିକ ଓ ସାମାଜିକ ପ୍ରତିବଦ୍ଧତାର ଦୃଢ଼ ପ୍ରତିଫଳନ ମିଳେ ।

## ୮ - ବୌଦ୍ଧ ଧର୍ମ ପ୍ରତି ଆକୃଷ୍ଟ

''କେତେକ ବ୍ୟକ୍ତି ବିଶେଷ ଭାବନ୍ତି ଯେ ସମାଜ ପାଇଁ ଧର୍ମ ଅଦରକାରୀ, ମୁଁ ଏହି ମତକୁ ଗ୍ରହଣ କରେ ନାହିଁ । ମୋ ବିଚାରରେ ଧର୍ମ ହେଉଛି ସମାଜ ଓ ଜୀବନର ପରିଚାଳନାରେ ଅତ୍ୟାବଶ୍ୟକ ।'' ଆମ୍ବେଦକର ବାରମ୍ବାର ଧର୍ମର ଆବଶ୍ୟକତା ସମ୍ପର୍କରେ କହିଛନ୍ତି, ''ଧର୍ମ ହେଉଛି ଜଣେ ବ୍ୟକ୍ତିର ଦାୟାଧିକାରର ଅଂଶବିଶେଷ ।'' ଏହାକୁ ଉଲ୍ଲେଖ କରି ସେ ଦଳିତ ବର୍ଗ ଯୁବ ସମ୍ମିଳନୀ (Depressed classes Youth conference) ରେ ମନ୍ତବ୍ୟ ଦେଇ କହିଛନ୍ତି, ''ଯୁବ ପିଢ଼ି ଧର୍ମ ପ୍ରତି ପରାଙ୍ମୁଖ ହେବା ଦେଖି ମୋତେ ଦୁଃଖ ଲାଗୁଛି । ଧର୍ମ ଅଫିମ ନୁହେ, ଯାହା କେତେକଙ୍କର ମତ । ମୋ ଭିତରେ ଯାହା କିଛି ଭଲ ରହିଛି ଏବଂ ଯାହା କିଛି ସୁଯୋଗ ମୋ ଶିକ୍ଷା ଦ୍ୱାରା ସମାଜକୁ ମିଳି ପାରିଛି, ସେଇଥିପାଇଁ ମୋ ଭିତରେ ଥିବା ଧାର୍ମିକ ଭାବନା ପ୍ରତି ମୁଁ ଋଣୀ । ମୁଁ ଧର୍ମ ଚାହେଁ, କିନ୍ତୁ ଧର୍ମ ନାମରେ ଛଳନା ମୁଁ ଚାହେଁ ନାହିଁ ।''

ମଣିଷର ଯାବତୀୟ କର୍ମ ପ୍ରେରଣାର ଉତ୍ସ ହେଉଛି ଧର୍ମ ଏବଂ ଜାଗତିକ ସୁଖସୁବିଧା ବ୍ୟକ୍ତି ଜୀବନର ଦୈନ୍ୟକୁ ଦୂର କରିପାରିବ ନାହିଁ ବୋଲି ମତ ଦେଇ ସେ କହିଥିଲେ, ''ମନୁଷ୍ୟ କେବଳ ରୁଟିଖାଇ ବଞ୍ଚିପାରିବ ନାହିଁ । ତାର ଗୋଟିଏ ମନ ରହିଛି ଏବଂ ଏହି ମନ ପାଇଁ ଚିନ୍ତା ରୂପକ ଖାଦ୍ୟ ଆବଶ୍ୟକ । ଏବଂ ଧର୍ମ ମନୁଷ୍ୟ ମଧ୍ୟରେ ସେହି ବିଶ୍ୱାସକୁ ସ୍ଥାପନ କରିପାରେ ଏବଂ ତାକୁ କର୍ମ ପ୍ରେରଣା ଦେଇ କର୍ମପ୍ରବଣ କରେ ।''

ମନୁଷ୍ୟର ସେବା ପାଇଁ ଧର୍ମ ଉଦ୍ଦିଷ୍ଟ ଏବଂ ମଣିଷ ଧର୍ମ ପାଇଁ ଉଦ୍ଦିଷ୍ଟ ନୁହେ । ''ଯେଉଁ ଧର୍ମ ଦୁଇଜଣ ଅନୁଗାମୀମାନଙ୍କ ମଧ୍ୟରେ ତାରତମ୍ୟ ଦେଖେ ସେ ଧର୍ମ ହେଉଛି ଆଂଶିକ ଏବଂ ଯେଉଁ ଧର୍ମ କୋଟି କୋଟି ଅନୁଗତମାନଙ୍କ ପ୍ରତି କୁକୁର ଓ ଅପରାଧୀମାନଙ୍କ ପରି ସେମାନଙ୍କ ଉପରେ ଅକଥନୀୟ ଯନ୍ତ୍ରଣାବିଦ୍ଧ କରି ପକାଏ ସେ ଧର୍ମ ଆଦୌ ଧର୍ମ ନୁହେ । ଧର୍ମ କେବେହେଲେ ଅସମାନ ବ୍ୟବସ୍ଥା ସୃଷ୍ଟି କରିବାର ମାଧ୍ୟମ ନୁହେ ।'' ସେଥିପାଇଁ ଧର୍ମକୁ ସେ ସାମାଜିକ ଓ ଆଧ୍ୟାତ୍ମିକ

ଏକତ୍ୱ ଭାବରେ ବିଚାର କରୁଥିଲେ । ତାଙ୍କର ତର୍କ ଓ ଧାର୍ମିକ ବିଶ୍ୱାସ ପରିଚାଳିତ ହୋଇଥିଲା ସାମାଜିକ ପରିବେଶରୁ ଏବଂ ଅବହେଳିତ ଓ ଲାଞ୍ଛିତ ଅନୁଗତ ଭାଇମାନଙ୍କର ଅବସ୍ଥା ଦେଖି । ତେଣୁ ସେ ଜୀବନବ୍ୟାପି ଯେଉଁ କାରଣ ପାଇଁ ସଂଗ୍ରାମ କରିଥିଲେ, ତାଙ୍କର ଧାର୍ମିକ ଚିନ୍ତନରେ ତାର ବିଚାରର ସୁସ୍ପଷ୍ଟ ଛାପ ପଡିଥିଲା ।

ସେ ଜଣେ ସଚେତନ ରାଜନୈତିକ ବ୍ୟକ୍ତି ଭାବରେ ଦଳିତ ମାନଙ୍କର ସାମାଜିକ ଅଧିକାର ଦୃଷ୍ଟିଭଙ୍ଗୀରୁ ଧର୍ମକୁ ଦେଖିବାକୁ ଚେଷ୍ଟା କରି "ଧର୍ମ ଓ ଦାସତ୍ୱ ପରସ୍ପର ଅସଙ୍ଗତ" କହି ଧର୍ମର ଚାରିଗୋଟି ଲକ୍ଷଣ ସମ୍ପର୍କରେ ଉଲ୍ଲେଖ କରିଛନ୍ତି ।

(୧) ଧର୍ମ, ନୈତିକତା ଦୃଷ୍ଟିକୋଣରୁ ପ୍ରତ୍ୟେକ ସମାଜ ବ୍ୟବସ୍ଥାର ପରିଚାଳିତ ନୀତି ହେବା ଆବଶ୍ୟକ ।

(୨) ଧର୍ମ ଯଦି ଏହା ବାସ୍ତବ ପକ୍ଷେ କାର୍ଯ୍ୟକାରୀ ହେବ, ତେବେ ଏହା ତର୍କ (କାରଣ) ସହିତ ସଂଶ୍ଳିଷ୍ଟ ଯାହାର ଅର୍ଥ ହେଉଛି ବିଜ୍ଞାନ ।

(୩) ଏହାର ନୈତିକ ସଂହିତା ସ୍ୱାଧୀନତା, ସମାନତା ଓ ଭ୍ରାତୃତ୍ୱ ଇତ୍ୟାଦିର ମୌଳିକ ଗୁଣକୁ ମାନିବ । ଯଦି ଧର୍ମ ସାମାଜିକ ଜୀବନର ଏହି ତିନିଗୋଟି ମୌଳିକ ଗୁଣକୁ ନଚିହ୍ନେ, ତେବେ ଧର୍ମ ଧ୍ୱଂସ ହୋଇଯିବ ।

(୪) ଧର୍ମକୁ କଦାପି ପବିତ୍ର କରାଯିବ ନାହିଁ କିମ୍ବା ଏହା ଦାରିଦ୍ର୍ୟ ସୃଷ୍ଟି କରେ ନାହିଁ । ଧର୍ମର ଚାରିଗୋଟି ଲକ୍ଷଣ ଉଲ୍ଲେଖ କରିବା ବେଳେ ଧର୍ମ ଚାରିଗୋଟି ପର୍ଯ୍ୟାୟ ଦେଇ ଆସିଛି ବୋଲି ସେ କହିଛନ୍ତି । ତାର ମୌଳିକ ରୂପରେ ଧର୍ମ ବ୍ୟକ୍ତିଗତ ମୋକ୍ଷ ବା ମନୁଷ୍ୟ ଆତ୍ମାର ମୁକ୍ତି । ଦ୍ୱିତୀୟତଃ ପ୍ରତ୍ୟେକ ମନୁଷ୍ୟ ମନୁଷ୍ୟ ମଧ୍ୟରେ ଭ୍ରାତୃତ୍ୱର ରକ୍ଷଣାବେକ୍ଷଣ ଯାହା ନୈତିକତା ଉପରେ ଆଧାରିତ ହୋଇଥିବ । ତୃତୀୟ ପର୍ଯ୍ୟାୟରେ ମନୁଷ୍ୟ ସେହି ବ୍ୟକ୍ତିତ୍ୱର ଉପାସନା କରିବ ଯେ ତାଙ୍କ ଜୀବନର ଅଭାବକୁ ପୂର୍ଣ୍ଣ କରିପାରିବ ଏବଂ ପରିଶେଷରେ ଅଲୌକିକ କର୍ମ କରୁଥିବା ବ୍ୟକ୍ତିର ଉପାସନା କରିବ ।

ଧର୍ମ ପ୍ରାଥମିକ ଅବସ୍ଥାରେ ଯାବତୀୟ ଉନ୍ନତି ପ୍ରଦାନ କରିବା ପରେ ମୁକ୍ତି ଆଡକୁ ଅଗ୍ରସର କରାଇବ, ଶ୍ରେୟସ୍‌ରୁ ଶ୍ରେୟସ୍ ଆଡକୁ ମାର୍ଗ ଉନ୍ମୋଚିତ କରିବ ।

ଧର୍ମର କେନ୍ଦ୍ର ମନୁଷ୍ୟ ଓ ମନୁଷ୍ୟ ମଧ୍ୟରେ ସମ୍ପର୍କ, ମନୁଷ୍ୟ ଓ ଈଶ୍ୱର ମଧ୍ୟରେ ସମ୍ପର୍କ ନୁହେ । ସେଥିପାଇଁ ସେ ବ୍ୟକ୍ତିପୂଜାର ବିରୋଧ କରି ହିନ୍ଦୁ ସମାଜ କିପରି ଭାବରେ କର୍ତ୍ତବ୍ୟରେ ଅବହେଳା କରି ଧର୍ମକୁ ଅନ୍ଧବିଶ୍ୱାସ ଓ ପୁରୋହିତ ସର୍ବସ୍ୱ କରି ରାଷ୍ଟ୍ର ଅବନତିର କାରଣ ହୋଇଛି ତାହା ବ୍ୟକ୍ତ କରିବା ବେଳେ ଧର୍ମ ମନୁଷ୍ୟକୁ ତର୍କସମ୍ମତ କାରଣ ଦିଗକୁ, ଅନ୍ଧବିଶ୍ୱାସରୁ ମୁକ୍ତ କରି ସତ୍ୟର ଅନୁସନ୍ଧାନରେ ଅଗ୍ରସର ହେବା ପାଇଁ ମନୁଷ୍ୟର ସ୍ୱାଧୀନତା ବା ମୁକ୍ତି ଉପରେ ଗୁରୁତ୍ୱ ଦେଇଛନ୍ତି । ଈଶ୍ୱରଙ୍କୁ ବିଶ୍ୱାସ କରିବାଠାରୁ ଆତ୍ମାକୁ ବିଶ୍ୱାସ କରିବା ଶ୍ରେୟସ୍କର । କାରଣ ମନୁଷ୍ୟ ଈଶ୍ୱରଙ୍କୁ ବିଶ୍ୱାସ କରି ପୁରୋହିତବାଦ ସୃଷ୍ଟି କରିଛି ଏବଂ ଏହି ପୁରୋହିତବାଦ ମନୁଷ୍ୟକୁ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ନିଜ ଅଧୀନରେ ନିୟନ୍ତ୍ରିତ କରି ରଖିଛି । ଭାରତରେ ଧାର୍ମିକ ବିବେଚନା ଏତେ ବ୍ୟାପକ ଯେ ତାହା ମନୁଷ୍ୟ ଜୀବନର ସମସ୍ତ ବିଭବକୁ ଜନ୍ମଠାରୁ ମୃତ୍ୟୁ ଯାଏ ଆବୋରି ବସିଛି ଏବଂ ପାର୍ଲାମେଣ୍ଟ ପ୍ରତ୍ୟେକ ଧର୍ମ ଉପରେ ସାର୍ବଭୌମ କ୍ଷମତା ରଖିବା ଉପରେ ଜୋର ଦେଇଛନ୍ତି ।

ହିନ୍ଦୁଧର୍ମର ଯାବତୀୟ କୁସଂସ୍କାର, ପୁରୋହିତବାଦ ଓ ଦ୍ୱନ୍ଦକୁ ଲକ୍ଷ୍ୟ କରି ସେ ଏହାର ସଂସ୍କାର ଓ ପୁନର୍ବିନ୍ୟାସ ଉପରେ ଗୁରୁତ୍ୱ ଦେଇ କହିଛନ୍ତି, ''ହିନ୍ଦୁ ସମାଜକୁ ଦୁଇଟି ମୁଖ୍ୟ ନୀତି ଉପରେ ପୁନର୍ଗଠନ କରିବାକୁ ହେବ । ପ୍ରଥମତଃ ସମାନତା (equality) ଓ ଦ୍ୱିତୀୟରେ ଜାତି ପ୍ରଥାର ବିଲୋପ ବା ଅନୁପସ୍ଥିତି । ଏହି ପ୍ରକାର ଅନ୍ତଃସ୍ଥ ଶକ୍ତି ବ୍ୟତୀତ ହିନ୍ଦୁମାନଙ୍କ ପାଇଁ ସ୍ୱରାଜ୍ୟ ଦାସତ୍ୱର ପାହାଚ ହେବ ।'' ତାଙ୍କ ମତରେ ବେଦାନ୍ତ ଦର୍ଶନର ଆଦର୍ଶ ବ୍ରାହ୍ମଣତ୍ୱବାଦର ପରାକାଷ୍ଠାର ପ୍ରଦର୍ଶନ ମାତ୍ର । ଏହା ବୌଦ୍ଧ ଆନ୍ଦୋଳନର ଉଦାରବାଦୀ ବିଚାରର ବିରୋଧାଭାସ । ବୌଦ୍ଧ ଧର୍ମ କେବଳ ଏକ ପ୍ରଗତି ଓ ଗୌରବୋଜ୍ଜ୍ୱଳ ସଭ୍ୟତା ଦେଇ ପାରିବ ବୋଲି ମତଦେଇ ସେ ବୁଦ୍ଧଙ୍କ ପ୍ରତି ବେଶି ବେଶି ଆକୃଷ୍ଟ ହୋଇଥିଲେ । କାରଣ ଧର୍ମ ତାଙ୍କ ନିମିତ୍ତ ହୋଇଥିଲା ଯୁକ୍ତିସମ୍ମତ, ନୈତିକତା ଆଧାରିତ ଏବଂ ଆଧ୍ୟାତ୍ମିକ । ଏହା ମଧ୍ୟ ଧର୍ମ ନିରପେକ୍ଷ । ତେଣୁ ସେ ଧାମକୁ ଧର୍ମ ଭାବରେ ଗ୍ରହଣ କରି ଧର୍ମ 'ବ୍ୟକ୍ତିଗତ' ହେବାବେଳେ ଧାମ 'ସାମାଜିକ' ବୋଲି ମତ ଦେଇଥିଲେ ।

ବୌଦ୍ଧ ଧର୍ମର ''ଧାମ ସମ୍ପର୍କରେ ମତ ଦେଇ ସେ କହିଲେ, ''ଧାମରେ ପ୍ରାର୍ଥନା, ତୀର୍ଥଯାତ୍ରା, କର୍ମକର୍ମାଣି, ଉତ୍ସବ ଅନୁଷ୍ଠାନ ଓ ବଳି ଇତ୍ୟାଦିର ସ୍ଥାନ

ନାହିଁ । ନୈତିକତା ଏହାର ସାରାଂଶ । ତାହା ବ୍ୟତୀତ ଧାମ ଧାମ ନୁହେ ।'' ସେ ପୁନରାୟ ଧାମ ମନୁଷ୍ୟ ମଧ୍ୟରେ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଉତ୍ତମ ସମ୍ପର୍କ ବୋଲି କହି ସମାଜ ଧାମ ବ୍ୟତୀତ ରହିପାରିବ ନାହିଁ କାରଣ ଏହା ସୁସମ୍ପର୍କ ବା ଠିକ୍ ସମ୍ପର୍କକୁ ସୂଚିତ କରେ ।

ଧର୍ମ ଭାବରେ ଧାମ ଈଶ୍ୱର ବିଶ୍ୱାସ, ଆତ୍ମାରେ ବିଶ୍ୱାସ, ଈଶ୍ୱର ଉପାସନା ଇତ୍ୟାଦିକୁ ଖାରଜ କରିଦେଇଛନ୍ତି । ବୁଦ୍ଧଙ୍କର ଧାମ ତାଙ୍କ ପାଇଁ ହୋଇଛି ପ୍ରକୃତ ଧର୍ମ । ଯାହାର ଉଦ୍ଦେଶ୍ୟ ଦେଉଛି ପ୍ରତ୍ୟେକ ବ୍ୟକ୍ତି ବିଶେଷଙ୍କ ମଧ୍ୟରେ ଉତ୍ତମ ସମ୍ପର୍କ ସ୍ଥାପନ କରି ବିଶ୍ୱକୁ ଗଠନ କରିବା ।

ଆମ୍ବେଦକର ହିନ୍ଦୁ ଧର୍ମର ସ୍ଥାୟିତ୍ୱ ବିରୁଦ୍ଧରେ କୌଣସି ମତ ଦେଇ ନାହାନ୍ତି । ଯଦିଓ ପ୍ରଥମ ଅବସ୍ଥାରେ ହିନ୍ଦୁଧର୍ମ 'ମିଶନାରୀ ଧର୍ମ' ଭାବରେ କାର୍ଯ୍ୟ କରିଛି, ପରବର୍ତ୍ତୀ ସମୟରେ ଏହା 'ଅସମତା ଧର୍ମ' ଆଡକୁ ଟାଣି ହୋଇଯାଇଛି କାରଣ ଏହା ମଧ୍ୟରେ ବର୍ଣ୍ଣ ବ୍ୟବସ୍ଥାର ପ୍ରଚଳନ ହିନ୍ଦୁ ସମାଜ ବ୍ୟବସ୍ଥାକୁ ସୁସଂହତ କରିବା ବଦଳରେ ଅସଂହତ କରିଛି । ଏଥିପାଇଁ ସେ ହିନ୍ଦୁ ସମାଜକୁ ସମାନତା ଓ ଜାତିବିହୀନ ନୀତି ଉପରେ ପୁନର୍ଗଠନ କରିବାକୁ ଚାହିଁଛନ୍ତି । ଏବଂ ଯଦି ହିନ୍ଦୁ ସମାଜର ଏହି ଅନ୍ତର୍ନିହିତ ଶକ୍ତି ନରହେ, ତେବେ ସ୍ୱରାଜ ସେମାନଙ୍କ ନିମିତ୍ତ କେବଳ ଦାସତ୍ୱ ଆଡକୁ ଆଉ ଏକ ପାହାଚ ହେବ ବୋଲି ମତ ଦେଇଛନ୍ତି ।

ସେ ତେଣୁ ବୌଦ୍ଧ ଧର୍ମ ଉପରେ ଗୁରୁତ୍ୱ ପ୍ରଦାନ କରିଛନ୍ତି କାରଣ ବୌଦ୍ଧଧର୍ମ ଜୀବନ ବ୍ୟକ୍ତିର ନୈତିକ ପୁନର୍ଜାଗରଣ ଓ ସାମାଜିକ ମୁକ୍ତି ଆଡକୁ ଲକ୍ଷ୍ୟ ରଖେ । ସମାଜରେ ଥିବା ପ୍ରତ୍ୟେକ ବ୍ୟକ୍ତି ନିଜର ନୈତିକ ଉନ୍ନତି ସହିତ ଅନ୍ୟମାନଙ୍କର ଉନ୍ନତି ପ୍ରତି ଚେଷ୍ଟା କରିବା ଆବଶ୍ୟକ । ତାଙ୍କ ବିଚାରରେ ବୁଦ୍ଧଙ୍କର ଉପଦେଶ ସାମାଜିକ ଜୀବନର ଆବଶ୍ୟକତା ପାଇଁ ପ୍ରୟୋଗ କରାଯାଇପାରେ । କାରଣ ବୁଦ୍ଧ ସାମାଜିକ, ଆର୍ଥିକ ଓ ରାଜନୈତିକ ଭାବଧାରାକୁ ନୈତିକତା ଭିତ୍ତି ଉପରେ ପ୍ରତିଷ୍ଠିତ କରିବାର ଚେଷ୍ଟା କରିଛନ୍ତି । ସାମାଜିକ ଓ ରାଜନୈତିକ ଅବସ୍ଥାରେ ବ୍ୟକ୍ତି ଜୀବନର ଏକତ୍ୱ ପରେ ମନୁଷ୍ୟ ଜୀବନକୁ ସମାନତା ଓ ସ୍ୱାଧୀନତାର ଆଦର୍ଶ ଆଡକୁ ମୁହାଁଇପାରିବ । ସେ ବୁଦ୍ଧଙ୍କର ପ୍ରେମ ଓ ଦୟା ପ୍ରତି ଆକୃଷ୍ଟ ହୋଇଛନ୍ତି । ଏବଂ ମାନବିକ ସେବା ନିମିତ୍ତ ନିଜର କାର୍ଯ୍ୟକୁ ପରିଚାଳିତ କରିଛନ୍ତି ।

ବୁଦ୍ଧଙ୍କ ପ୍ରତି ତାଙ୍କର ଆବେଦନ ଖୁବ୍ ବେଶି କାରଣ ବୁଦ୍ଧ ତାଙ୍କର

ଶିଷ୍ୟମାନଙ୍କୁ ନିଜ ନିଜର ଚେତନା ଉପରେ ବିଶ୍ୱାସ କରିବାକୁ ଉପଦେଶ ଦେଇଛନ୍ତି । ବୁଦ୍ଧଙ୍କ ଦର୍ଶନ ହିଁ କେବଳ ହିନ୍ଦୁଦର୍ଶନର ଚାତୁର୍ବର୍ଣ୍ଣ୍ୟ ଦୂର କରିବାର ଅବ୍ୟର୍ଥ ଔଷଧ । ଜାନୁୟାରୀ ୧୯୨୯ ମସିହା ବେଳକୁ ଆମ୍ବେଦକର ଅସ୍ପୃଶ୍ୟମାନଙ୍କ ପାଇଁ ସ୍ୱତନ୍ତ୍ର ନିର୍ମାଣକୁ ବିରୋଧ କରି ଭାଉରାଓ ଗାଇକୱାଡ଼୍‌ଙ୍କୁ ପତ୍ର ଲେଖିଛନ୍ତି । ୧୯୨୭ରେ ମହାଦ ସତ୍ୟାଗ୍ରହ ପରେ ଅସ୍ପୃଶ୍ୟମାନଙ୍କର ସାମାଜିକ ଓ ରାଜନୈତିକ ସଂଘର୍ଷ ଏକ ନୂତନ ମୋଡ ନେଇଛି । ପ୍ରତେକ ଅନୁନ୍ନତ ଶ୍ରେଣୀ ସମ୍ମିଳନୀରେ ହିନ୍ଦୁଧର୍ମ ତ୍ୟାଗ କରିବାକୁ ପ୍ରସ୍ତାବ ଗ୍ରହଣ କରାଯାଇଛି । ୨୯ ମେ ୧୯୨୯ରେ ଜଲଗାଓଁ ଠାରେ ହୋଇଥିବା ସମ୍ମିଳନୀରେ ହିନ୍ଦୁଧର୍ମ ପରିତ୍ୟାଗ କରି ଯେକୌଣସି ଧର୍ମ ଗ୍ରହଣ କରିବାକୁ ପ୍ରସ୍ତାବ ନିଆଯାଇଛି । କିନ୍ତୁ ଅଗଷ୍ଟ ୧୯୩୦ ମସିହାରେ ନାଗପୁରଠାରେ ଅନୁଷ୍ଠିତ ପ୍ରଥମ ଅନୁନ୍ନତ ଶ୍ରେଣୀ କଂଗ୍ରେସରେ ଉଦ୍‌ବୋଧନ ଦେଇ ସବର୍ଣ୍ଣ ହିନ୍ଦୁମାନେ ତାଙ୍କ ଉପରେ ଯେତେ ଅତ୍ୟାଚାର କଲେ ମଧ ହିନ୍ଦୁ ଧର୍ମ ସେ ଛାଡିବେ ନାହିଁ ବୋଲି କହିଛନ୍ତି । ଏଥିରୁ ତାଙ୍କ ମନରେ ଧର୍ମ ପରିବର୍ତ୍ତନ ନେଇ ଦ୍ୱନ୍ଦ ସୁସ୍ପଷ୍ଟ । ଦିନ ପରେ ଦିନ ସେ ଏହି ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଯେ ଧର୍ମ ପରିବର୍ତ୍ତନ ଅସ୍ପୃଶ୍ୟମାନଙ୍କ ପାଇଁ ନିହାତି ଆବଶ୍ୟକ ।

୧୯୩୯ ମଧଭାଗରେ ଖବର ପ୍ରଚାରିତ ହେଲା ଯେ ଆମ୍ବେଦକର ଇସଲାମ ଧର୍ମ ଗ୍ରହଣ କରୁଛନ୍ତି । ସେ ସମ୍ପାଦକଙ୍କୁ ପତ୍ର ଲେଖି ସେଥିରେ ଧର୍ମ ପରିବର୍ତ୍ତନ କରିବା ନିଶ୍ଚିତ କିନ୍ତୁ ଇସଲାମ ଧର୍ମ ଗ୍ରହଣ କରିବେ ନାହିଁ ବୋଲି ଉଲ୍ଲେଖ କରିଛନ୍ତି । ସେ ୧୯୩୫ ଅକ୍ଟୋବର ମାସରେ ୟେଲା (ମହାରାଷ୍ଟ୍ରର ନାସିକ) ଠାରେ ହେବାକୁ ଥିବା ସମ୍ମିଳନୀରେ ନିଜର ଧର୍ମ ପରିବର୍ତ୍ତନ କରିବେ ବୋଲି ସୂଚନା ଦେବାର ଖବରଟି ପ୍ରଚାରିତ ହେଲା । ମହାରାଷ୍ଟ୍ରର ହିନ୍ଦୁ ସମାଜ ସଂସ୍କାରକମାନେ ଏକ ପତ୍ର ଲେଖି ସେ ଧର୍ମ ପରିବର୍ତ୍ତନ ନକରନ୍ତୁ ବୋଲି ପ୍ରବର୍ତ୍ତାଇଲେ । ଏହାର ଉତ୍ତରରେ ସେ ଭାଷଣ ଦେଇ କହିଥିଲେ, ''ଦୁର୍ଭାଗ୍ୟର କଥା ଯେ ମୁଁ ଅସ୍ପୃଶ୍ୟ ହିନ୍ଦୁଭାବରେ ଜନ୍ମଗ୍ରହଣ କରିଛି । ଏହାକୁ ପ୍ରତିରୋଧ କରିବା ମୋର ଶକ୍ତି ବାହାରେ କିନ୍ତୁ ମୁଁ ଦୃଢ଼ଭାବରେ ଆପଣଙ୍କୁ କହିରଖେ ଯେ ମୁଁ ହିନ୍ଦୁ ଭାବରେ ମରିବି ନାହିଁ ।'' ହିନ୍ଦୁ ପରିସୀମା ବାହାରେ ଯଦି ଅନ୍ୟ ଏକ ପୃଥକ୍ ସମ୍ପ୍ରଦାୟ ଧର୍ମ ପରିବର୍ତ୍ତନ ଦ୍ୱାରା ହୁଏ, ତେବେ ସେମାନେ ମୁକ୍ତ ନାଗରିକ ଭାବରେ ଜୀବନ କଟାଇପାରିବେ ବୋଲି ସେ ବିଚାରୁଥିଲେ । କିନ୍ତୁ ଏହି ସମ୍ମିଳନୀରେ ଯେଉଁ ପ୍ରସ୍ତାବ ଗ୍ରହଣ କରାଗଲା ସେଥିରେ ସବର୍ଣ୍ଣ ହିନ୍ଦୁଙ୍କ ପର୍ଯ୍ୟାୟକୁ ନିଜକୁ ଉନ୍ନୀତ କରିବାର ସମସ୍ତ ସଂଗ୍ରାମକୁ ବାଦ୍ ଦିଆଗଲା ।

ଆମ୍ବେଦକରଙ୍କ ଧର୍ମ ପରିବର୍ତ୍ତନ ଘୋଷଣାରେ ବିଭିନ୍ନ ନେତୃମଣ୍ଡଳୀ ହତ ଚକିତ ହୋଇଗଲେ । ଗାନ୍ଧୀଜୀ କହିଲେ, ''ଏହା ଏକ ଦୁର୍ଭାଗ୍ୟଜନକ ଘଟଣା । କିନ୍ତୁ ଧର୍ମ ହେଉଛି ବ୍ୟକ୍ତିର ଶରୀର ଅପେକ୍ଷା ଆତ୍ମିକ ସଂହତି । ବିଶ୍ୱାସ ପରିବର୍ତ୍ତନ କରିଦେଲେ ଉଦ୍ଦେଶ୍ୟ ପୂରଣ ହେବ ନାହିଁ । ଧର୍ମ ମୂଲଚାଲର ବିଷୟ ନୁହେ ।'' ଭି.ଡି. ସବରକର ମଧ୍ୟ ଅନୁନ୍ନତ ଶ୍ରେଣୀ ଇସଲାମ ବା ଖ୍ରୀଷ୍ଟଧର୍ମ ଗ୍ରହଣ କଲେ ସେମାନଙ୍କର ଅବସ୍ଥାରେ ପରିବର୍ତ୍ତନ ହେବ ଏବଂ ସେମାନେ ସମାନ ବ୍ୟବହାର ପାଇବେ ଏହା ଭୁଲ ବୋଲି ସତର୍କ କରିଦେଲେ । ସେ ଆମ୍ବେଦକରଙ୍କୁ ସମାନତା ପାଇଁ ଲଢ଼େଇ କରିବାକୁ କହିଲେ । ରାଜେନ୍ଦ୍ର ପ୍ରସାଦ ଏହା କରିବା ଦ୍ୱାରା ଆମ୍ବେଦକର ସମାଜ ସଂସ୍କାରକମାନଙ୍କ କାର୍ଯ୍ୟକୁ ଅଧିକ ଜଟିଳ କରିଦେବେ ବୋଲି ମତ ଦେଲେ ।

ଆମ୍ବେଦକର ଗାନ୍ଧୀଜୀଙ୍କ ବିଚାର ସହିତ ଏକମତ ହୋଇ ନଥିଲେ । ଯେଉଁ ସମ୍ମିଳନୀରେ ଯେଉଁ ପ୍ରସ୍ତାବ ଗ୍ରହଣ କରାଯାଇଥିଲା, ତାହା ବୁଝିବିଚାରି କରାଯାଇଥିଲା । କାରଣ ହିନ୍ଦୁଧର୍ମର ମୂଳ ହେଉଛି ଅସମାନତା ଓ ଅନୁନ୍ନତ ଶ୍ରେଣୀ ସେଥିରେ ରହି କେବେ ହେଲେ ସେମାନଙ୍କର ମନୁଷ୍ୟତ୍ୱ ପାଇପାରିବେ ନାହିଁ । ଗାନ୍ଧୀଜୀଙ୍କ ମତ ଅନୁସାରେ ବ୍ୟକ୍ତି ଜୀବନରେ ଧର୍ମର ଆବଶ୍ୟକତାକୁ ସେ ଗ୍ରହଣ କରିଥିଲେ ହେଁ  ନିଜର ବଂଶାନୁକ୍ରମିକ ଧର୍ମକୁ ଧରି ରଖିବାକୁ ସେ ବିରୋଧ କରିଥିଲେ । ନାସିକର ରକ୍ଷଣଶୀଳ ହିନ୍ଦୁମାନେ ଅସବର୍ଣ୍ଣମାନେ ଧର୍ମତ୍ୟାଗ କରିବା ଖବର ଶୁଣି ଉତ୍‌ଫୁଲ୍ଲିତ ହୋଇ ଉଠିଲେ । ଅବ୍ରାହ୍ମଣମାନେ ବିଚାର କଲେ ଯେ ଧର୍ମ ସମ୍ପର୍କରେ ନିଷ୍ପତ୍ତିନେବା ଅଧିକାର କେବଳ ବ୍ରାହ୍ମଣମାନଙ୍କର ରହିଛି ।

ଆମ୍ବେଦକର ମସୁରକର ମହାରାଜାଙ୍କୁ କହିଲେ ଯେ ଅସବର୍ଣ୍ଣମାନେ ହିନ୍ଦୁ ଧର୍ମ ତ୍ୟାଗ କରିବେ, ତେବେ ହିନ୍ଦୁଧର୍ମର ବିଶେଷ କିଛି କ୍ଷତି ହେବ ନାହିଁ । ତାର ଉତ୍ତରରେ ମହାରାଜା ଭବିଷ୍ୟତରେ ହିନ୍ଦୁଧର୍ମର ବିନାଶ ହେବ ବୋଲି ମତ ଦେଲେ । ସେ ମତ ଦେଇ ହିନ୍ଦୁନେତାମାନେ ଏକ ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ଅସ୍ପୃଶ୍ୟତା ଦୂର କରିବାକୁ ବଦ୍ଧ ପରିକର ହେବାକୁ ଉପଦେଶ ଦେଲେ କାରଣ ଏହି ସମସ୍ୟା ଅତ୍ୟନ୍ତ ଗମ୍ଭୀର ।

ସମଗ୍ର ଦେଶରେ ଏହାକୁ ନେଇ ନାନାଦି ବାଦବିସମ୍ବାଦ ଓ ଝଡ଼ ସୃଷ୍ଟି ହେବାକୁ ଲାଗିଲା । ଆମ୍ବେଦକର ଧର୍ମାନ୍ତରୀକରଣ ପାଞ୍ଚବର୍ଷ ମଧ୍ୟରେ ହେବ ଏବଂ

ଏହି ସମୟ ମଧ୍ୟରେ ସବର୍ଣ୍ଣ ହିନ୍ଦୁମାନେ ଯଦି କିଛି ସକାରାତ୍ମକ କାର୍ଯ୍ୟ କରି ଦେଖାନ୍ତି, ତେବେ ସେ ଏହାର ପୁନର୍ବିଚାର କରିବେ ବୋଲି କହିଲେ ।

ସେ ଶିଖ ଧର୍ମ ସମ୍ପ୍ରଦାୟ ମଧ୍ୟରେ ନିଜ ସମ୍ପ୍ରଦାୟକୁ ମିଶାଇବାକୁ ଚାହୁଁଥିଲେ କାରଣ ମୁସଲମାନ ଧର୍ମ ମଧ୍ୟରେ ମିଶିବାରେ କେତେକ ବିପଦ ଥିଲା । ୧୯୩୬, ପୁନାଠାରେ ଅନୁଷ୍ଠିତ ଅନୁନ୍ନତ ସମ୍ପ୍ରଦାୟ ସମ୍ମିଳନୀ ଆମ୍ବେଦକରଙ୍କର ଧର୍ମାନ୍ତରୀକରଣ ପ୍ରସ୍ତାବକୁ ଗ୍ରହଣ କଲେ ନାହିଁ, କାରଣ ଏହାର ପରିଣତି ଭୟାନକ ହେବ ବୋଲି ସେମାନେ ଉପଲବ୍ଧି କଲେ ।

୧୯୩୬ ଏପ୍ରିଲ ୧୩ ଓ ୧୪ ତାରିଖରେ ସେ ଶିଖ୍ ମିଶନ୍ ସମ୍ମିଳନୀ ଅମୃତସରଠାରେ ଯୋଗ ଦେଇ ସେଠାରେ ଶିଖ୍ ସମ୍ପ୍ରଦାୟ ସମାନତା ଉପରେ ପ୍ରତିଷ୍ଠିତ ଓ ସେ ଏ ପର୍ଯ୍ୟନ୍ତ ହିନ୍ଦୁଧର୍ମ ତ୍ୟାଗ କରିବାକୁ ନିଷ୍ପତ୍ତି ନେଇ ନାହାନ୍ତି ବୋଲି କହିଲେ । ୧୯୩୬ ମେ ୩୦ ଓ ୩୧ ତାରିଖରେ ବମ୍ବେର ଦାଦାରଠାରେ ସମ୍ମିଳନୀ ହେଲା । କିପରି ଭାବରେ ଯେଉଁଲା ଠାରେ ନିଆଯାଇଥିବା ପ୍ରସ୍ତାବ କାର୍ଯ୍ୟକାରୀ ହୋଇପାରିବ ତା'ର ଆଲୋଚନା କରାଗଲା । ସେଠାରେ ମଧ୍ୟ ସେ ଯେ ପର୍ଯ୍ୟନ୍ତ ଅସବର୍ଣ୍ଣମାନେ ହିନ୍ଦୁଧର୍ମ ମଧ୍ୟରେ ରହିଛନ୍ତି, ସେମାନଙ୍କର ମୁକ୍ତି ହୋଇପାରିବ ନାହିଁ ବୋଲି କହିଲେ । ଧର୍ମର ଉଦ୍ଦେଶ୍ୟ ବ୍ୟକ୍ତି ଜୀବନକୁ ଉନ୍ନତ କରିବା । ହିନ୍ଦୁ ଧର୍ମ ଭାଇଚାରା, ସମାନତା ଓ ସ୍ୱାଧୀନତା ଶିଖାଏ ନାହିଁ । ଏବଂ ସେମାନଙ୍କୁ ଏକ ସୁସ୍ଥ ପରିବେଶ ଦେବାକୁ ଅକ୍ଷମ । ଏଣୁ ହିନ୍ଦୁ ଧର୍ମ ତ୍ୟାଗ କରି ଅନ୍ୟ ଧର୍ମ ଗ୍ରହଣ କରିବା ଠାରୁ ଅନ୍ୟ କିଛି ବିକଳ୍ପ ନାହିଁ । ପରିଶେଷରେ ସେ ବୁଦ୍ଧଙ୍କର ବାଣୀରୁ ଏକ ଅନୁଚ୍ଛେଦ ଉଦ୍ଧୃତ କଲେ କିନ୍ତୁ ସେହି ଧର୍ମ ଗ୍ରହଣ କରିବେ ବୋଲି ସ୍ଥିର କରିଛନ୍ତି ବୋଲି ପ୍ରକାଶ କଲେ ନାହିଁ । ସେହି ସମ୍ମିଳନୀରେ ମାହର ସମ୍ପ୍ରଦାୟର ଲୋକମାନଙ୍କୁ ହିନ୍ଦୁ ଦେବଦେବୀ ପୂଜା ଉପାସନା କରିବାକୁ ନିଷିଦ୍ଧ କରାଗଲା । ସେ ଘୋଷଣା କଲେ ଅସବର୍ଣ୍ଣମାନଙ୍କର ସମସ୍ୟା ଶ୍ରେଣୀ ସଂଗ୍ରାମର ସମସ୍ୟା । କେବଳ ଧର୍ମାନ୍ତରୀକରଣ, ସେମାନଙ୍କୁ ସାମାଜିକ ବନ୍ଧନରୁ ମୁକ୍ତ କରି ଆର୍ଥିକ ଉନ୍ନତି ଓ ପ୍ରଗତି ଦିଗରେ ଆଗେଇନେବ । ଏ ସମ୍ପର୍କରେ କଂଗ୍ରେସ ନେତୃମଣ୍ଡଳୀ ମଧ୍ୟରେ ମଧ୍ୟ ଆଲୋଚନା ହେଲା । ଗୋବିନ୍ଦ ବଲ୍ଲଭ ପନ୍ତ ମତ ଦେଇ କହିଲେ ଯେ ଅସବର୍ଣ୍ଣମାନେ ହିନ୍ଦୁ ସମ୍ପ୍ରଦାୟ ମଧ୍ୟରେ ରହି ପୁନା ଚୁକ୍ତିର ସୁଫଳ ଭୋଗ କରନ୍ତୁ । ଯଦି ସେମାନେ ହିନ୍ଦୁ ଧର୍ମ ତ୍ୟାଗ କରନ୍ତି, ତେବେ ସେମାନଙ୍କୁ ପୁନା ଚୁକ୍ତିର ସୁଫଳ ମଧ୍ୟ ହରାଇବାକୁ ପଡିବ ।

ଏହାର ଉତ୍ତରରେ ଆମ୍ବେଦକର କଟାକ୍ଷ କରି କହିଥିଲେ, ''ଏହା କଂଗ୍ରେସ ନେତୃତ୍ୱଙ୍କର ଭୟଭୀତ କରି, ତାଙ୍କୁ ବାଧ କରି ତାଙ୍କ ଦଳ ଓ ସମ୍ପ୍ରଦାୟକୁ ହିନ୍ଦୁ ଧର୍ମରେ ରଖିବାର ଚାଲାକି ।'' ଶିଖ ସମ୍ପ୍ରଦାୟ ମଧ୍ୟରେ ଯୋଗ ଦେବା ସମ୍ପର୍କରେ ସେ କହିଥିଲେ, ''ଶିଖଧର୍ମ ସର୍ବପ୍ରଧାନ । ଯଦି ଦଳିତ ଶ୍ରେଣୀ ଇସଲାମ ବା ଖ୍ରୀଷ୍ଟଧର୍ମ ଗ୍ରହଣ କରନ୍ତି, ତେବେ ସେମାନେ କେବଳ ହିନ୍ଦୁ ଧର୍ମରୁ ପୃଥକ୍ ହେବେ ନାହିଁ ଅପରନ୍ତୁ ହିନ୍ଦୁ ସଂସ୍କୃତିଠାରୁ ବିଚ୍ଛିନ୍ନ ହୋଇଯିବେ । ଅପରପକ୍ଷରେ ଯଦି ସେମାନେ ଶିଖ୍ ହୁଅନ୍ତି, ତେବେ ସେମାନେ ହିନ୍ଦୁ ସଂସ୍କୃତି ମଧ୍ୟରେ ରହିବେ ।'' ପୁନରାୟ ସେ ମତ ଦେଇ କହିଲେ, ''ଇସଲାମ ବା ଖ୍ରୀଷ୍ଟଧର୍ମକୁ ଧର୍ମାନ୍ତରୀକରଣ ଦଳିତ ଶ୍ରେଣୀକୁ ବିଜାତୀୟ (denationalise) କରିଦେବ । ଯଦି ସେମାନେ ଇସଲାମ ଧର୍ମକୁ ଯାଆନ୍ତି, ତେବେ ମୁସଲମାନଙ୍କର ସଂଖ୍ୟା ଦ୍ୱିଗୁଣିତ ହେବ ଏବଂ ମୁସଲମାନମାନଙ୍କର ପ୍ରାଧାନ୍ୟର ବିପଦ ପ୍ରକୃତ ରୂପ ନେବ ।''

ମାଳବ୍ୟ ଓ ଗାନ୍ଧିଜୀଙ୍କର ମତକୁ ସେ ଅଗ୍ରାହ୍ୟ କରିଦେଇ କହିଲେ ଯେ ପୁନାଚୁକ୍ତି ଅନୁସାରେ ଦଳିତବର୍ଗଙ୍କର ଉନ୍ନତି ପାଇଁ ସେମାନଙ୍କର ପ୍ରତିଜ୍ଞାକୁ ସେମାନେ ରକ୍ଷା କରିନାହାନ୍ତି । ସେ ଶିଖଧର୍ମକୁ ଧର୍ମାନ୍ତରୀକରଣ ସମ୍ପର୍କରେ ଉଲ୍ଲେଖ କରି କହିଲେ, ''ଶିଖ ଧର୍ମକୁ ଧର୍ମାନ୍ତରୀକରଣ ବହୁ ବିଶିଷ୍ଟ ହିନ୍ଦୁ ଏପରିକି ଶଙ୍କରାଚାର୍ଯ୍ୟ ଓ ଡକ୍ଟର କୁର୍ଟାକୋଟି ମଧ୍ୟ ଅନୁମୋଦନ କରିଛନ୍ତି । ଯଦି ମୁଁ ଏହାକୁ ବିକଳ୍ପ ଭାବେ ବିଚାର କରିଛି, ଏହାର କାରଣ ଏହି ଯେ ମୁଁ ହିନ୍ଦୁମାନଙ୍କର ଭାଗ୍ୟ ନେଇ କିଛିଟା ଦାୟିତ୍ୱ ଅନୁଭବ କରିଛି ।'' ସେ ଏପରିକି ତାଙ୍କର କେତେକ ସମର୍ଥକମାନଙ୍କୁ ଶିଖ୍ ଧର୍ମ ସମ୍ପର୍କରେ ଅଧ୍ୟୟନ କରି ସବିଶେଷ ଜାଣିବା ପାଇଁ ୧୮ ସେପ୍ଟେମ୍ବର ୧୯୩୬ରେ ଅମୃତସର ପଠାଇଥିଲେ । ଏପରିକି ତାଙ୍କର ଜଣେ ଘନିଷ୍ଠ ସହଯୋଗୀ ଶ୍ରୀ ସୁରବ ଟିପ୍‌ନିସଙ୍କର, ଯଦି ସେ ଧର୍ମାନ୍ତରୀକରଣ ଚାହୁଁଛନ୍ତି, ତେବେ ନିଜର କାହିଁକି ଏକ ଧର୍ମ ପ୍ରବର୍ତ୍ତନ କରୁନାହାନ୍ତି ପ୍ରଶ୍ନର ଉତ୍ତର ଦେଇ କହିଥିଲେ, ''ମୁଁ ହେଉଛି ମାହର । ଶଙ୍କରାଚାର୍ଯ୍ୟ ନୁହେ । ମାହର ଦ୍ୱାରା ପ୍ରବର୍ତ୍ତିତ ଧର୍ମର କିଏ ଅନୁଗାମୀ ହେବ ?''

ଯଦିଓ ଧର୍ମ ପରିବର୍ତ୍ତନର ପ୍ରଭାବ ତାଙ୍କ ଉପରେ କାର୍ଯ୍ୟ କରୁଥିଲା ଏବଂ ହିନ୍ଦୁ ଧର୍ମ ତ୍ୟାଗ କରି ଅନ୍ୟ ଧର୍ମ ଗ୍ରହଣ କରିବାକୁ ସେ ତାଙ୍କର ଅନୁଗାମୀମାନଙ୍କୁ କହୁଥିଲେ, ତଥାପି ସେ ବହୁଭାବରେ ବୌଦ୍ଧ ଧର୍ମ ଦ୍ୱାରା ପ୍ରଭାବିତ ଥିଲେ । ବୌଦ୍ଧ ଦର୍ଶନର ଉତ୍କର୍ଷ ଗୁଡିକ ସମ୍ପର୍କରେ ତାଙ୍କର ମତ ଥିଲା ନିମ୍ନୋକ୍ତ ପ୍ରକାରର ।

(କ) ବୌଦ୍ଧ ଧର୍ମ ଏ ଜୀବନର ଅନୁଭୂତି ଦାବି କରେ ଏବଂ ଜୀବନର ଦେବତ୍ୱ, କେବଳ ବର୍ତ୍ତମାନ ହିଁ ମିଳିପାରେ, ମୃତ୍ୟୁ ପରେ ନୁହ ।

(ଖ) ଏହା ବାସ୍ତବବାଦ ପରେ ଆଧାରିତ, ଆଦର୍ଶବାଦ ନୁହେ ।

(ଗ) ଏହା ସ୍ୱାଧୀନତା, ସମାନତା, ସତ୍ୟ ଓ ନ୍ୟାୟ ଉପରେ ପ୍ରତିଷ୍ଠିତ । ଏହା ମାନବିକତା, ପ୍ରେମ ଓ ଶାନ୍ତି ଉପରେ ଗୁରୁତ୍ୱ ଦିଏ ।

(ଘ) ଏହା ଗତିଶୀଳ, ବିଜ୍ଞାନ ଭିତ୍ତିକ ଏବଂ ସର୍ବାଲିଙ୍ଗନ କରେ ।

(ଙ) ଜୀବନ ସମ୍ପର୍କରେ ଏହାର ବକ୍ତବ୍ୟ ଓ ଅର୍ଥ, ଜନ୍ମ ଓ ମୃତ୍ୟୁର ଉଦ୍ଦେଶ୍ୟ ଏବଂ ମୃତ୍ୟୁପରେ ଜୀବନ ସମ୍ପର୍କରେ ସ୍ପଷ୍ଟ, ବୁଦ୍ଧିଦୀପ୍ତ ଏବଂ ଯୁକ୍ତିନିଷ୍ଠ ।

(ଚ) ସର୍ବୋପରି ମନୁଷ୍ୟ ହିଁ ଏହାର ଅଧ୍ୟୟନ ଓ ପରୀକ୍ଷାର କେନ୍ଦ୍ର ବିନ୍ଦୁ ଏବଂ ମନୁଷ୍ୟ ଉପରେ ଅନ୍ୟ କିଛି ନୁହେ ।

କାହିଁକି ସେ ବୌଦ୍ଧ ଧର୍ମ ଗ୍ରହଣ କରିବାକୁ ଆଗ୍ରହୀ ଥିଲେ, ତାକୁ ଯଦି ବିଶ୍ଳେଷଣ କରିବା ତେବେ ତାହା ନିମ୍ନ ପ୍ରକାର ହେବ ।

(୧) ସେ ପ୍ରମାଣ କରିବାକୁ ଚାହୁଁଥିଲେ ଯେ ଅସବର୍ଣ୍ଣମାନେ ବୌଦ୍ଧ । ସେ ତାଙ୍କର ଅସବର୍ଣ୍ଣମାନଙ୍କର ମୂଳ କେଉଁଠି ଶୀର୍ଷକ ସନ୍ଦର୍ଭରେ ବର୍ତ୍ତମାନର ଅସବର୍ଣ୍ଣମାନେ ବୌଦ୍ଧ ଥିଲେ ବୋଲି ଉଲ୍ଲେଖ କରିଛନ୍ତି ।

(୨) ବୌଦ୍ଧ ଧର୍ମ ଭାରତର ଧର୍ମ ଏବଂ ବୁଦ୍ଧ ଅସବର୍ଣ୍ଣ ଲୋକଙ୍କ ନିକଟତମ ।

(୩) ଯେ କୌଣସି ବୈଜ୍ଞାନିକ ପରୀକ୍ଷାରେ ବୌଦ୍ଧ ଧର୍ମ ଉତ୍ତୀର୍ଣ୍ଣ ହୋଇପାରିବ ଏବଂ ଆଧୁନିକ ବିଶ୍ୱର ଭବିଷ୍ୟତକୁ ଦିଗ ନିର୍ଦ୍ଦେଶ ଦେବାର କ୍ଷମତା ଓ ଦକ୍ଷତା ଏହାର ରହିଛି ।

(୪) ଅସବର୍ଣ୍ଣମାନେ ବିଶ୍ୱ ବୌଦ୍ଧ ସମ୍ପ୍ରଦାୟ ସହିତ ଯୁକ୍ତ ହେଲେ ବିଶ୍ୱଭ୍ରାତୃତ୍ୱର ମାର୍ଗ ଉନ୍ମୋଚିତ ହେବ ।

ମେ ୧୯୫୦ ମସିହାରେ ସେ ଜନତା ପତ୍ରିକାର ପ୍ରତିନିଧିଙ୍କୁ

ସାକ୍ଷାତକାରରେ କହିଥିଲେ ଯେ ସେ ବୌଦ୍ଧ ଧର୍ମ ପ୍ରତି ଆକୃଷ୍ଟ । ୧୯୫୪ ଡିସେମ୍ବର ମାସରେ ଆମ୍ବେଦକର ରେଙ୍ଗୁନ୍ ଯାଇ ସେଠାରେ ୩ୟ ବୌଦ୍ଧ ସମ୍ମିଳନୀରେ ଯୋଗ ଦେଇଥିଲେ । ପୁନାର ଦେହରୋଡଠାରେ ବୁଦ୍ଧ ମୂର୍ତ୍ତି ଉନ୍ମୋଚନ ସମୟରେ ପାଣ୍ଡାରପୁରର ବିଠୋବାଙ୍କର ମୂର୍ତ୍ତି ବାସ୍ତବରେ ବୁଦ୍ଧ ମୂର୍ତ୍ତି ବୋଲି ଭାଷଣରେ କହିଥିଲେ ।

୧୯୫୬ ମେ ମାସରେ ବ୍ରିଟିଶ୍ ବ୍ରଡକାଷ୍ଟିଂ କର୍ପୋରେସନ, ଲଣ୍ଡନ ସହିତ ଏକ ସାକ୍ଷାତକାରରେ ସେ କାହିଁକି ବୌଦ୍ଧଧର୍ମକୁ ପସନ୍ଦ କରୁଛନ୍ତି, ତାହା ଉଲ୍ଲେଖ କରି କହିଥିଲେ, ''ବୌଦ୍ଧଧର୍ମ ତିନିଗୋଟିଏ ନୀତି ଉପରେ ଆଧାରିତ ଯାହା ଅନ୍ୟ ଧର୍ମରେ ଦେଖିବାକୁ ମିଳେ ନାହିଁ । ବୌଦ୍ଧ ଧର୍ମ ଶିକ୍ଷା ଦିଏ ପ୍ରଜ୍ଞା, କରୁଣା ଓ ସମତା । ଈଶ୍ୱର ବା ଆତ୍ମା ସମାଜକୁ ରକ୍ଷା କରି ପାରିବ ନାହିଁ ।''

୨୩ ସେପ୍ଟେମ୍ବର ୧୯୫୬ ମସିହାରେ ସେ ଏକ ପ୍ରେସ ବିଜ୍ଞପ୍ତି ଜରିଆରେ ଘୋଷଣା କଲେ ଯେ ତାଙ୍କର ବୌଦ୍ଧ ଧର୍ମକୁ ଧର୍ମାନ୍ତୀକରଣ ନାଗପୁରଠାରେ ୧୪ ଅକ୍ଟୋବର ୧୯୫୬ ଦଶହରା ଦିନ ୯ଟାରୁ ୧୧ଟା ମଧ୍ୟରେ ଅନୁଷ୍ଠିତ ହେବ । ସେ ନିଜେ ଏହି ନାଗପୁର ସ୍ଥାନକୁ ବାଛିଛନ୍ତି କାରଣ ଏହା ଏକ ଐତିହାସିକ ସ୍ଥାନ ଓ ପ୍ରାଚୀନ କାଳରେ ବୌଦ୍ଧନାଗମାନେ ଏଠାରେ ରହିଥିଲେ । ନାଗମାନେ ଭାରତର ବୌଦ୍ଧଧର୍ମର ପ୍ରସାର ଘଟାଇଥିଲେ । ବୌଦ୍ଧ ଧର୍ମ ବ୍ୟାପକ ହୋଇଥିଲା କାରଣ ଶୂଦ୍ର ଓ ଅତି ଶୂଦ୍ରମାନେ ଏହାକୁ ଆଦରି ନେଇଥିଲେ । ଏବଂ ନାଗପୁର ହେଉଛି 'ନାଗ' ମାନଙ୍କର ଭୂମି ।

''ବୌଦ୍ଧ ଧର୍ମ ଭାରତୀୟ ସଂସ୍କୃତିର ଅଙ୍ଗ । ମୁଁ ତେଣୁ ଯତ୍ନଶୀଳ ଯେ ମୋର ଧର୍ମାନ୍ତରୀକରଣ ଦେଶର ସଂସ୍କୃତି ଓ ଇତିହାସର ପରମ୍ପରାର କ୍ଷତି ପହଞ୍ଚାଇବ ନାହିଁ । ବୌଦ୍ଧ ଧର୍ମ ସାମାଜିକ ସ୍ୱାଧୀନତା, ବୌଦ୍ଧିକ ସ୍ୱାଧୀନତା, ଅର୍ଥନୈତିକ ସ୍ୱାଧୀନତା, ଓ ରାଜନୈତିକ ସ୍ୱାଧୀନତା ଶିକ୍ଷା ଦିଏ । କେବଳ ମନୁଷ୍ୟ ଓ ମନୁଷ୍ୟ ମଧ୍ୟରେ ସମାନତା ନୁହେ ବରଂ ପୁରୁଷ ଓ ନାରୀ ମଧ୍ୟରେ ସମାନତାର ଶିକ୍ଷା ପ୍ରଦାନ କରେ ।''

ଅକ୍ଟୋବର ୧୩ ତାରିଖ ୧୯୫୬ ଦିନ ସେ ଏକ ସାମ୍ବାଦିକ ସମ୍ମିଳନୀ ଡକାଇଲେ । ସେ ସାମ୍ବାଦିକ ମାନଙ୍କୁ କହିଲେ ତାଙ୍କର ବୌଦ୍ଧ ଧର୍ମ ଗ୍ରହଣ ବୁଦ୍ଧଙ୍କ ଦ୍ୱାରା ଦିଆଯାଇଥିବା ଉପଦେଶର ବିଶ୍ୱାସ ସହିତ ଜଡିତ । ମୁଁ ମଧ୍ୟ ଗାନ୍ଧିଜୀଙ୍କୁ

କହିଥିଲି ଯେ ଯଦିଓ ମୁଁ ଆପଣଙ୍କଠାରୁ ଅସବର୍ଣ୍ଣଙ୍କ ସମ୍ପର୍କରେ ଭିନ୍ନ ମତ ରଖେ, କିନ୍ତୁ ଯେତେବେଳେ ସମୟ ଆସିବ, ମୁଁ ଦେଶପାଇଁ ସବୁଠାରୁ କମ୍ ହାନିକର ମାର୍ଗକୁ ଗ୍ରହଣ କରିବି । ଏବଂ ତାହାହିଁ ସବୁଠାରୁ ଅଧିକ ଲାଭ । ମୁଁ ଦେଶକୁ ବୌଦ୍ଧ ଧର୍ମ ଗ୍ରହଣ କରି ଅର୍ପଣ କରୁଛି । କାରଣ ବୌଦ୍ଧ ଧର୍ମ ଭାରତୀୟ ସଂସ୍କୃତିର ଅବିଚ୍ଛିନ୍ନ ଅଙ୍ଗ ।''

ସେ ଭବିଷ୍ୟତବାଣୀ କରି କହିଥିଲେ ଯେ ସମୂହ ଧର୍ମାନ୍ତରୀକରଣର ପ୍ରବାହ ସମଗ୍ର ଭାରତକୁ ବ୍ୟାପିଯିବ ଏବଂ ଭାରତ ବୌଦ୍ଧ ଧର୍ମର ଦେଶ ହେବ ।

ବୌଦ୍ଧ ଧର୍ମର ଲକ୍ଷ୍ୟ, ''ବୁଦ୍ଧଂ ଶରଣଂ ଗଚ୍ଛାମି' ଅର୍ଥାତ୍ ମୁଁ ମୋ ନିଜକୁ ଜ୍ଞାନଦୀପ୍ତ ବ୍ୟକ୍ତି ନିକଟରେ ସମର୍ପିତ କରୁଛି । ସେ ବ୍ୟକ୍ତିର ନାମ ସହିତ କିଛି ଯାଏ ଆସେ ନାହିଁ । ଜ୍ଞାନ ହିଁ ଧର୍ମ । ଅନ୍ୟ ଲକ୍ଷ୍ୟ 'ସଂଘମ୍ ଶରଣମ୍ ଗଚ୍ଛାମି'' ଅର୍ଥାତ ମୁଁ ମୋ ନିଜକୁ ସଂଘ ନିକଟରେ ଅର୍ପଣ କରୁଛି । ସଂଘ ଅର୍ଥ ସାମାଜିକ ଜୀବନ । ତାଙ୍କ ମତରେ ବୁଦ୍ଧ ତାଙ୍କ ସମୟର ସବୁଠାରୁ ବଡ ସାମ୍ୟବାଦୀ । ସେ ବିବେକ ବନ୍ତ ଓ ବ୍ରାହ୍ମଣ ମାନଙ୍କର ଏକଛତ୍ରବାଦର ମୂଳପିଣ୍ଡକୁ ଉଠାଇ ଦୋହଲାଇ ଦେଇଥିଲେ ।

୧୪ ଅକ୍ଟୋବର ୧୯୫୬, ବିଜୟା ଦଶମୀ-ଦଶହରା । ସେହି ପବିତ୍ର ଦିନରେ ଅଶୋକ ୨୬୨ ଖ୍ରୀଷ୍ଟ ପୂର୍ବରେ ବୌଦ୍ଧ ଧର୍ମ ଗ୍ରହଣ କରିଥିଲେ । ତାହା ଥିଲା ଧାମ - ବିଜୟ ଦିବସ । ମେ ୧୯୫୬ରେ ସେ ତାଙ୍କ ଦ୍ୱାରା ଲିଖିତ ''ବୁଦ୍ଧ ଓ ତାଙ୍କର ଧାମ'' ପୁସ୍ତକ ସମାପ୍ତ କରି ଛପା ହେବା ପାଇଁ ପ୍ରେସକୁ ଦେଇଥିଲେ ।

ସେହି ଐତିହାସିକ ଦିବସ ଉପସ୍ଥିତ ହେଲା । ନାଗପୁରଠାରେ ଥିବା ଶ୍ରଦ୍ଧାନନ୍ଦ ପାଠ ନିକଟରେ ଥିବା ଭାସିନି ଇନ୍‌ଷ୍ଟିଚ୍ୟୁଟ୍ ନିକଟସ୍ଥ ୧୪ ଏକର ସରକାରୀ ଜାଗାକୁ ଏହି ପବିତ୍ର ଉତ୍ସବ ପାଇଁ ସ୍ଥିର କରାଯାଇଥିଲା । ଉତ୍ତର ଦିଗକୁ ଏକ ବିରାଟ ମଞ୍ଚ ନିର୍ମିତ ହେଲା । ବିଭିନ୍ନ ପତାକା ଶୋଭିତ ଏହି ମଞ୍ଚ ଉପରେ ପାଞ୍ଚଗୋଟି ବିରାଟ ବୌଦ୍ଧ ପତାକା ରଖାଯାଇ ଏକ ବିଶାଳ ଭାଷଣ ମଞ୍ଚ ଶୁଭ୍ର ବସନରେ ଆଚ୍ଛାଦିତ ହୋଇ ସାଞ୍ଚିସ୍ତୁପ ଆକୃତିକୁ ଲଙ୍ଘନ କରୁଥିଲା ।

ଅକ୍ଟୋବର ୧୪ ତାରିଖ ଦିନ ଲକ୍ଷ ଲକ୍ଷ ଲୋକ ଟ୍ରେନ୍ ବସ୍ ଓ ପଦବ୍ରଜରେ ମହାରାଷ୍ଟ୍ରର କୋଣ ଅନୁକୋଣରୁ ଆସି ନାଗପୁରର ଏହି ସ୍ଥାନକୁ ପ୍ରବେଶ

କରୁଥିଲେ । ସମସ୍ତଙ୍କର ପରିଧେୟ ଥିଲା ଶୁଭ୍ର ବସନ । ଦୀକ୍ଷାଭୂମି ଦିଗକୁ ମାଡି ଚାଲିଥିଲେ ଅଗଣିତ ନରନାରୀ, ହାତରେ ବୌଦ୍ଧ ପତାକା । ଦିନ ୯ଟା ବେଳକୁ ସମଗ୍ର ଦୀକ୍ଷାଭୂମି ଲୋକାରଣ୍ୟ ପାଲଟି ଯାଇଥିଲା ।

ବାବାସାହେବ ଆମ୍ବେଦକର, ପତ୍ନୀ ସବିତା ଆମ୍ବେଦକର, ନାନକଚାନ୍ଦ ରତ୍ତୁ ଓ ତାଙ୍କ ପ୍ରାଇଭେଟ ସେକ୍ରେଟେରୀ ଯେତେବେଳେ ସେହି ମଞ୍ଚ ନିକଟରେ ପହଞ୍ଚିଲେ, ସମବେତ ସେହି ବିଶାଳ ଜନତା ତାଙ୍କର ଏହି ମୁକୁଟ ବିହୀନ ସମ୍ରାଟଙ୍କ ପ୍ରତି ଶୁଭେଚ୍ଛା ଜଣାଇ ହର୍ଷୋତ୍‌ଫୁଲ୍ଲ ଧ୍ୱନିରେ କରତାଳି ଦେଲେ । ଧଳା ସିଲକ୍ ଧୋତି ଓ ଧଳା କୋଟ ପରିହିତ ହୋଇ ସେ ମଞ୍ଚ ଉପରେ ମହାମାନ୍ୟ ୟୁ ଚନ୍ଦ୍ରମଣି ମହାଥେରାଙ୍କ ନିକଟରେ ଉପବେଶନ କଲେ । ମହାଥେରା ଭାରତର ସର୍ବବରିଷ୍ଠ, ପ୍ରାଚୀନ ବୌଦ୍ଧ ସନ୍ୟାସୀ । ଦ୍ୱିତୀୟ ଧାଡିରେ ଦେବପ୍ରିୟ ଭାଲିସିହ୍ନା, ମହାବୋଧି ସୋସାଇଟି ଅଫ୍ ଇଣ୍ଡିଆର ସାଧାରଣ ସମ୍ପାଦକ, ମହାମାନ୍ୟ ସନ୍ୟାସୀଗଣ, ଏବଂ ବାବା ସାହେବଙ୍କ ଦ୍ୱାରା ଗଠିତ ବୌଦ୍ଧ ସମିତିର ସଦସ୍ୟମାନେ ଆସନ ଗ୍ରହଣ କରିଥିଲେ । ସକାଳ ୯.୪୦ ମିନିଟ୍‌ରେ ଏହି ଦୀକ୍ଷା ଉତ୍ସବ ଆରମ୍ଭ ହେଲା । ଚାରିଲକ୍ଷ ଲୋକ ଏହାକୁ ଦେଖିବାକୁ ସେଠାରେ ଉପସ୍ଥିତ ଥିଲେ । ଅଶି ବର୍ଷୀୟ ମହାମାନ୍ୟ ୟୁ. ଚନ୍ଦ୍ରମଣି ପାଲିଭାଷାରେ ଡକ୍ଟର ଆମ୍ବେଦକର ଓ ତାଙ୍କ ସ୍ତ୍ରୀ ସବିତା ଆମ୍ବେଦକରଙ୍କୁ ତ୍ରିଶରଣ ପାଠ କରାଇଲେ । ଭଗବାନ ବୁଦ୍ଧଙ୍କର ବିଶାଳ ମୂର୍ତ୍ତି ସମ୍ମୁଖରେ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଭାବେ ଦଣ୍ଡାୟମାନ ହୋଇ ସେମାନେ ତିନିଥର ସେହି ଶରଣକୁ ଉଚ୍ଚାରଣ କଲେ । "ବୁଦ୍ଧମ୍ ଶରଣମ୍ ଗଚ୍ଛାମି, ଧର୍ମଂ ଶରଣମ୍ ଗଚ୍ଛାମି, ସଂଘମ୍ ଶରଣମ୍ ଗଚ୍ଛାମି" । ତିନିଗୋଟି ଶରଣ ପରେ ପାଞ୍ଚଗୋଟି ଶୀଳ ମଧ ମରାଠୀ ଭାଷାରେ ଆବୃତ୍ତି କଲେ । ଯୋଡ ହସ୍ତରେ ଭଗବାନ ବୁଦ୍ଧଙ୍କ ମୂର୍ତ୍ତି ସମ୍ମୁଖରେ ଦଣ୍ଡାୟମାନ ହୋଇ ତିନିଥର ଶପଥ ଗ୍ରହଣ କରିବାପରେ ଶୁଭ୍ର ପଦ୍ମ ପୁଷ୍ପ ବୁଦ୍ଧଙ୍କୁ ଅର୍ପଣ କଲେ ।

ଶେଷ ହେଲା ଦୀକ୍ଷା ଉତ୍ସବ । ଯେତେବେଳେ ଆମ୍ବେଦକରଙ୍କର ବୌଦ୍ଧଧର୍ମରେ ଦୀକ୍ଷିତ ହେବା ଘୋଷଣା କରାଗଲା, ଲକ୍ଷ ଲକ୍ଷ ସମବେତ ଜନତା କରତାଳି ଧ୍ୱନିରେ ଏହାକୁ ସ୍ୱାଗତ କରି "ଜୟ ଭଗବାନ ବୁଦ୍ଧଙ୍କର ଜୟ" "ଜୟ ବାବାସାହେବ ଆମ୍ବେଦକରଙ୍କର ଜୟ" ଧ୍ୱନିରେ ସମଗ୍ର ଗଗନ ପବନକୁ ପ୍ରକମ୍ପିତ କଲା । ସେଠାରେ ଉପସ୍ଥିତ ଥିବା ଡି. ବାଲିସିହ୍ନା ଓ ଅନ୍ୟାନ୍ୟ ଅତିଥିମାନେ ବାବାସାହେବଙ୍କୁ ମାଲ୍ୟାର୍ପଣ କଲେ ।

ତୀର୍ଥଯାତ୍ରା ଶେଷ । ସମବେତ ଜନତାଙ୍କୁ ଉଦ୍‌ବୋଧନ ଦେଇ ବାବାସାହେବ କହିଲେ, "୧୯୩୫ ମସିହାରେ ମୁଁ ହିନ୍ଦୁଧର୍ମ ପରିତ୍ୟାଗ କରିବା ପାଇଁ ଆନ୍ଦୋଳନ ଆରମ୍ଭ କରିଥିଲି । ଏବଂ ସେହି ଦିନଠାରୁ ଅନବରତ ସଂଗ୍ରାମ କରିଚାଲିଛି । ଏହି ଧର୍ମାନ୍ତରୀକରଣ ମୋତେ ଅତ୍ୟନ୍ତ ଅବର୍ଣ୍ଣନୀୟ ତୃପ୍ତି ପ୍ରଦାନ କରିଛି । ମୋତେ ଲାଗୁଛି ମୁଁ ଯେପରି ନର୍କରୁ ଉଦ୍ଧାର ପାଇଛି ।"

ଆମ୍ବେଦକର ସମବେତ ଜନତାଙ୍କୁ ଆହ୍ୱାନ କଲେ ବୌଦ୍ଧ ଧର୍ମ ଗ୍ରହଣ କରିବାକୁ । ସେ ସେମାନଙ୍କୁ ତିନିଶରଣ ଓ ପଞ୍ଚଶୀଳ ଉଚ୍ଚାରଣ କରିବାକୁ କହିଲେ । ଏହା ସହିତ ସେ ନିଜେ ପ୍ରସ୍ତୁତ କରିଥିବା ବାଇଶି ଗୋଟି ଶପଥକୁ ପାଠ କରାଇଲେ । କାରଣ ସେ ଚାହୁଁଥିଲେ ତାଙ୍କର ସମର୍ଥକମାନେ ଜୀର୍ଣ୍ଣବସ୍ତ୍ର ପରିତ୍ୟାଗ କରିବା ପରି ତାଙ୍କର ସେହି ପୁରୁଣା ଧର୍ମକୁ ତ୍ୟାଗ କରନ୍ତୁ ଓ ଜଣେ ଜଣେ ଉତ୍ତମ ବୌଦ୍ଧ ପାଲଟିଯାନ୍ତୁ । ସେହି ପ୍ରତିଜ୍ଞା ବା ଶପଥ ଗୁଡିକ ହେଲା :-

(୧) ମୁଁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କୁ ଦେବତାଭାବେ ସ୍ୱୀକାର କରିବି ନାହିଁ ଏବଂ ସେମାନଙ୍କୁ ଉପାସନା କରିବି ନାହିଁ ।

(୨) ମୁଁ ରାମ ଏବଂ କୃଷ୍ଣଙ୍କୁ ଈଶ୍ୱର ବୋଲି ସ୍ୱୀକାର କରିବି ନାହିଁ ଏବଂ ସେମାନଙ୍କର ଉପାସନା କରିବି ନାହିଁ ।

(୩) ମୁଁ ଗୌରୀ-ଗଣପତି ଏବଂ ଅନ୍ୟାନ୍ୟ ହିନ୍ଦୁ ଦେବଦେବୀଙ୍କୁ ସ୍ୱୀକାର କରିବି ନାହିଁ ।

(୪) ମୁଁ ଅବତାର ତତ୍ତ୍ୱର ବିଶ୍ୱାସ କରିବି ନାହିଁ ।

(୫) ମୁଁ ବିଶ୍ୱାସ କରେ ନାହିଁ ଯେ ବୁଦ୍ଧ ବିଷ୍ଣୁଙ୍କର ଅବତାର । ଏହାକୁ ମୁଁ ମିଥ୍ୟା ବୋଲି ବିଚାର କରେ ଏବଂ ଏ ପ୍ରକାର ପ୍ରଚାର ପାଗଳାମି ।

(୬) ମୁଁ ଶ୍ରାଦ୍ଧ କରିବି ନାହିଁ କିମ୍ୱା ପିଣ୍ଡଦାନ ଦେବି ନାହିଁ ।

(୭) ମୁଁ ଏପରି କିଛି କରିବି ନାହିଁ ଯାହା ବୌଦ୍ଧ ଧର୍ମର କ୍ଷତିକାରକ ହେବ ।

(୮) ମୁଁ କୌଣସି ଧାର୍ମିକ ଉତ୍ସବ ଅନୁଷ୍ଠାନ ବ୍ରାହ୍ମଣଙ୍କ ଦ୍ୱାରା କରିବାକୁ ଦେବି ନାହିଁ ।

(୯) ମୁଁ ଏହି ନୀତିରେ ବିଶ୍ୱାସ କରେ ଯେ ପ୍ରତ୍ୟେକ ମଣିଷ ସମାନ ।

(୧୦) ମୁଁ ସମାନତା ପ୍ରତିଷ୍ଠା ପାଇଁ ଚେଷ୍ଟା କରିବି ।

(୧୧) ମୁଁ ବୁଦ୍ଧଙ୍କର ଅଷ୍ଟାଙ୍ଗମାର୍ଗକୁ ଅନୁସରଣ କରିବି ।

(୧୨) ମୁଁ ବୁଦ୍ଧଙ୍କ ଦ୍ୱାରା ପ୍ରବର୍ତ୍ତିତ ଦଶ ପାରମିତିକୁ ପାଳନ କରିବି ।

(୧୩) ମୁଁ ସମସ୍ତ ଜୀବ ଜଗତ ପ୍ରତି ଦୟାଶୀଳ ହେବି ଏବଂ ସେମାନଙ୍କର ସତତ ଯତ୍ନ ନେବି ।

(୧୪) ମୁଁ ଚୋରୀ କରିବି ନାହିଁ ।

(୧୫) ମୁଁ ମିଥ୍ୟା କହିବି ନାହିଁ ।

(୧୬) ମୁଁ ଜାରକର୍ମ କରିବି ନାହିଁ

(୧୭) ମୁଁ ମାଦକ ଦ୍ରବ୍ୟ ସ୍ପର୍ଶ କରିବି ନାହିଁ ।

(୧୮) ମୁଁ ବୌଦ୍ଧ ଧର୍ମର ତିନିଂଗୋଟି ନୀତି -ପ୍ରଜ୍ଞା, ଶୀଳ ଓ କରୁଣା ମାନି ଚଳିବି ।

(୧୯) ମୁଁ ଏତଦ୍‌ଦ୍ୱାରା ମୋର ପୁରାତନ ଧର୍ମକୁ ତ୍ୟାଗ କରୁଅଛି କାରଣ ହିନ୍ଦୁଧର୍ମ ଯାହାକି ମାନବ ସମାଜର ପ୍ରଗତିର ଅନ୍ତରାୟ, ଓ ଅସମାନତା ଉପରେ ପ୍ରତିଷ୍ଠିତ । ମୁଁ ବୌଦ୍ଧ ଧର୍ମକୁ ଗ୍ରହଣ କରୁଛି ।

(୨୦) ମୁଁ ଦୃଢ଼ ଭାବରେ ବିଶ୍ୱାସ କରୁଛି ଯେ ବୌଦ୍ଧ ଧର୍ମ ହେଉଛି ସଦ୍ଧାମ ।

(୨୧) ମୁଁ ବିଶ୍ୱାସ କରେ ଯେ ମୁଁ ପୁନରାୟ ଜନ୍ମ ହେବି ।

(୨୨) ମୁଁ ଏତଦ୍‌ଦ୍ୱାରା ଘୋଷଣା କରୁଛି ଯେ ମୁଁ ଏହାପରଠାରୁ ମୋର ଜୀବନକୁ ବୁଦ୍ଧଙ୍କର ଧର୍ମ ଉପଦେଶଦ୍ୱାରା ପରିଚାଳିତ କରିବି ।

ତା ପରଦିନ ପୁନରାୟ ଏକଲକ୍ଷ ନରନାରୀ ବୌଦ୍ଧଧର୍ମରେ ଦୀକ୍ଷିତ ହେଲେ । ଡକ୍ଟର ଆମ୍ବେଦକର ତାଙ୍କର ତିନିଘଣ୍ଟାକାଳର ଐତିହାସିକ ଭାଷଣରେ ଦଳିତ ବର୍ଗର ଯୁଗ ଯୁଗ ବ୍ୟାପୀ ନିର୍ଯ୍ୟାତିତ ଓ ନିଷ୍ପେଷିତ ଜୀବନର ଇତିହାସଠାରୁ

ଆରମ୍ଭ କରି ତାଙ୍କର ଏହାକୁ ପ୍ରତିହତ କରିବା ପାଇଁ ଜୀବନବ୍ୟାପୀ ସଂଗ୍ରାମ ଏବଂ ସେ କାହିଁକି ବୌଦ୍ଧ ଧର୍ମ ଗ୍ରହଣ କଲେ ତାହା ବର୍ଣ୍ଣନା କଲେ ।

''ବୌଦ୍ଧ ଧର୍ମର ଭ୍ରାତୃମଣ୍ଡଳୀର ସଭ୍ୟବୃନ୍ଦ, ଭାଇ ଓ ଭଉଣୀମାନେ, ମୁଁ କାହିଁକି ଭଗବାନ ବୁଦ୍ଧଙ୍କର ଉପଦେଶକୁ ପୁନର୍ଜୀବିତ କରି ପ୍ରଚାର କରିବା ପାଇଁ କଠିନ ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟରେ ବ୍ରତୀ ହେଲି, ସେହି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଉପରେ ମୋର ବିଚାର ବ୍ୟକ୍ତ କରିବି ।''

''ଏହି ମାର୍ଗ ନିର୍ଣ୍ଣିତ କରି, ମୋତେ ଅକଥନୀୟ ମନ୍ତବ୍ୟର ଲକ୍ଷ୍ୟ ହେବାକୁ ହୋଇଛି । କେତେକ ଅତ୍ୟନ୍ତ ନିଷ୍ଠୁର, କେତେକ କଟୁ । କେତେକ ମୋତେ ଦୋଷାରୋପ କରିଛନ୍ତି ଯେ ମୁଁ ମୋର ଦାରିଦ୍ର୍ୟରେ ନିପୀଡ଼ିତ ଦଳିତ ଭାଇମାନଙ୍କୁ ଭୁଲ ବାଟରେ ପରିଚାଳିତ କରୁଛି କାରଣ ତାହା ସେମାନଙ୍କୁ ସୁଖ ସ୍ୱାଚ୍ଛନ୍ଦ୍ୟରୁ ବଞ୍ଚିତ କରିବ ଯାହା ସେମାନେ ବର୍ତ୍ତମାନ ଭୋଗ କରୁଛନ୍ତି । କେତେକ ଦୃଢ଼ମତ ପୋଷଣ କରନ୍ତି ଯେ ମୁଁ ସେମାନଙ୍କୁ ଉଦ୍ଧାର କରିବା ପାଇଁ ଯାହା କିଛି କଲେ ମଧ ଅସ୍ପୃଶ୍ୟମାନେ ଅସ୍ପୃଶ୍ୟ ରହିବେ ।''

''ଯେ କୌଣସି ବ୍ୟକ୍ତି ପକ୍ଷରେ ଏକ ସମ୍ମାନଜନକ ଜୀବନ ଯାପନ କରିବା ତା'ର ଜନ୍ମଗତ ଅଧିକାର । ଏହି ଲକ୍ଷ୍ୟ ହାସଲ କରିବା ପାଇଁ ଆମକୁ ଆମର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ ହେବ । ଏହା ହାସଲ କରିବାପାଇଁ ଆମେ ସର୍ବଶ୍ରେଷ୍ଠ ତ୍ୟାଗ କରିବାକୁ ପ୍ରସ୍ତୁତ । ଆମେ ମାନବିକ ସମ୍ମାନ ହାସଲ କରିବାପାଇଁ ସଂଗ୍ରାମ କରୁଛେ ଯାହାକୁ ହିନ୍ଦୁମାନେ ଏ ପର୍ଯ୍ୟନ୍ତ ଆମ୍ଭମାନଙ୍କୁ ବଞ୍ଚିତ କରିଅଛନ୍ତି ।''

''୧୯୩୫ ମସିହାରେ ୟେଭାଲା ଠାରେ ଏକ ବିରାଟ ସଭା ହୋଇଥିଲା ଯେଉଁଠାରେ ଗୋଟିଏ ପ୍ରସ୍ତାବ ଦ୍ୱାରା ଏକ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା ଯେ ଆମ୍ଭେମାନେ ହିନ୍ଦୁ ଧର୍ମକୁ ପରିତ୍ୟାଗ କରିବା । ସେହି ସଭାରେ ମୁଁ କହିଥିଲି ଯେ ଯଦିଓ ମୁଁ ହିନ୍ଦୁଭାବରେ ଜନ୍ମ ଗ୍ରହଣ କରିଛି କାରଣ ଏହା ମୋ ଅକ୍ତିଆରରେ ନଥିଲା କିନ୍ତୁ ହିନ୍ଦୁଭାବରେ ମରିବି ନାହିଁ । ଏହି ଧର୍ମାନ୍ତରୀକରଣ ମୋତେ ଅନିର୍ବଚନୀୟ ସନ୍ତୋଷ ଓ ଆନନ୍ଦ ପ୍ରଦାନ କରିଛି । ମୁଁ ଅନୁଭବ କରୁଛି ଯେପରି ମୁଁ ନରକରୁ ମୁକ୍ତିଲାଭ କରିଛି । ମୋତେ ମେଣ୍ଢା ମାନସିକତା ପସନ୍ଦ ନୁହେ । ଯେଉଁମାନେ ବୁଦ୍ଧଙ୍କ ଶରଣରେ ଆସିବାକୁ ଇଚ୍ଛା କରୁଛନ୍ତି, ସେମାନଙ୍କୁ ବହୁମୂଲ୍ୟ ଦେଇ ଏହା କରିବାକୁ ହେବ କାରଣ ଏହା ଏପରି ଧର୍ମ ଯାହାକୁ ପାଳନ କରିବା କଷ୍ଟକର ।''

''ଯେ ପର୍ଯ୍ୟନ୍ତ ଅସ୍ପୃଶ୍ୟମାନେ ହିନ୍ଦୁଧର୍ମ ରୂପକ ନାରକୀୟ ସମ୍ପ୍ରଦାୟର କୁଆଳି ମଧ୍ୟରେ ଦାସପରି ବାନ୍ଧି ହୋଇ ରହିଥିବେ, ସେମାନଙ୍କର ଆଶା ରହିବ ନାହିଁ, ଆକାଂକ୍ଷା ରହିବ ନାହିଁ, ଉନ୍ନତ ଜୀବନ ପାଇଁ ଉତ୍ସାହ ରହିବ ନାହିଁ । ଏହି ଧର୍ମ ଓ ଏହି ସାମାଜିକ ବ୍ୟବସ୍ଥାକୁ ଆମକୁ ନଷ୍ଟଭ୍ରଷ୍ଟ କରିଦେଇଛି । କିନ୍ତୁ ଏହା ଏତିକିରେ ବନ୍ଦ ହୋଇଯିବ ନାହିଁ । ଏହା ହିନ୍ଦୁ ମାନଙ୍କୁ ସମୂଳେ ବିନାଶ କରିବ ଏବଂ ପରିଶେଷରେ ଭାରତକୁ । ମୁଁ ବୃଥାରେ ହିନ୍ଦୁ ଧର୍ମକୁ ନିନ୍ଦା କରେ ନାହିଁ । ଏହି ଧର୍ମ କାହାକୁ ରକ୍ଷା କରିପାରିବ ନାହିଁ । ଏଥିରେ ଆଉ ଜୀବନ ନାହିଁ ।''

''କାହିଁକି ଆମ ଦେଶ ବାରମ୍ବାର ତାର ସ୍ୱାଧୀନତା ହରାଇଛି ? କାହିଁକି ଆମ୍ଭେ ବାରମ୍ବାର ବିଦେଶୀ ଶାସନ ଦ୍ୱାରା ଶାସିତ ? ଏହା ହୋଇଛି କାରଣ ଏହି ରାଷ୍ଟ୍ର ସାମଗ୍ରିକ ଭାବେ ଶତ୍ରୁ ବିରୁଦ୍ଧରେ ଛିଡା ହୋଇନାହିଁ । ସବୁବେଳେ ସମାଜର ସବୁଠାରୁ କ୍ଷୁଦ୍ରଗୋଷ୍ଠୀ ଏବଂ ଯେ ଏହାକୁ ଜୟ କରି ପାରିଛି, ସେ ହୋଇଛି ବିଜୟୀ । ଏହା ମୁଖ୍ୟତଃ ଭାରତରେ ହିନ୍ଦୁମାନଙ୍କର ଜାତି ବ୍ୟବସ୍ଥାରୁ ଘଟିଛି ।''

''ସମସ୍ତ ପ୍ରକାର କୁତ୍ସା ଓ ଗାଳି ଏହି ଧର୍ମ ଉପରେ ଲଦି ଦିଆଗଲେ ମଧ ହିନ୍ଦୁସ୍ଥାନ ଅପେକ୍ଷା ୟୁରୋପ ଓ ଆମେରିକାରେ ବୌଦ୍ଧ ଧର୍ମର ପରିଚିତି ବେଶି । ଯଦି ଏପରି କୌଣସି ନାମ ଥାଏ, ଯାହା ଭାରତ ବାହାରେ ଜଣାଶୁଣା, ଯାହା ଜନାଦୃତ ଓ ସମ୍ମାନନୀୟ, ଏହା ରାମ ବା କୃଷ୍ଣଙ୍କର ନାମ ନୁହେ, କେବଳ ବୁଦ୍ଧଙ୍କର ନାମ । ରାମ ବା କୃଷ୍ଣଙ୍କୁ ଭାରତ ବାହାରେ କେହି ଜାଣନ୍ତି ନାହିଁ ।''

ଭଗବାନ ବୁଦ୍ଧଙ୍କର ନୀତି ଓ ଉପଦେଶ ଚିରନ୍ତନ କିନ୍ତୁ ଏହା ସତ୍ତ୍ୱେ ବୁଦ୍ଧ ନିଜ ପାଇଁ କୌଣସି ପଦମର୍ଯ୍ୟାଦା ଦାବି କରିନାହାନ୍ତି କିମ୍ବା ତାଙ୍କର ନୀତି ଅଭ୍ରାନ୍ତ ବୋଲି ମଧ ଦାବି କରନ୍ତି ନାହିଁ । ସେ ନିଜପାଇଁ ବା ନିଜର ଧର୍ମ ପାଇଁ ଦେବତ୍ୱ ଦାବି କରିନାହାନ୍ତି । ବୁଦ୍ଧ ଆଦୌ କହିନାହାନ୍ତି ଯେ ସେ ଈଶ୍ୱରଙ୍କର ପୁତ୍ର କିମ୍ବା ଈଶ୍ୱରଙ୍କର ଶେଷ ଅବତାର । ଅପର ପକ୍ଷରେ ସେ କହିଛନ୍ତି, ''ମୋର ବାପା ମା ସାଧାରଣ ମରଣଶୀଳ ପ୍ରାଣୀ ।''

ବୌଦ୍ଧ ଧର୍ମ ସମ୍ପର୍କରେ କହିଲେ, ଆମର ଏହି ଦେଶ ଗୋଟିଏ ମରୁଭୂମି । ବର୍ତ୍ତମାନ ଏହାର ଦାୟିତ୍ୱ ତୁମ୍ଭମାନଙ୍କର ଏବଂ ତୁମ୍ଭେମାନେ ଏହି ଧର୍ମରେ ଅତ୍ୟନ୍ତ ନିଷ୍ଠାର ସହ ମାନି ଚଳିବାକୁ ଚେଷ୍ଟା କରିବ । ଏବଂ ସବୁବେଳେ ମନେ ରଖିବ ଯେ ଥରେ ଏହା ହାସଲ ହୁଏ । ଏହି ଧର୍ମ କେବଳ ଏହି ଦେଶର ସେବା କରିବ

ନାହିଁ ବରଂ ସମଗ୍ର ବିଶ୍ୱର ସେବା କରିବ । ବର୍ତ୍ତମାନର ପରିସ୍ଥିତିରେ ବିଶ୍ୱବ୍ୟାପାରରେ ବିଶ୍ୱଶାନ୍ତି ପାଇଁ ବୌଦ୍ଧ ଧର୍ମ ଅପରିହାର୍ଯ୍ୟ ।''

''କେତେକ ବ୍ୟକ୍ତି ବିଶେଷ ବିସ୍ମିତ ହେଉଛନ୍ତି ଯେ ମୁଁ କାହିଁକି ଏତେ ସମୟ ନେଇ ଧର୍ମ ପରିବର୍ତ୍ତନ କରିବାର ନିଷ୍ପତ୍ତି ନେବାକୁ । ''ଏତେ ଦିନ ଧରି ତୁମେ କ'ଣ କରୁଥିଲ ?'' ସେମାନେ ପଚାରନ୍ତି । ମୁଁ ଗୋଟିଏ ମାତ୍ର ଉତ୍ତର ଦେଇପାରିବି ଯେ ଧର୍ମ ସମ୍ପର୍କିତ ପ୍ରଶ୍ନ ଅତ୍ୟନ୍ତ କଠିନ ଓ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ । ଲୋକମାନଙ୍କୁ ଧର୍ମର ଗୁଣ ସମ୍ପର୍କରେ ଶିକ୍ଷାଦେବା ଏବଂ ସେମାନଙ୍କ ମଧ୍ୟରେ 'ଧାମ'ର ନୀତି ଅନୁସାରେ ବ୍ୟବହାର କରିବାକୁ ଅନ୍ତର୍ନିବିଷ୍ଟ କରିବା ବାସ୍ତବିକ ଏହା ଏକ ଗୁରୁଦାୟିତ୍ୱ । ଅନ୍ୟ କେହି ବ୍ୟକ୍ତି ନଥିଲେ ଯେ କି ଏହି ଗୁରୁ ଦାୟିତ୍ୱକୁ ବହନ କରିପାରିବେ, କିମ୍ବା ମୁଁ ଭାବୁନାହିଁ ଯେ ଅନ୍ୟକେହି ଆସି ଭବିଷ୍ୟତରେ ଏହି ଗୁରୁଦାୟିତ୍ୱକୁ ସମ୍ଭାଳି ପାରିବ ।''

ଦୀର୍ଘ ୩ ଘଣ୍ଟାର ଭାଷଣରେ ସେ ବୌଦ୍ଧଧର୍ମର ସମସ୍ତ ନୀତି ଓ ଉପଦେଶକୁ ବର୍ଣ୍ଣନା କରି ଜୀବନରେ କିପରି ପ୍ରୟୋଗ କରିବେ, ତାହା ବୁଝାଇଥିଲେ । କାରଣ ତାଙ୍କ ଜୀବନ ଥିଲା ବୌଦ୍ଧ ଧର୍ମର ପ୍ରୟୋଗର ଜୀବନ ।

ଏହି ଐତିହାସିକ ଗଣଧର୍ମାନ୍ତରୀକରଣ ପରେ ସେ ନେପାଳ ଯାଇ ୪ର୍ଥ ବିଶ୍ୱ ବୌଦ୍ଧ ମହାସମ୍ମେଳନରେ ଯୋଗ ଦେଇଥିଲେ । କାଠମାଣ୍ଡୁ ପରେ ୧୯୫୬ ନଭେମ୍ବର ୧୫-୨୫ ପର୍ଯ୍ୟନ୍ତ ଅନୁଷ୍ଠିତ ହେଉଥିବା ଜଣେ ବୌଦ୍ଧ ଭାବରେ କୌଣସି ଏକ ଆନ୍ତର୍ଜାତିକ ସମ୍ମେଳନରେ ଏହା ଥିଲା ତାଙ୍କର ପ୍ରଥମ ଉପସ୍ଥିତି ସେ ମାର୍କସବାଦ ଓ ବୁଦ୍ଧଙ୍କ ମୂଳଭିତ୍ତିରେ କୌଣସି ପାର୍ଥକ୍ୟ ନାହିଁ ବୋଲି କହିଥିଲେ । ମାର୍କସଙ୍କ ଜନ୍ମହେବାର ୨୪୦୦ବର୍ଷ ପୂର୍ବରୁ ବୁଦ୍ଧ ଜନ୍ମଗ୍ରହଣ କରିଥିଲେ ଏବଂ ତାର ସୁଦୃଢ଼ ମୂଳଭିତ୍ତି ମାନବିକ ସମ୍ବେଦନରେ ନିହିତ ଏବଂ ଏଥିପାଇଁ ବୁଦ୍ଧଙ୍କୁ ଛାଡି ମାର୍କସବାଦକୁ ଯିବାର ଆବଶ୍ୟକତା ନାହିଁ ବୋଲି ମତ ଦେଇଥିଲେ ।

ଆମ୍ବେଦକର ତାଙ୍କର ଏହି ଧର୍ମ ପରିବର୍ତ୍ତନ ସମୟରେ ଭାରତର କୌଣସି ମହାନ ନେତା ପଣ୍ଡିତ ନେହେରୁ, ଡକ୍ଟର ରାଧାକ୍ରିଷ୍ଣନ, ଚକ୍ରବର୍ତ୍ତୀ ରାଜଗୋପାଳ ଚାରୀ ବା ଡକ୍ଟର ରାଜେନ୍ଦ୍ରପ୍ରସାଦଙ୍କ ଠାରୁ କୌଣସି ବାର୍ତ୍ତା ପାଇନଥିଲେ । ଏପରିକି ରାଜଭୋଜ ମଧ କହିଥିଲେ ଯେ ଧର୍ମାନ୍ତରୀକରଣ ସମସ୍ୟାର ସମାଧାନ ନୁହେ ।

ଆମ୍ବେଦକର ସେମାନଙ୍କୁ ସେ ୧୯୩୫ ମସିହାରେ ନେଇଥିବା ଶପଥ ସମ୍ପର୍କରେ ମନେ ପକାଇ ଦେଇଥିଲେ । "ଯଦିଓ ମୁଁ ହିନ୍ଦୁ ଭାବରେ ଜନ୍ମଗ୍ରହଣ କରିଛି, କିନ୍ତୁ ହିନ୍ଦୁ ଭାବରେ ମରିବି ନାହିଁ ।" ସେ ତାଙ୍କର ଦଳର କର୍ମୀମାନଙ୍କୁ ଉଦ୍‌ବୋଧନ ଦେଇ କହିଥିଲେ ଯେ ସେମାନେ ବେଶି ଧର୍ମ ଅପେକ୍ଷା ରାଜନୀତିରେ ଆଗ୍ରହୀ କିନ୍ତୁ ସେ ରାଜନୀତି ଅପେକ୍ଷା ଧର୍ମରେ ଆଗ୍ରହୀ । ଭାରତରେ ବୌଦ୍ଧ ଧର୍ମକୁ ପୁନଃଜୀବନ ଦେଇପାରିଥିବାରୁ ସେ ଆନନ୍ଦିତ ହୋଇଥିଲେ । ଗଣ ଧର୍ମାନ୍ତରୀକରଣ ତାଙ୍କ ଦ୍ୱାରା ସଙ୍ଗଠିତ ହେବା ଭାରତ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ଧର୍ମ ମଧ୍ୟରେ ଥିବା ଅସାଧୁତା ଓ ଛଳନା ବିରୁଦ୍ଧରେ ଯୁକ୍ତିଯୁକ୍ତ ଚେତନା ଜାଗ୍ରତ କରିବା ପାଇଁ ଧର୍ମାନ୍ତରୀକରଣର ଆବଶ୍ୟକତା ରହିଛି ବୋଲି ସେ ବିଚାର କରିଥିଲେ । ତେଣୁ ଏ ସମ୍ପର୍କରେ ତାଙ୍କର ଦୃଷ୍ଟିକୋଣ ଥିଲା ମାନବିକତାବାଦୀ । ଏହା ମାନବତାବାଦର କ୍ରୀତଦାସତ୍ୱ ଓ ଦମନ ବିରୁଦ୍ଧରେ ଥିଲା ବିଦ୍ରୋହ । କାରଣ ତାଙ୍କ ଧର୍ମ ପରିବର୍ତ୍ତନର ଆଭିମୁଖ୍ୟ ବସ୍ତୁଗତ ପ୍ରାପ୍ତି ନିମିତ୍ତ ଉଦ୍ଦିଷ୍ଟ ନଥିଲା । ପ୍ରଥମରୁ ଯେଉଁ ଆନ୍ଦୋଳନ ବା ବିଦ୍ରୋହ ସେ ଆରମ୍ଭ କରିଥିଲେ, ତା'ର ଶେଷ ପରିଣତି ଥିଲା ବୌଦ୍ଧ ଧର୍ମର ଆନ୍ଦୋଳନ । ଏହା ମୁକ୍ତି ଶକ୍ତିର ପ୍ରତୀକ ।

ଆମ୍ବେଦକର ବୌଦ୍ଧଧର୍ମକୁ ପ୍ରାଧାନ୍ୟ ଦେଇ ମାର୍କସବାଦର ସମାଲୋଚନା କରିଥିଲେ । ଯଦିଓ ପ୍ରଥମରୁ ସେ କହିଥିଲେ ଅସ୍ପୃଶ୍ୟ ମାନଙ୍କର ସମସ୍ୟାର ସଂଗ୍ରାମ, ଶ୍ରେଣୀ ସଂଗ୍ରାମ । ବୌଦ୍ଧ ଧର୍ମକୁ ପରିବର୍ତ୍ତନ ପରେ କିପରି ଭାବରେ ଏହା ଅସ୍ପୃଶ୍ୟମାନଙ୍କୁ ସାମାଜିକ ବନ୍ଧନରୁ ମୁକ୍ତ କରିବ, ତାହା ସେ ପ୍ରକାଶ କରିନାହାନ୍ତି । ଯଦିଓ ସେ ଶ୍ରେଣୀ ସଂଘର୍ଷ ସମସ୍ୟାଠାରୁ ଆରମ୍ଭ କରିଥିଲେ, କିନ୍ତୁ ପରିଶେଷରେ ଧର୍ମକୁ ଆଲିଙ୍ଗନରେ ସମାପ୍ତ କଲେ ।

## ଦୀକ୍ଷାଭୂମି

ଆମ୍ବେଦକରଙ୍କର ମୃତ୍ୟୁପରେ ସେ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିବା ଦୀକ୍ଷାଭୂମିକୁ ଡକ୍ଟର ବାବା ସାହେବ ସ୍ମାରକ ସମିତି, ନାଗପୁରର ଅନୁରୋଧ କ୍ରମେ ମହାରାଷ୍ଟ୍ର ସରକାର ସେହି ଜମିକୁ ବିନା ମୂଲ୍ୟ ୧୯୬୫ ମେ ୩୦ ତାରିଖରେ ସମର୍ପଣ କରିଥିଲେ । ୧୯୬୩ ମସିହାରେ ସେଠାରେ ତାଙ୍କର ଏକ ପ୍ରତିମୂର୍ତ୍ତି ନିର୍ମିତ ହେଲା । ସେଠାରେ ପ୍ରତିଷ୍ଠା ହେଲା ଡକ୍ଟର ବାବାସାହେବ ଆମ୍ବେଦକର କଲେଜ ଯାହା ବର୍ତ୍ତମାନ ଏକ ପ୍ରସିଦ୍ଧ ଶିକ୍ଷାନୁଷ୍ଠାନ । ବର୍ତ୍ତମାନ ସେଠାରେ ରହିଛି

ଏକ ବୌଦ୍ଧ ବିହାର ଓ ଭିକ୍ଷୁ ନିବାସ । ପ୍ରତ୍ୟେକ ବର୍ଷ ବିଜୟା ଦଶମୀ ଦିନ ଲକ୍ଷଲକ୍ଷ ଲୋକ ଏଠାରେ ଉପସ୍ଥିତ ହୋଇ ଏହି ମହାନ୍ ତ୍ୟାଗୀ ସନ୍ତାନ ପ୍ରତି ସେମାନଙ୍କର ଭକ୍ତି ସୁମନ ଅର୍ପଣ କରୁଛନ୍ତି ।

## କେନ୍ଦ୍ରରେ ଆଇନ୍ ମନ୍ତ୍ରୀ

ସମ୍ବିଧାନର ଚିଠା ପ୍ରସ୍ତୁତ କରିସାରିବା ପରେ, ଆମ୍ବେଦକର ଚାହୁଁଥିଲେ ବିଶ୍ରାମ । ସେ ବମ୍ବେକୁ ଚିକିତ୍ସା ପାଇଁ ଆସିଲେ । ତାଙ୍କର ସାଥୀଟିଏ ଦରକାର ଥିଲା ଯେ ତାଙ୍କର ବାର୍ଦ୍ଧକ୍ୟରେ ସେବା ଯତ୍ନ କରିବ । ଡାକ୍ତରଖାନାରେ ଚିକିତ୍ସିତ ହେଉଥିବା ସମୟରେ ସେ ମିସ୍ ସାରଦା କବୀରଙ୍କ ସଂସ୍ପର୍ଶରେ ଆସିଲେ । ଏପରିକି ତାଙ୍କ ଆଖିକୁ ନିଦ ଆସୁନଥିଲା । ପଲକ ପଡୁନଥିଲା । ଜାନୁୟାରୀ ୧୯୪୮ ରେ ତାଙ୍କର ଶରୀର ଏତେ ମାତ୍ରାରେ ଅସୁସ୍ଥ ହୋଇ ପଡିଲା ଯେ ସେ ତାଙ୍କର ବନ୍ଧୁ ଚିତ୍ରେକୁ ଏ ସମ୍ପର୍କରେ ଚିଠି ଲେଖିଥିଲେ, "ମୋର ସ୍ୱାସ୍ଥ୍ୟ ପରୀକ୍ଷା ଦୁଇଜଣ ପ୍ରସିଦ୍ଧ ଡାକ୍ତରଙ୍କ ଦ୍ୱାରା କରାଗଲା । ସେମାନଙ୍କର ମତ ଯେ ଯଦି ତତ୍କାଳ ଚିକିତ୍ସା କରାନଯାଏ, ତେବେ ମୋର ରୋଗର ଅବସ୍ଥା ସାଙ୍ଘାତିକ ହେବ ଏବଂ ଆଦୌ ଭଲ ହେବ ନାହିଁ । ମୁଁ ତୁମେ ଦେଇଥିବା ପ୍ରସ୍ତାବ ସମ୍ପର୍କରେ ଭାବୁଛି । ସହାନୁଭୂତି ସହିତ ମୋର କେହି ସେବା କରିବ, ଏଇଥିପାଇଁ ମୁଁ ପୁଣିଥରେ ବିବାହ କରିବି ବୋଲି ମନସ୍ଥ କରିଛି । ଏବଂ ଡକ୍ଟର ସାରଦା କବୀର ଏ ଦୃଷ୍ଟିରୁ ଉତ୍ତମ ହେବେ । ଠିକ୍ ହେଉବା ଭୁଲ ମୁଁ ଏ ନିଷ୍ପତ୍ତି ଗ୍ରହଣ କରିଛି ।" ଏ ଚିଠି ଲେଖି ସେ ଚିତ୍ରେଙ୍କ ଯଦି କିଛି ମତାମତ ଥାଏ ଜାଣିବାକୁ ଇଚ୍ଛା କରିଥିଲେ ।

ସେ ମଧ୍ୟ ତାଙ୍କର ଘନିଷ୍ଠ ସହଯୋଗୀ ଭାଉରାଓ ଗାଇକୋୱାଡ଼ଙ୍କୁ ପ୍ରସ୍ତାବିତ ବିବାହ ବିଷୟରେ ଜଣାଇଥିଲେ । ତାଙ୍କର ପ୍ରଥମପତ୍ନୀ ରମାବାଈଙ୍କର ମୃତ୍ୟୁ ପରେ ସେ ବିବାହ ନ କରିବାର ଶପଥରୁ ବର୍ତ୍ତମାନ ଓହରି ଯାଇଥିଲେ । ସେ ଜଣେ ଶିକ୍ଷିତ, ସମ୍ଭ୍ରାନ୍ତ ମହିଳା ଚାହିଁଥିଲେ ଯେକି ତାଙ୍କର ସବୁ ପ୍ରକାର ଯତ୍ନ ନେବାକୁ ସମର୍ଥ ହେବ । ଏପରି ମହିଳା ଦଳିତ ସମ୍ପ୍ରଦାୟରେ ମିଳିବା ଅସମ୍ଭବ ଥିବାରୁ ସେ ଡକ୍ଟର ସାରଦା କବୀରଙ୍କ ପରି ସାରସ୍ୱତ ବ୍ରାହ୍ମଣ ଓ ଡାକ୍ତରଙ୍କୁ ପତ୍ନୀ ଭାବରେ ନିର୍ବାଚିତ କରିଥିଲେ ।

ସେ ଚିତ୍ରେକୁ ମଧ୍ୟ ଚିଠିରେ ଲେଖିଥିଲେ ଯେ କେହି କେହି ତାଙ୍କର ଭାବୀପତ୍ନୀ ଓ ପୁତ୍ର ଯଶୱନ୍ତଙ୍କ ମଧ୍ୟରେ ତିକ୍ତତା ସୃଷ୍ଟି କରିବାକୁ ଚେଷ୍ଟା କରୁଛନ୍ତି ।

ଯଦି ସେ ଏ ବିବାହକୁ ବେଶିଦିନ ଡେରି କରନ୍ତି, ତେବେ ନାନା ଗୁଜବ ଓ ପ୍ରଚାରର ସମ୍ଭାବନାକୁ ଏଡାଇ ଦିଆନଯାଇପାରେ । ତେଣୁ ଯେତେ ଶୀଘ୍ର ଏହା ଅନୁଷ୍ଠିତ ହେବ, ସେତେ ଭଲ । ଏଥିପାଇଁ ସେ ଦିନ ଧାର୍ଯ୍ୟ କରିଥିଲେ ୧୪ ଏପ୍ରିଲ ୧୯୪୮ । ଚିତ୍ରେକୁ ଏହି ବିବାହରେ ଯୋଗ ଦେବାକୁ ଅନୁରୋଧ କରି ଲେଖିଥିଲେ, ''ମୁଁ ଯାହା କରୁଛି, ସେଥିପାଇଁ ମୁଁ ଆଦୌ ମାନସିକ ଯନ୍ତ୍ରଣା ଭୋଗ କରୁନାହିଁ । କାହାରି ମଧ୍ୟ କୌଣସି ଅଭିଯୋଗ ରହିବାର ପ୍ରଶ୍ନ ନାହିଁ ଏପରିକି ଯଶୱନ୍ତ ପର୍ଯ୍ୟନ୍ତ । ମୁଁ ତାକୁ ପ୍ରାୟ ୩୦୦୦୦ ଟଙ୍କା ଏବଂ ଗୋଟିଏ ଘର ଯାହାର ମୂଲ୍ୟ ୮୦ ହଜାର ଟଙ୍କା ଦେଇଛି । ମୁଁ ଭାବୁଛି କୌଣସି ପିତା ତା'ର ପୁତ୍ର ପ୍ରତି ଏହାଠାରୁ ଅଧିକ କିଛି କରିପାରିବ ନାହିଁ, ଯାହା ମୁଁ କରିଛି ।'' ବିବାହ ସ୍ଥିର ହେଲା ଓ ଡକ୍ଟର ସାରଦା କବୀର ଦିଲ୍ଲୀରେ ଆସି ପହଞ୍ଚିଲେ । ଆମ୍ବେଦକରଙ୍କର ବୟସ ସେତେବେଳକୁ ୫୬ ବର୍ଷ । ତାଙ୍କର ଦିଲ୍ଲୀସ୍ଥିତ ବାସଭବନ ୧, ହାର୍ଡି ଆଭେନ୍ୟୁ ଠାରେ ସିଭିଲ ମ୍ୟାରେଜ ଆକ୍ଟ ଅନୁସାରେ କେତେକ ବ୍ୟକ୍ତିଗତ ବନ୍ଧୁଙ୍କ ଉପସ୍ଥିତିରେ ଦିଲ୍ଲୀର ଡେପୁଟି କମିଶନରଙ୍କ ଦ୍ୱାରା ଏହି ବିବାହ ଅନୁଷ୍ଠିତ ହେଲା ।

୧୯୪୮ ମସିହା ଏପ୍ରିଲ୍ ମାସ ଶେଷ ସପ୍ତାହରେ ସେ ଯୁକ୍ତ ପ୍ରଦେଶ ଅନୁସୂଚିତ ଜାତି ସମ୍ମିଳନୀ (united provincial scheduled castes conference) ରେ ଭାଷଣ ଦେବାବେଳେ କହିଲେ ଯେ ସମସ୍ତ ସାମାଜିକ ପ୍ରଗତିର ମୂଳରେ ରାଜନୈତିକ କ୍ଷମତା ନିହିତ । ଏବଂ ଅନୁସୂଚୀତ ଜାତିର ଲୋକମାନଙ୍କର ମୁକ୍ତି ମିଳିବ, ଯଦି ସେମାନେ କ୍ଷମତା ଅଧିକାର କରନ୍ତି । ଏହି କ୍ଷମତା ତୃତୀୟ  ରାଜନୈତିକ ଦଳ ଭାବରେ ଗଢ଼ି ଉଠି କଂଗ୍ରେସ ଓ ସମାଜବାଦୀ ଦଳ ମଧ୍ୟରେ ଭାରସାମ୍ୟ ରକ୍ଷା କରିବା ଉଚିତ ।

ସେ ସେହି ସଭାରେ ପୁନରାୟ କହିଥିଲେ, ସେ କେନ୍ଦ୍ର ସରକାରରେ ଯୋଗ ଦେଇଛନ୍ତି, କଂଗ୍ରେସ ଦଳରେ ଯୋଗ ଦେଇ ନାହାନ୍ତି । କଂଗ୍ରେସ ଦଳ ହେଉଛି ଏକ ଭସ୍ମୀଭୂତ ଗୃହ । ଏବଂ ସେ ଆଦୌ ବିସ୍ମିତ ହେବେ ନାହିଁ ଯଦି ଏହା କେତେ ବର୍ଷ ମଧ୍ୟରେ ସମ୍ପୂର୍ଣ୍ଣ ଭୂଶୁଡି ପଡେ । ଯଦି ସେ କଂଗ୍ରେସରେ ଯୋଗ ଦିଅନ୍ତି, ତେବେ ସେଆଦୌ ତାହା ଦ୍ୱାରା ଆଚ୍ଛନ୍ନ ହେବେ ନାହିଁ ବରଂ ପାଣିରେ ପଥର ରହିବା ପରି ହେବ । କିନ୍ତୁ ଯଦି ତାଙ୍କର ଅନୁଗାମୀମାନେ ଏଥିରେ ଯୋଗ ଦିଅନ୍ତି, ତେବେ ସେମାନେ ସେଥିରେ ସମ୍ପୂର୍ଣ୍ଣ ବିଲୀନ ହୋଇଯିବେ ।

ତାଙ୍କର ଏହି ଭାଷଣ ପାଇଁ ବହୁ ବିତର୍କ ଓ ଝଡ ସୃଷ୍ଟି ହୋଇଥିଲା । ଏଥିପାଇଁ ତାଙ୍କର ପଟେଲ ଓ ନେହେରୁଙ୍କ ଯୁକ୍ତିତର୍କ ମଧ୍ୟ ହେଲା । ସେ ଏକ ପ୍ରେସ ବିଜ୍ଞପ୍ତିରେ କହିଲେ ଯେ ତାଙ୍କର ବକ୍ତୃତାକୁ ଭୁଲ ଭାବରେ ଛପାଯାଇଛି । ସେ କେନ୍ଦ୍ର ମନ୍ତ୍ରୀମଣ୍ଡଳରେ ସ୍ୱାଧୀନ ଭାବରେ ଯୋଗ ଦେଇଛନ୍ତି ଏବଂ ଏଥିପାଇଁ କୌଣସି ସର୍ତ୍ତ ଆରୋପ କରାଯାଇନାହିଁ । ଏବଂ ମନ୍ତ୍ରୀମଣ୍ଡଳରେ ଯୋଗ ଦେବା ଦ୍ୱାରା ସେ ଦଳିତ ବର୍ଗଙ୍କର ସ୍ୱାର୍ଥ ରକ୍ଷା କରିବାରେ ସକ୍ଷମ ହେବେ । କେବଳ ବିରୋଧ ପାଇଁ ବିରୋଧିତା କରିବାକୁ ସେ ଘୃଣା କରନ୍ତି । କିନ୍ତୁ ଏହି ଘଟଣା ଅନେକ ଦିନ ପର୍ଯ୍ୟନ୍ତ ରାଜନୈତିକ ଅସ୍ଥିରତା ସୃଷ୍ଟି କରିଥିଲା ।

## ହିନ୍ଦୁ କୋର୍ଡ ବିଲ

୨୪ ଫେବୃୟାରୀ ୧୯୫୧ରେ ଆମ୍ବେଦକର ହିନ୍ଦୁ କୋର୍ଡବିଲ ପାର୍ଲାମେଣ୍ଟରେ ଆଲୋଚନା ପାଇଁ ଉପସ୍ଥାପିତ କଲେ । ସେ ଚାହୁଁଥିଲେ ମହିଳାମାନଙ୍କର ଅବସ୍ଥାରେ ପରିବର୍ତ୍ତନ ଘଟୁ କାରଣ ସେମାନେ ମଧ୍ୟ ଶୂଦ୍ରମାନଙ୍କ ପରି ମନୁସ୍ମୃତିରେ ବ୍ୟବହାର ପାଇଛନ୍ତି । ଭାରତର ପ୍ରଥମ ଆଇନମନ୍ତ୍ରୀ ଭାବରେ ଓ ସମ୍ବିଧାନ ସଭାର ଡିଠା ସମିତିର ଚେୟାରମ୍ୟାନ ହେତୁ ସେ ହିନ୍ଦୁ ମହିଳାମାନଙ୍କୁ ଯୁଗ ଯୁଗର ସାମାଜିକ ଅତ୍ୟାଚରରୁ ମୁକ୍ତ କରିବାକୁ ଚାହିଁଲେ । ଏହି ହିନ୍ଦୁ କୋର୍ଡ ବିଲ୍‌ରେ ଅନ୍ୟାନ୍ୟ ସଂସ୍କାର ସହିତ ଭାରତରେ ଥିବା ବିଭିନ୍ନ ପ୍ରକାର ବିବାହ ବ୍ୟବସ୍ଥାକୁ ଉଚ୍ଛେଦ କରି କେବଳ ମାତ୍ର ଏକ ବିବାହ ପ୍ରଥାକୁ ଆଇନସିଦ୍ଧ କରିବାର ବ୍ୟବସ୍ଥା ଥିଲା । ଏହି ଆଚରଣ ବିଧିରେ ମହିଳାମାନଙ୍କୁ ସମ୍ପତ୍ତି ଉପରେ ଅଧିକାର ଓ ପୋଷ୍ୟ ସନ୍ତାନ ଗ୍ରହଣ ଦେବାର ବ୍ୟବସ୍ଥା ରହିଲା । ସମସ୍ତ ଆଇନଗତ ବିଷୟରେ ପୁରୁଷ ଓ ସ୍ତ୍ରୀ ସମାନ ରହିବାର ବ୍ୟବସ୍ଥା କରାଗଲା ।

ସେ ଏହି ବିଲ୍‌କୁ ଉପସ୍ଥାପିତ କରି ତାଙ୍କ ଭାଷଣରେ କହିଲେ ଯେ, ''ଏହି ବିଲ୍ କୌଣସି ଦାମ୍ପତ୍ୟ ଅଧିକାର, ଆଇନଗତ ବିଚ୍ଛେଦ, ପୋଷ୍ୟ ଗ୍ରହଣ ବା ଉତ୍ତରାଧିକାର ସମ୍ପର୍କରେ ମୌଳିକ ଅଭିନବୀକରଣ କରିବାର ପ୍ରୟାସ କରିନାହିଁ । ଏହାର ବ୍ୟବସ୍ଥାଗୁଡିକ ହିନ୍ଦୁ ସମାଜକୁ ଅଧିକ ସୁସଂହତ କରିବ । ବିବାହ ଆଇନ ସମ୍ପର୍କରେ କୌଣସି ସର୍ତ୍ତ ଆରୋପଣ କରାଯାଇନାହିଁ । ଯେଉଁମାନେ ରକ୍ଷଣଶୀଳ ସେମାନେ ସେମାନଙ୍କର ଧର୍ମ ମାଧ୍ୟମରେ ଯାହା କରିବାର କଥା କରିପାରିବେ, ଯେଉଁମାନେ ସଂସ୍କାରଧର୍ମୀ ସେମାନେ ସେମାନଙ୍କର ଯୁକ୍ତି ଓ ଚେତନା ମାର୍ଗଦ୍ୱାରା

ପରିଚାଳିତ ହେବେ । ଆମେ ଆଶା କରିବା ଯେ ଯେଉଁମାନେ ଏହି ନୂତନବାଟ ଦେଇ ଯିବେ, ସେମାନେ ପରିଶେଷରେ ଜୟଯୁକ୍ତ ହେବେ । କିନ୍ତୁ ସେମାନେ ଯଦି ନଚାହାଁନ୍ତି, ତେବେ ବିବାହର ଦୁଇପ୍ରକାର ସମାନ୍ତରାଳ ବ୍ୟବସ୍ଥାକୁ ଗ୍ରହଣ କରି ଆମେ ସନ୍ତୁଷ୍ଟ ହେବା । ଠିକ୍ ସେହିପରି ବିବାହ ବିଚ୍ଛେଦରେ ମଧ୍ୟ କୌଣସି ଅଭିନବତ୍ୱ ନାହିଁ । ସମୁଦାୟ ଲୋକ ସଂଖ୍ୟାର ଶତକଡା ୯୦ ପ୍ରତିଶତ ଶୁଦ୍ରମାନଙ୍କର ପାରମ୍ପରିକ ବିବାହ ବିଚ୍ଛେଦ ରହିଛି । ତେଣୁ ଶତକଡା ୯୦ ଭାଗ ଲୋକଙ୍କ ପାଇଁ ଏ ଦେଶର ସାଧାରଣ ଆଇନ ଉଦ୍ଦିଷ୍ଟ ହେବ କିମ୍ବା ମାତ୍ର ଶତକଡା ୧୦ ଭାଗ ଲୋକଙ୍କର ଆଇନ୍‌କୁ ୯୦ ଭାଗ ଲୋକଙ୍କ ଉପରେ ଲଦି ଦିଆଯାଇବ ?"

ତାଙ୍କର ଭାଷଣ ଶେଷ କରି ଡକ୍ଟର ଆମ୍ବେଦକର କହିଲେ, "ମୁଁ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ପ୍ରତି ଏହି ଗୃହର ଦୃଷ୍ଟି ଆକର୍ଷଣ କରୁଛି । ଫରାସୀ ବିପ୍ଳବ ବିରୁଦ୍ଧରେ ପୁସ୍ତକ ରଚୟିତା ବିଶିଷ୍ଟ ରାଜନୀତି ଦାର୍ଶନିକ ବର୍କ କହିଥିଲେ ଯେ ଯେଉଁମାନେ ସଂରକ୍ଷଣ କରିବାକୁ ଚାହାନ୍ତି, ସେମାନେ ସଜାଡିବାକୁ ପ୍ରସ୍ତୁତ ଥିବା ଆବଶ୍ୟକ ଏବଂ ମୁଁ ଏହି ଗୃହକୁ ଏତିକି କହିବାକୁ ଚାହେଁ ଯେ ଯଦି ଆପଣମାନେ ହିନ୍ଦୁ ବ୍ୟବସ୍ଥା, ହିନ୍ଦୁ ସଂସ୍କୃତି ଓ ହିନ୍ଦୁ ସମାଜକୁ ରକ୍ଷା କରିବାକୁ ଚାହାନ୍ତି ତେବେ ଯେଉଁଠାରେ ସଜାଡିବା କଥା, ତାକୁ ସଜାଡିବାରେ କୁଣ୍ଠାବୋଧ କରନ୍ତୁ ନାହିଁ । ଏହି ବିଲ୍ ହିନ୍ଦୁ ବ୍ୟବସ୍ଥାରେ ଯାହା କିଛି ଭଗ୍ନ ଅବସ୍ଥାରେ ପହଞ୍ଚିଛି, ସେହି ଅଂଶକୁ ମରାମତି କରିବା ବ୍ୟତୀତ ଅନ୍ୟକିଛି ଚାହୁଁ ନାହିଁ ।"

ହିନ୍ଦୁ କୋର୍ଟବିଲ୍ ହିନ୍ଦୁ ସାମାଜିକ ଏକତ୍ୱ କରିବାର ପ୍ରଚେଷ୍ଟା ଥିଲା ଏବଂ ଏଥିପାଇଁ ପ୍ରଗତିଶୀଳ ହିନ୍ଦୁ ନେତାମାନେ ଏହା ସପକ୍ଷରେ ମତ ଦେଇଥିଲେ । ଶ୍ରୀ ଏଚ.ଭି. କାମାଥ ହିନ୍ଦୁ କୋର୍ଟବିଲ୍‌କୁ 'ଭୀମସ୍ମୃତି' ନାମରେ ଅଭିହିତ କରିବାକୁ କହିଲେ । ପ୍ରଫେସର ପି.ଭି. ଗଜେନ୍ଦ୍ରଗଡକର ଧାରୱାରଠାରେ ଏକ ଭାଷଣରେ କହିଲେ ଯେ ଯଦି ଏହି ବିଲ୍ ପାସ୍ ହୋଇ ସମ୍ବିଧାନ ବହିରେ ସ୍ଥାନ ପାଏ, ତେବେ ମୁଁ ଏହାର ପ୍ରଶଂସା କରି କହିବି ଯେ ହିନ୍ଦୁ ସମାଜ ଉପରେ ଏହା ଶ୍ରଦ୍ଧାମୂଳକ ପ୍ରତିଶୋଧ ।

ହିନ୍ଦୁ କୋର୍ଟବିଲ୍ ବିରୁଦ୍ଧରେ ପାର୍ଲାମେଣ୍ଟ ଓ ପାର୍ଲାମେଣ୍ଟ ବାହାରେ ପ୍ରବଳ ବିରୋଧିତା ସୃଷ୍ଟି ହେବାରେ ଲାଗିଲା । ରକ୍ଷଣଶୀଳ ହିନ୍ଦୁମାନଙ୍କ ନିମିତ୍ତ,

ଆମ୍ବେଦକରଙ୍କ ପରି ଜଣେ ଅସ୍ପୃଶ୍ୟ ଲୋକ ଏହି ବିଲ୍ ପ୍ରସ୍ତୁତ କରି ଉପସ୍ଥାପିତ କରି ପରିଚାଳନା କରିବେ, ତାହା ସେମାନଙ୍କ ପାଇଁ ଥିଲା ଅସହ୍ୟ ।

ଏହି ବିଲ୍ ସମ୍ପର୍କରେ ମତ ଦେଇ ପଣ୍ଡିତ ଠାକୁର ଦାସ ଭାର୍ଗବ ଏଥିରୁ ପଞ୍ଜାବକୁ ବାଦ ଦେବାକୁ କହିବାବେଳେ ସରଦାର ହୁକୁମ ସିଂହ ହିନ୍ଦୁମାନଙ୍କ ମଧ୍ୟରେ ଶିଖ ସମ୍ପ୍ରଦାୟକୁ ଲୀନ କରିଦେବାର ଏହା ଏକ ସନ୍ଦେହମୂଳକ ଚେଷ୍ଟା ବୋଲି କହିଥିଲେ । ଅନ୍ୟ ଜଣେ ସଭ୍ୟ କହିଲେ ଯେ ସଭ୍ୟମାନେ ଲୋକମତ ପାଇନାହାନ୍ତି । ହିନ୍ଦୁ କୋର୍ଡ ବିଲ ସମଗ୍ର ଭାରତ ପାଇଁ ପ୍ରଯୁଜ୍ୟ ବୋଲି କହି ଆମ୍ବେଦକର ଏମାନଙ୍କର ଉତ୍ତରରେ କହିଥିଲେ, "ଶିଖ, ବୌଦ୍ଧ ଓ ଜୈନମାନଙ୍କ ପ୍ରତି ହିନ୍ଦୁ କୋର୍ଡବିଲ ଲାଗୁ ହେବା ଏକ ଐତିହାସିକ କ୍ରମବିକାଶ ଏବଂ ବର୍ତ୍ତମାନ ତାର ବିରୋଧ କରିବାର ସାମାଜିକ ଭାବେ କୌଣସି ମୂଲ୍ୟ ନାହିଁ । ଯେତେବେଳେ ବୁଦ୍ଧ ତାଙ୍କ ବିଚାରରେ ବୈଦିକ ବ୍ରାହ୍ମଣମାନଙ୍କ ଠାରୁ ଭିନ୍ନମତ ପୋଷଣ କଲେ, ତାହା ଥିଲା କେବଳ ଧର୍ମମତ ବିଷୟରେ । କିନ୍ତୁ ସେ ହିନ୍ଦୁ ଆଇନ୍‌ଗତ ବ୍ୟବସ୍ଥାକୁ ନିଖୁଣ ରଖିଥିଲେ । ସେ ତାଙ୍କର ଅନୁଗାମୀ ମାନଙ୍କ ପାଇଁ ପୃଥକ୍ ଆଇନ କରିନଥିଲେ । ମହାବୀର ଓ ଦଶ ଶିଖ ଗୁରୁମାନଙ୍କ ପାଇଁ ମଧ୍ୟ ଠିକ୍ ସେଇଆ । ୧୮୩୦ ମସିହାରେ ପ୍ରିଭି କାଉନ୍‌ସିଲ୍ ଶିଖମାନେ ହିନ୍ଦୁ ଆଇନ୍ ଦ୍ୱାରା ପରିଚାଳିତ ହେବେ ବୋଲି ଲିପିବଦ୍ଧ କରିଛନ୍ତି ।"

ତିନିଦିନ ଧରି ଏ ସମ୍ପର୍କରେ ତର୍କ ବିତର୍କ ହେବାପରେ, ପରବର୍ତ୍ତୀ ବୈଠକରେ ଆଲୋଚନା ହେବାକୁ ଏହାକୁ ରଖାଗଲା । ପାର୍ଲାମେଣ୍ଟର ସେପ୍ଟେମ୍ବର ୧୯୫୧ ବୈଠକରେ ଏ ସମ୍ପର୍କରେ ଆଲୋଚନା ହେଲା । ୧୦ ଅଗଷ୍ଟ ୧୯୫୧ରେ ସେ ପ୍ରଧାନମନ୍ତ୍ରୀ ନେହେରୁଙ୍କୁ ପତ୍ର ଲେଖି ଯେତେ ଶୀଘ୍ର ସମ୍ଭବ ଏହି ହିନ୍ଦୁ କୋର୍ଡ ବିଲ ପାର୍ଲାମେଣ୍ଟରେ ଆଲୋଚିତ ହୋଇ ଗ୍ରହଣୀୟ ହେଲେ ସେ ଡାକ୍ତରଙ୍କୁ ନିଜ ସ୍ୱାସ୍ଥ୍ୟର ଦାୟିତ୍ୱ ଦେବେ ବୋଲି ଚିଠି ଲେଖିଲେ । ନେହେରୁ କଂଗ୍ରେସ ପାର୍ଲାମେଣ୍ଟ ପାର୍ଟି ବୈଠକରେ ଏହି ବିଲ୍‌କୁ ଶୀଘ୍ର ସମାପ୍ତ କରିବାକୁ ସଭ୍ୟମାନଙ୍କୁ ନିବେଦନ କଲେ । ସ୍ଥିର ହେଲା ଯେ ହିନ୍ଦୁ କୋର୍ଡବିଲ୍‌ର ବିବାହ ଓ ବିଚ୍ଛେଦ ଅଂଶଟି ପ୍ରଥମେ ଆଲୋଚିତ ହେବ ।

ଡକ୍ଟର ଶ୍ୟାମା ପ୍ରସାଦ ମୁଖାର୍ଜୀ ଏହି ବିଲ୍‌କୁ ବିରୋଧ କରି କହିଲେ ଯେ ଏହା ହିନ୍ଦୁ ସଂସ୍କୃତିର ବୃହତ୍ତର ଢାଞ୍ଚାକୁ ଭାଙ୍ଗି ଦେଇ ବିକାଶୋନ୍ମୁଖୀ ଉଦାର ଜୀବନମାର୍ଗକୁ ଲଦିଦେବ ଯାହା ଶତାବ୍ଦୀ ପରିବର୍ତ୍ତନ ସହିତ ଲୋକମାନଙ୍କର ବିସ୍ମୟକର ପ୍ରଗତି ଭାବେ ଗ୍ରହଣୀୟ ହେଉଛି । ପଣ୍ଡିତ ମାଳବ୍ୟ ମଧ୍ୟ ଆଇନ ପ୍ରତି ସମ୍ମାନ ଦେଇ ଏହାର ଢାଞ୍ଚାରେ କୌଣସି ପରିବର୍ତ୍ତନ କରାନଯାଉ ବୋଲି କହିଲେ ।

ସମଗ୍ର ଗୃହ ଦୁଇଟି ସଂଘର୍ଷରତ ଦଳରେ ବିଭକ୍ତ ହୋଇଯାଇଥିଲା । ବହୁ ସଭ୍ୟଙ୍କର ମତ ଥିଲା ଯେ ଯୁଗ ଯୁଗ ଧରି ଆମ ସଭ୍ୟତା ବଞ୍ଚି ରହିଛି ଯେତେବେଳେ ରୋମ, ଗ୍ରୀସ ଓ ମିଶର ସଭ୍ୟତା ଧ୍ୱଂସ ପାଇଗଲାଣି । ହିନ୍ଦୁ ସମାଜ ବ୍ୟବସ୍ଥାରେ ଓ ଆଇନ୍‌ରେ କିଛି ଭଲ ଥିବାରୁ, ଏହାକୁ ରଖାଯାଉ ।

କୌଣସି ପରିବର୍ତ୍ତନ ନକରି କେବଳ ବଞ୍ଚିରହିବା କ'ଣ ଯଥେଷ୍ଟ ? ଡକ୍ଟର ମୁଖାର୍ଜୀଙ୍କର ଉତ୍ତର ଦେବାକୁ ଯାଇ ଆମ୍ବେଦକର କହିଥିଲେ ଯେ, "ହିନ୍ଦୁ ସମାଜ ବ୍ୟବସ୍ଥା ଅତ୍ୟନ୍ତ ପ୍ରଗତିଶୀଳ ବୋଲି କୁହାଯାଉଛି । ଡଃ ମୁଖାର୍ଜୀ କହିଲେ ଯେ ବୁଦ୍ଧଙ୍କ ପରି ଜଣେ ଉଗ୍ର ସଂସ୍କାରକଙ୍କୁ ମଧ୍ୟ ହିନ୍ଦୁ ସମାଜ ଜଣେ ବିଶିଷ୍ଟ ବ୍ୟକ୍ତିଭାବେ ଗ୍ରହଣ କରିଛି ଏବଂ ତାଙ୍କର ନୀତିକୁ ମଧ୍ୟ ମାନ ନେଇଛି ।"

"ଯେଉଁମାନେ ବିରୋଧ କରନ୍ତି, ସେମାନଙ୍କର ବିଚାରକୁ ଗ୍ରହଣ କରିବାର ଗୁଣ ହିନ୍ଦୁ ସମାଜର ରହିଛି । କିନ୍ତୁ ମୋର ମତ ଯେ ପ୍ରକୃତରେ କ'ଣ ହିନ୍ଦୁ ସମାଜ ତାର ଢ଼ାଞ୍ଚା ବିରୋଧିତା ଫଳରେ କିଛି ପରିବର୍ତ୍ତନ କରିଛି ? ବୁଦ୍ଧ ସମାନତାର ଉପଦେଶ ଦେଇଛନ୍ତି । ସେ ଚାତୁର୍ବର୍ଣ୍ଣ୍ୟ ବ୍ୟବସ୍ଥାର ଘୋର ବିରୋଧି । ସେ ବେଦ ବିଶ୍ୱାସର ବିରୋଧି କାରଣ ସେ ଯୁକ୍ତିରେ ବିଶ୍ୱାସ କରନ୍ତି ଏବଂ କୌଣସି ପୁସ୍ତକର ସର୍ବମାନ୍ୟତ୍ୱ ଉପରେ ବିଶ୍ୱାସ କରନ୍ତି ନାହିଁ । ସେ ଅହିଂସାରେ ବିଶ୍ୱାସ କରନ୍ତି । ବ୍ରାହ୍ମଣ୍ୟବାଦ ଉପରେ ପ୍ରତିଷ୍ଠିତ ସମାଜ 'ଅହିଂସା'କୁ ବିଶ୍ୱାସ କରିବା ବେଳେ ବୁଦ୍ଧଙ୍କର ସମାନତା (equality)କୁ ବିରୋଧ କରନ୍ତି । ସେଥିପାଇଁ ହିନ୍ଦୁସମାଜ ଯେପରି ରହିବା କଥା ସେହିପରି ରହିଛି ।"

"ହିନ୍ଦୁ ସମାଜ ଯାହା କିଛି ଗ୍ରହଣ କରୁନା କାହିଁକି, ଏହା ତାହାର ସାମାଜିକ ଢ଼ାଞ୍ଚାକୁ ପରିବର୍ତ୍ତନ କରିବ ନାହିଁ । ଶୂଦ୍ର ଓ ମହିଳାମାନେ କ୍ରୀତଦାସ ଭାବେ ରହିଥିବେ । ଏହି କାରଣରୁ ଆଇନ୍ ବର୍ତ୍ତମାନ ତାକୁ ରକ୍ଷା କରିବାକୁ ଆସିବା ଉଚିତ୍ ଯାହା ଫଳରେ ସମାଜ ଅଗ୍ରସର ହେବ ।"

"ଅନ୍ୟ ଏକ ଯୁକ୍ତି ହେଉଛି ଯେ ଏହି ବିଲର ପ୍ରୋତ୍ସାହକମାନେ ପାଶ୍ଚାତ୍ୟ ଦେଶର ଅନୁକରଣ କରୁଛନ୍ତି । ସେମାନେ ରାମ, ଦଶରଥ ଓ କୃଷ୍ଣ ଇତ୍ୟାଦିଙ୍କର ଆଦର୍ଶ କଥା ଉପସ୍ଥାପିତ କରିଛନ୍ତି । ମୋର କହିବା କଥା ଯେ ମୋର ଆଦର୍ଶ ଆମେରିକା, ଚୀନ ବା ପ୍ରାଚୀନ ଶାସ୍ତ୍ର ବା ରାମାୟଣ ବା ମହାଭାରତରୁ ଆସି ନାହିଁ । ମୋର ଆଦର୍ଶ ଆମେ ପ୍ରସ୍ତୁତ କରିଥିବା ସମ୍ବିଧାନରୁ ଆସିଛି । ସମ୍ବିଧାନର

ଉଦ୍ଦେଶ୍ୟରେ ଏହାର ଲକ୍ଷ୍ୟ ସମାନତା, ସ୍ୱାଧୀନତା ଓ ଭ୍ରାତୃତ୍ୱ ବୋଲି କୁହାଯାଇଛି । ତେଣୁ ଆମ ଦେଶରେ ଯେତେ ସାମାଜିକ ଅନୁଷ୍ଠାନ ଅଛି, ସେଗୁଡ଼ିକ ପରୀକ୍ଷା କରିବା ଆମର ଦାୟିତ୍ୱ, ତାହା ସମ୍ବିଧାନରେ ଲିପିବଦ୍ଧ ନୀତି ଓ ନିୟମକୁ ପରିପୂରଣ କରୁଛି କି ନାହିଁ ।'' ପୁନଶ୍ଚ ସେ କହିଲେ ଯେ ପୂଜାତ୍ମକ ବିବାହ ଆମର ସ୍ୱାଧୀନତା ଓ ସମାନତାର ଆଦର୍ଶକୁ ପରିପୂରଣ କରିପାରୁନାହିଁ କାରଣ ପୁରୁଷ ପାଇଁ ବହୁ ବିବାହ ପ୍ରଥା ଚାଲିଥିବାବେଳେ ସ୍ତ୍ରୀ ପାଇଁ ଚିରନ୍ତନ ଦାସତ୍ୱ ରହି ଆସିଛି । କୌଣସି ପରିସ୍ଥିତିରେ ସ୍ତ୍ରୀ ତାର ସ୍ୱାମୀ ଠାରୁ ସ୍ୱାଧୀନତା ପାଉ ନାହିଁ, ସେ ଯେତେ ଖରାପ ବା ମନ୍ଦ ପ୍ରକୃତିର ହୋଇଥିଲେ ମଧ୍ୟ । ଯେହେତୁ ସମ୍ବିଧାନକୁ ଗ୍ରହଣ କରାଯାଇଛି, ସେହି କାରଣରୁ ଆମକୁ ପ୍ରତ୍ୟେକଙ୍କୁ ସ୍ୱାଧୀନତା ଓ ସମାନତାର ସୁରକ୍ଷା ଦେବା ଆବଶ୍ୟକ ।

ଏସବୁ ସତ୍ତ୍ୱେ ଏହା ଉପରେ ଅନେକ ଗରମାଗରମ ଆଲୋଚନା ଚାଲିଲା । ଏହି ଆଲୋଚନା ଆମ୍ବେଦକରଙ୍କର ଧୈର୍ଯ୍ୟଚ୍ୟୁତି ଘଟାଇବାରୁ ସେ ସେପ୍ଟେମ୍ବର ୨୦ ତାରିଖ ଦିନ ଅତି ତୀବ୍ର ସମାଲୋଚନା କରି ଭାଷଣ ଦେଲେ । ସେହି ଭାଷଣରେ ସେ ରାମ ଓ ସୀତାଙ୍କ କଥା ଉଲ୍ଲେଖ କରିବାରୁ ଉତ୍ତେଜନା ଅଧିକ ବୃଦ୍ଧି ପାଇଲା ଓ ଜନମତ ଏହା ବିରୁଦ୍ଧରେ ତୀବ୍ର ପ୍ରତିକ୍ରିୟା ପ୍ରକାଶ କଲା । କେତେକ ହିନ୍ଦୁ ସଭ୍ୟ ମାନଙ୍କର ଧାର୍ମିକ ଭାବନା ଉପରେ ଏହା ଆଘାତ ସୃଷ୍ଟି କଲା । ଯଦି କାହାକୁ ଆଘାତ କରିଥାନ୍ତି, ତେବେ କ୍ଷମା ମାଗିବାକୁ ପ୍ରସ୍ତୁତ ବୋଲି ଆମ୍ବେଦକର କହିଲେ ।

ଏହାଦ୍ୱାରା ପ୍ରଧାନମନ୍ତ୍ରୀ ନେହେରୁଙ୍କର ମନୋବଳ ସମ୍ପୂର୍ଣ୍ଣ ଭାଙ୍ଗିପଡିଲା ଓ ସେ ଆମ୍ବେଦକରଙ୍କୁ ଏହି ବିଲ୍‌କୁ ବନ୍ଦ କରିବାକୁ କହିଲେ । ମାତ୍ର ୪ଟି ଧାରା ସମ୍ପର୍କରେ ବିଲ୍ ଆଲୋଚନା ହୋଇ ବନ୍ଦ ହୋଇଯିବାଦ୍ୱାରା ଆମ୍ବେଦକରଙ୍କର ମନ ଦୁଃଖ ଓ ଗ୍ଲାନିରେ ଭାଙ୍ଗିପଡିଲା ସେ କହିଥିଲେ, ମାତ୍ର ୪ଟି ଧାରା ଆଲୋଚନା ପରେ ଏହାକୁ ହତ୍ୟା କରି ସମାଧି ଦିଆଗଲା, କେହିବି ଅଶ୍ରୁପାତ କଲେ ନାହିଁ ।

## ଆଇନ ମନ୍ତ୍ରୀ ପଦରୁ ଇସ୍ତଫା

୨୭ ସେପ୍ଟେମ୍ବର ଦିନ ଆମ୍ବେଦକର ଆଇନ୍‌ମନ୍ତ୍ରୀ ପଦରୁ ଇସ୍ତଫା ପ୍ରଦାନ କରି ପ୍ରଧାନମନ୍ତ୍ରୀଙ୍କୁ ଚିଠି ଲେଖିଥିଲେ, ''ବହୁଦିନ ଧରି କ୍ୟାବିନେଟ୍‌ର ମନ୍ତ୍ରୀ ପରିଷଦରୁ ଇସ୍ତଫା ଦେବାକଥା ମୁଁ ଚିନ୍ତା କରୁଥିଲି । ମୁଁ ଏହା କରିବାକୁ ପଶ୍ଚାତପଦ ଥିଲି କାରଣ ମୁଁ ଭାବିଥିଲି ପାର୍ଲାମେଣ୍ଟର ଏହି ଅଧିବେଶନରେ ହିନ୍ଦୁ କୋଡ଼ବିଲ୍‌କୁ

ଗୃହୀତ କରାଇନେବାକୁ ସମର୍ଥ ହେବି । ମୁଁ ମଧ ଏହି ବିଲ୍‌କୁ ଭାଗଭାଗ କରିବାକୁ ରାଜି ହୋଇ ବିବାହ ବିଚ୍ଛେଦକୁ ଅଲଗା କରିଦେଲି ଏହି ବିଶ୍ୱାସରେ ଯେ ମୋର ପରିଶ୍ରମର ଫଳ ମିଳିବ । କିନ୍ତୁ ବିଲ୍‌ର ସେହି ଅଂଶକୁ ମଧ ମାରିଦିଆଗଲା । ତେଣୁ କ୍ୟାବିନେଟ୍‌ର ସଭ୍ୟ ଭାବରେ ମୁଁ ରହିବାର କୌଣସି ଉଦ୍ଦେଶ୍ୟ ରହିଲା ନାହିଁ । ସେ ପାର୍ଲାମେଣ୍ଟରେ ନିଜର ମତବ୍ୟକ୍ତ କରିବାର ସୁଯୋଗ ମଧ ପାଇଲେ ନାହିଁ । ବିରକ୍ତ ହୋଇ ସେ ପାର୍ଲାମେଣ୍ଟରୁ ବାହାରି ପ୍ରେସରେ ଏକ ବିଜ୍ଞପ୍ତି ଦେଲେ । ସେଥିରେ ସେ କ୍ୟାବିନେଟ୍ ସହିତ ତାଙ୍କର ମତଭେଦ ହେବାର ପାଞ୍ଚଗୋଟି କାରଣ ଉପସ୍ଥାପିତ କରିଥିଲେ ।

ପ୍ରଥମତଃ ନେହେରୁ ତାଙ୍କୁ ଯୋଜନା ବିଭାଗ ଦେବା ପରିବର୍ତ୍ତେ ଆଇନ୍ ବିଭାଗ ଦେଇଥିଲେ ଏବଂ ପ୍ରତ୍ୟେକ କ୍ୟାବିନେଟ ବୈଠକରୁ ତାଙ୍କୁ ବାଦ ରଖାଯାଉଥିଲା । (୨) ଅନୁନ୍ନତ ଜାତିମାନଙ୍କର ଉନ୍ନତି ପାଇଁ ସରକାରଙ୍କର ବୀତସ୍ପୃହ (୩) କାଶ୍ମୀର ନୀତି ସମ୍ପର୍କରେ ସରକାରଙ୍କ ଠାରୁ ପୃଥକ୍ ମତ (୪) ଭାରତର ଭୁଲ ବୈଦେଶିକ ନୀତି ଫଳରେ ମିତ୍ର ସୃଷ୍ଟି କରିବା ଅପେକ୍ଷା ବେଶି ବେଶି ଶତ୍ରୁ ସୃଷ୍ଟି କରିବା । (୫) ନେହେରୁଙ୍କର ହିନ୍ଦୁ କୋର୍ଡ ବିଲ୍ ପ୍ରତି ସମ୍ପୂର୍ଣ୍ଣ ଅସହଯୋଗିତା ।

ଆମ୍ବେଦକରଙ୍କ ଇସ୍ତଫା ଖବରକାଗଜରେ ହଇଚଇ ସୃଷ୍ଟି କଲା । ଟାଇମ୍‌ସ ଅଫ ଇଣ୍ଡିଆ ସମ୍ପାଦକୀୟରେ ଲେଖିଥିଲା, "ମନୁଙ୍କ ପରି ମୁକୁଟ ପିନ୍ଧିବାରୁ ବଞ୍ଚିତ ହୋଇ ଡକ୍ଟର ଆମ୍ବେଦକର ସରକାର ପରିତ୍ୟାଗ କରି ଯାଇଥିଲେ ମଧ ତାଙ୍କ ପଛରେ ସଫଳତାର ଅନେକ ଗୁଡ଼ିଏ ରେକର୍ଡ ରହିଛି ।"

ନ୍ୟାସନାଲ ଷ୍ଟାଣ୍ଡାର୍ଡ ବମ୍ବେ ଲେଖିଥିଲା, "ଡକ୍ଟର ଆମ୍ବେଦକରଙ୍କ ପରି ଦକ୍ଷ ବହୁ କମ୍ ବ୍ୟକ୍ତି ଦେଶରେ ଅଛନ୍ତି ଯେଉଁମାନେ ଯୋଜନା ବା ଅର୍ଥ, ବାଣିଜ୍ୟ ବା ଉଦ୍ୟୋଗର ଦାୟିତ୍ୱ ବହନ କରିପାରିବେ । ଯାହା ସରକାର ହରାଇଲେ, ଆଶା କରାଯାଏ ତାଙ୍କର ବିରୋଧୀ ଦଳରେ ଯୋଗ ଦେଇ ସକାରାତ୍ମକ ଭୂମିକା ନେବା ଦ୍ୱାରା ଦେଶ ତାହା ଲାଭ କରିବ ।"

ଫ୍ରି ପ୍ରେସ୍ ଜର୍ଣ୍ଣାଲ, ବମ୍ବେ ଏପରି ଦୁଃଖଦ ଘଡ଼ିରେ ଆମ୍ବେଦକର ଇସ୍ତଫା ଦେଇଯିବା ଠିକ୍ ନୁହେ ବୋଲି ମତ ଦେଇଥିଲା । ଏବଂ ଉପବାଚସ୍ପତି ତାଙ୍କୁ ତାଙ୍କର କିଛି ଅନୁମତି ଦେବା ଉଚିତ ଥିଲା ବୋଲି ଲେଖିଥିଲା ।

ଆମ୍ବେଦକରଙ୍କର ଇସ୍ତଫା ସମ୍ପର୍କରେ ମତ ଦେଇ ପ୍ରଧାନମନ୍ତ୍ରୀ ନେହେରୁ କହିଥିଲେ ଯେ ସେ ଜଣେ ଇସ୍ତଫା ଦେଉଥିବା ମନ୍ତ୍ରୀଠାରୁ ଯେପରିକା ବକ୍ତବ୍ୟ ଚାହୁଁଥିଲେ ତାହା ସେପରି ନଥିଲା ।

## ବିରୋଧୀ ଦଳର ନେତା

୨୭ ସେପ୍ଟେମ୍ବର ୧୯୫୧ରେ ଆମ୍ବେଦକର ନେହେରୁ କ୍ୟାବିନେଟରୁ ଇସ୍ତଫା ପ୍ରଦାନ କଲେ । ସେତେବେଳକୁ ନିର୍ବାଚନ ବୁଝାମଣା ଆରମ୍ଭ ହୋଇଯାଇଥାଏ । ଏକ ପକ୍ଷରେ ମହାରାଷ୍ଟ୍ରର କୃଷକ ଓ ଶ୍ରମିକ ଦଳ (Peasants and workers party in maharastra) ସହିତ ଦଳିତ ମହାସଂଘ (Scheduled caste federation)ର ନେତାମାନଙ୍କ ମଧ୍ୟରେ ଏବଂ ଅପରପକ୍ଷରେ ସମାଜବାଦୀ ନେତାମାନଙ୍କ ସହିତ ଏସ୍‌ସି.ଏଫ୍.ର । ଜୟପ୍ରକାଶ ନାରାୟଣ ଓ ଅଶୋକ ମହେତା ଆମ୍ବେଦକରଙ୍କ ସହିତ ନୂତନ ବିରୋଧୀ ଦଳ ସମ୍ପର୍କରେ ଆଲୋଚନା କଲେ ।

ଆମ୍ବେଦକରଙ୍କ ମତରେ ଶ୍ରୀ ଶଙ୍କର ରାଓ ମୋରେଙ୍କର କୃଷକ ଓ ଶ୍ରମିକ ଦଳ ମଧ୍ୟ ସାମ୍ପ୍ରଦାୟିକ ଓ ଏହା ପ୍ରାୟତଃ ମରାଠିମାନଙ୍କର ଦଳ । କିନ୍ତୁ ମୋରେ କମ୍ୟୁନିଷ୍ଟ ସମର୍ଥକ ଓ ତାଙ୍କ ଦଳ କମ୍ୟୁନିଷ୍ଟ ପାର୍ଟି ସହିତ ମିଶିବାକୁ ଆଗ୍ରହୀ ବୋଲି ଜୟପ୍ରକାଶ ଆମ୍ବେଦକରଙ୍କୁ କହିଲେ । ତଥାପି ତାଙ୍କର ସମର୍ଥକମାନେ ଜାଧେ, ମୋରେ ଏବଂ ରାଉତ (ଶ୍ରମିକ ଓ କୃଷକ ଦଳର ନେତାମାନଙ୍କୁ) ସମର୍ଥନ କରିବାକୁ ପରାମର୍ଶ ଦେଲେ । କିନ୍ତୁ ଶ୍ରମିକ ଓ କୃଷକ ଦଳ କମ୍ୟୁନିଷ୍ଟ ଦଳ (ସିପିଆଇ) ସହିତ ମେଣ୍ଟ କରିବାରୁ ଏସ୍.ସି.ଏଫ୍‌ର ସମର୍ଥନ କରିବା ହେଲା ନାହିଁ ।

ଅନୁସୂଚିତ ସଂଘ (SCF)ର କାର୍ଯ୍ୟକାରୀ କମିଟି ବୈଠକ ନୂଆଦିଲ୍ଲୀଠାରେ ଅକ୍ଟୋବର ୧୯୫୧ର ପ୍ରଥମ ସପ୍ତାହରେ ବସି ନିର୍ବାଚନୀ ଇସ୍ତାହାର ସମ୍ପର୍କରେ ଆଲୋଚନା କଲେ । ଏଥିରେ ଘୋଷଣା କରାଗଲା ଯେ ଏହାର କଂଗ୍ରେସ, ହିନ୍ଦୁ ମହାସଭା ଓ କମ୍ୟୁନିଷ୍ଟମାନଙ୍କ ସହିତ କୌଣସି ସମ୍ପର୍କ ରହିବ ନାହିଁ ।

ଅନୁସୂଚିତ ମହାସଂଘ ୧୯୫୨ ସାଧାରଣ ନିର୍ବାଚନ ଉପଲକ୍ଷେ ଏହାର ନିର୍ବାଚନୀ ଇସ୍ତାହାରକୁ ପ୍ରକାଶ କଲା । ଏଥିରେ କେତେକ ନିର୍ଦ୍ଦିଷ୍ଟ ନୀତି ପ୍ରକାଶ ପାଇଲା । ସମସ୍ତ ଭାରତୀୟ ସମାନତା ପାଇବେ ଏବଂ ସମସ୍ତଙ୍କୁ ଧାର୍ମିକ,

ଅର୍ଥନୈତିକ ଓ ରାଜନୈତିକ ସ୍ୱାଧୀନତା ମିଳିବ, ତାହା ଏଥିରେ ଲିପିବଦ୍ଧ ଥିଲା । ରାଷ୍ଟ୍ରର ଦାୟିତ୍ୱ ହେବ ସମସ୍ତ ଭାରତୀୟ ଦାରିଦ୍ର୍ୟରୁ ମୁକ୍ତ କରିବା ଏବଂ ନିର୍ଭୟରେ ରହିବାର ସୁଯୋଗଦେବା । ସ୍ୱାଧୀନତା, ସମାନତା ଓ ଭ୍ରାତୃତ୍ୱ ସମସ୍ତଙ୍କ ମଧ୍ୟରେ ବଜାୟ ରଖିବା, ମନୁଷ୍ୟ ଉପରେ ମନୁଷ୍ୟର ଶ୍ରେଣୀ ଓ ଶ୍ରେଣୀ ମଧ୍ୟରେ ଏବଂ ରାଷ୍ଟ୍ର ଓ ରାଷ୍ଟ୍ର ମଧ୍ୟରେ ଶୋଷଣ ଓ ଅତ୍ୟାଚାରକୁ ପ୍ରତିରୋଧ କରିବା ଏବଂ ଗଣତାନ୍ତ୍ରିକ ପଦ୍ଧତିର ଶାସନ ବ୍ୟବସ୍ଥା ପ୍ରଚଳନ କରାଯିବାର କୁହାଗଲା । ଏହି ଇସ୍ତାହାରରେ ବିଭିନ୍ନ ରାଜନୈତିକ ଦଳ ମାନଙ୍କ ସହିତ ସମ୍ପର୍କ କିପରି ହେବ, ତାହା ମଧ୍ୟ ଉଲ୍ଲେଖ କରାଗଲା । କୌଣସି ସ୍ୱାଧୀନ ସଭ୍ୟଙ୍କୁ ସମର୍ଥନ ନଦେବା, ସାମ୍ପ୍ରଦାୟିକ ଦଳ ବିଶେଷ କରି ହିନ୍ଦୁ ମହାସଭା ଓ ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ମେଣ୍ଟ ନ କରିବା ପଛୁଆ ଶ୍ରେଣୀ ସଂଗଠନ ଗୁଡିକ ସହିତ କାର୍ଯ୍ୟଭିତ୍ତିକ ମେଣ୍ଟ ସ୍ଥାପନ କରିବା, କମ୍ୟୁନିଷ୍ଟ (ସିପିଆଇ) ସହିତ ଆଦୌ ମେଣ୍ଟ ନକରିବା, ସ୍ୱେଚ୍ଛାଚାରୀ ଦଳମାନଙ୍କୁ ଆଦୌ ବିଶ୍ୱାସ ନକରିବା ଏବଂ ବହୁଦଳୀୟ ଶାସନ ବ୍ୟବସ୍ଥା ବିରୁଦ୍ଧରେ ଓ ଦ୍ୱିଦଳୀୟ ବ୍ୟବସ୍ଥା ସପକ୍ଷରେ ଏଥିରେ ଘୋଷଣା କରାଗଲା ।

ଆମ୍ବେଦକର ବମ୍ବେର ଚୌପାଟିଠାରେ ନିର୍ବାଚନୀ ଭାଷଣ ଦେଇ କଂଗ୍ରେସ ଉପରେ ପ୍ରଚଣ୍ଡ ଆକ୍ରମଣ କଲେ ଏବଂ ସେଠାରେ ଘୋଷଣା କରି କହିଲେ ଯେ ସୁଭାଷ ବୋଷଙ୍କ ଦ୍ୱାରା ଭାରତର ସ୍ୱାଧୀନତା ଲାଭ ହୋଇଛି, କଂଗ୍ରେସ ଦ୍ୱାରା ନୁହେ । ସମାଜବାଦୀ ପାର୍ଟି ଓ ଅନୁସୂଚିତ ମହାସଂଘ (SCF)ର ମିଳିତ ସଭା ସାର୍ କାଉସାଜି ଜେହାଙ୍ଗିର୍ ହଲ୍‌ଟାରେ ଅନୁଷ୍ଠିତ ହେଲା । ସେଠାରେ ସେ କଂଗ୍ରେସ ମନ୍ତ୍ରୀମଣ୍ଡଳ ନିର୍ମଳ ଶାସନ ଲୋକମାନଙ୍କୁ ଦେବାକୁ ଅକ୍ଷମ ହୋଇଛି ବୋଲି ଆରୋପ କଲେ ।

ବମ୍ବେର ନାରେ ପାର୍କଠାରେ ଭାଷଣ ଦେଇ କଂଗ୍ରେସ ଅନୁସୂଚିତ ଜାତି ଓ ପଛୁଆବର୍ଗ ଲୋକମାନଙ୍କର ମଙ୍ଗଳ ପାଇଁ କିଛି କାର୍ଯ୍ୟ କରୁନାହିଁ ବୋଲି କହିଲେ । ସେ ତାଙ୍କ ବକ୍ତବ୍ୟରେ ଏକ ସଶକ୍ତ ବିରୋଧୀ ଦଳର ଆବଶ୍ୟକତା ଉପରେ ଗୁରୁତ୍ୱ ଆରୋପ କରିବା ସହିତ ଏହା ଶାସକ ଦଳକୁ ନିୟନ୍ତ୍ରିତ କରିବାରେ ସହାୟକ ହେବ ବୋଲି ମତ ଦେଲେ । ନେହେରୁ ବମ୍ବେଠାରେ ଭାଷଣ ଦେବା ଅବକାଶରେ ଅନୁସୂଚିତ ଜାତି ମହାସଂଘ (SCF) ସହିତ କଂଗ୍ରେସର କୌଣସି ପ୍ରକାର ମେଣ୍ଟ ହେବାକୁ ଅସ୍ୱୀକାର କଲେ ।

୧୯୫୨ ଜାନୁୟାରୀ ମାସରେ ସାଧାରଣ ନିର୍ବାଚନ ହେଲା । ନିଜର ସ୍ୱାସ୍ଥ୍ୟଗତ କାରଣ ହେତୁ ଆମ୍ବେଦକର ବମ୍ବେ ବ୍ୟତୀତ ଅନ୍ୟ କୌଣସି ସ୍ଥାନକୁ ଯାଇ ନିର୍ବାଚନ ପ୍ରଚାର କରିପାରିଲେ ନାହିଁ । ଦୀର୍ଘଦିନ ଧରି ଦିଲ୍ଲୀଠାରେ ରହିଥିବାରୁ ନିଜର ସଙ୍ଗଠନର ଦକ୍ଷତା ଓ ଶକ୍ତି ସମ୍ପର୍କରେ ମଧ୍ୟ ଧାରଣା ନଥିଲା । ଅପରପକ୍ଷରେ ସଦ୍ୟ ଗଠିତ କଂଗ୍ରେସ ସରକାରରେ ଥିଲା ଏବଂ ଏହାର ସାଙ୍ଗଠନିକ ଶକ୍ତି ମଧ୍ୟ ଦୃଢ଼ ଥିଲା ।

ଜାନୁଆରୀ ୧୯୫୨ ନିର୍ବାଚନରେ ଆମ୍ବେଦକର ପରାସ୍ତ ହେଲେ । ସେ ନିଜେ ୧୨୩୫୭୬ ଭୋଟ ପାଇଥିବାବେଳେ ତାଙ୍କର ପ୍ରତିଦ୍ୱନ୍ଦୀ ଶ୍ରୀ ଏନ୍.ଏସ. କାଜ୍ରୋଲ୍କର ୧୩୭୯୫୦ ଭୋଟପାଇ ନିର୍ବାଚିତ ହେଲେ । ଅନୁସୂଚିତ ଜାତି ମହାସଂଘ ଓ ସମାଜବାଦୀ ଦଳ ନିର୍ବାଚନରେ ମୂଳପୋଛ ହୋଇଗଲେ । ରାଜନୀତିରେ କୃତଜ୍ଞତାର କୌଣସି ମୂଲ୍ୟ ନାହିଁ ଏହା ପ୍ରମାଣ ହୋଇଗଲା ।

ନିର୍ବାଚନରେ ଆମ୍ବେଦକରଙ୍କର ପରାସ୍ତ ହେବା ମୂଳରେ କେତେକ ବିଶେଷ କାରଣ ବିଦ୍ୟମାନ । ସେ କାଶ୍ମୀରକୁ ଭାଗଭାଗ କରିବା ସପକ୍ଷରେ ମତ ଦେଇଥିଲେ । ନିର୍ବାଚନରେ ମୁସଲମାନମାନଙ୍କ ପାଇଁ ପୃଥକ୍ ନିର୍ବାଚନ ମଣ୍ଡଳୀ, ଭାଷଣରେ ସକାରାତ୍ମକ ଦୃଷ୍ଟିଭଙ୍ଗୀର ଭାବ ଏବଂ ଅସଙ୍ଗଠିତ ଦଳର ଦୁର୍ବଳତା ସହିତ ନିଜର କିଛି କାର୍ଯ୍ୟକ୍ରମର ରୂପରେଖ ଉପସ୍ଥାପନ ନକରି କଂଗ୍ରେସ ଦଳ ବିରୋଧରେ ବିଷୋଦ୍‌ଗାର ତାଙ୍କ ବିରୁଦ୍ଧରେ ଗଲା ।

ତାଙ୍କର ସହଯୋଗୀ ରାଜଭୋଜ ପାର୍ଲାମେଣ୍ଟକୁ ନିର୍ବାଚିତ ହେବା ବେଳେ ବି.ସି କାମ୍ବଲେ ବମ୍ବେ ବିଧାନସଭାକୁ ନିର୍ବାଚିତ ହୋଇଗଲେ । ଉଭୟ ଆମ୍ବେଦକର ଓ ଜୟପ୍ରକାଶ ନାରାୟଣ ନିର୍ବାଚନରେ ପରାଜିତ ହେବା କେଉଁ କାରଣରୁ ଘଟିଲା, ତାହା ନେଇ ବିସ୍ମୟ ପ୍ରକାଶ କଲେ । ସେ ଅନୁଭବ କଲେ ଯେ ଶ୍ରୀ ଏସ.ଏ. ଡାଙ୍ଗେଙ୍କ ଯୋଗୁଁ ହିଁ ତାଙ୍କର ଏପରି ପରାଜୟ ଘଟିଲା ।

ନିର୍ବାଚନରେ ହାରିଯିବାପରେ ସେ ରାଜ୍ୟସଭାକୁ ଯିବାପାଇଁ ଇଚ୍ଛା ପ୍ରକାଶ କଲେ କାରଣ ପାର୍ଲାମେଣ୍ଟ କାର୍ଯ୍ୟକୁ ସେ ବେଶି ଭଲ ପାଉଥିଲେ ଏବଂ ଏହା ତାଙ୍କର ମାନସିକ ଓ ଶାରୀରିକ ସ୍ୱାସ୍ଥ୍ୟ ପାଇଁ ଆବଶ୍ୟକ ଥିଲା । ତାଙ୍କ ସ୍ତ୍ରୀ ଏ ବିଷୟରେ କମଳାକାନ୍ତ ଚିତ୍ରେଙ୍କୁ ଚିଠି ଲେଖି କିପରି ସେ ଚେଷ୍ଟା କରିବେ, ତାହା ଅନୁରୋଧ କଲେ । ବମ୍ବେ ବିଧାନସଭାରୁ ଯାଉଥିବା ୧୭ ଜଣ ସଭ୍ୟଙ୍କ ମଧ୍ୟରୁ ଆମ୍ବେଦକର ନିର୍ବାଚିତ ହେଲେ । ୧୯୫୪ ମେ ମାସରେ ପୁନରାୟ ଲୋକସଭାକୁ

ନିର୍ବାଚିତ ହେବାପାଇଁ ସେ ଚେଷ୍ଟା କଲେ ମାତ୍ର ନିର୍ବାଚନରେ ପରାସ୍ତ ହେଲେ । ସେ ଅନୁଭବ କଲେ ଯେ ଯେଉଁ ଦଳରେ ଗ୍ରାମାଞ୍ଚଳ ସମର୍ଥନର ଅଭାବ, ସେହି ଦଳର କୌଣସି ଭବିଷ୍ୟତ ନାହିଁ ।

ଏହି ସମୟରେ ଆମ୍ବେଦକର ବିଭିନ୍ନ ସଭାସମିତିରେ ଯୋଗଦେଇ ଭାଷଣ ଦେଇଥିଲେ । କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ପାଇଥିବା ଆଇନ୍ ଡିଗ୍ରୀକୁ ଗ୍ରହଣ କରିଥିଲେ । ଗଣତନ୍ତ୍ରର ସଂଜ୍ଞା ନିରୂପଣ କରିବାକୁ ଯାଇ ସେ କହିଥିଲେ ଗଣତନ୍ତ୍ରର କାର୍ଯ୍ୟ ସ୍ୱେଚ୍ଛାଚାରୀ ଶାସକ ଉପରେ ଅଙ୍କୁଶ ଲଗାଇବା ଯେତେ ନୁହେ, ବରଂ ବେଶି ହେଉଛି ଜନମଙ୍ଗଳ କାର୍ଯ୍ୟ । ସେ ୱାଲଟର ବାଗ୍‌ହଟଙ୍କର ସଂଜ୍ଞା, ''ଗଣତନ୍ତ୍ର ସରକାର ଆଲୋଚନାର ସରକାର, ଏବଂ ଆବ୍ରହାମ ଲିଙ୍କନଙ୍କର ମତ, ''ଲୋକଙ୍କ ପାଇଁ, ଲୋକଙ୍କର ଓ ଲୋକଙ୍କ ଦ୍ୱାରା ସରକାର'' ପରିବର୍ତ୍ତେ ସେ କହିଲେ, " a form and method of government whereby revolutionary changes in the economic and social life of the people are brought about without blood shed." ଅର୍ଥାତ୍ ''ଗଣତନ୍ତ୍ର ହେଉଛି ବିନା ରକ୍ତପାତରେସାମାଜିକ ଓ ଅର୍ଥନୈତିକ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆଣୁଥିବା ଏକ ସରକାର ।'' ଗଣତନ୍ତ୍ରର ସଫଳତା ପାଇଁ ସେ କେତେଗୁଡିଏ ନୀତିର ଆବଶ୍ୟକତା ଉପରେ ଜୋର ଦେଇଥିଲେ ।

(୧) ଗଣତନ୍ତ୍ରରେ ଅସମାନତା ଆଦୌ ରହିବା ଉଚିତ୍ ନୁହେ । ନିର୍ଯ୍ୟାତିତ ବା ନିଷ୍ପେଷିତ ଶ୍ରେଣୀ ରହିବାର ଆବଶ୍ୟକତା ନାହିଁ ।

(୨) ଏକ ସକ୍ରିୟ ବିରୋଧୀଦଳ ରହି ସରକାରର ଭୁଲ ତ୍ରୁଟି ଦେଖାଇବା ଉଚିତ୍ ।

(୩) ଆଇନ୍ ଓ ଶାସନ ସମ୍ମୁଖରେ ସମସ୍ତେ ସମାନ ହେବା ଦରକାର ।

(୪) ସାମ୍ବିଧାନିକ ନୈତିକତା ପାଳନ ଏକାନ୍ତ ଆବଶ୍ୟକ ।

(୫) ଗଣତନ୍ତ୍ରର ସଫଳତା ପାଇଁ ସମାଜରେ ନୈତିକ ବ୍ୟବସ୍ଥା

(୬) ଗଣଚେତନାର ବିକାଶ ଓ ପରିପ୍ରକାଶ ଗଣତନ୍ତ୍ରର ସଫଳତା ପାଇଁ ସର୍ବାଦୌ ଆବଶ୍ୟକ ।

ବିରୋଧୀ ଦଳର ନେତା ଭାବରେ ସେ ବିରୋଧୀ ଦଳ ମାନଙ୍କର ମତକୁ

ସଫଳତାର ସହ ଉପସ୍ଥାପିତ କରୁଥିଲେ ମଧ୍ୟ, ତାଙ୍କ ବକ୍ତବ୍ୟରେ ପୂର୍ବର ସେହି ଶାଣିତ ବ୍ୟଙ୍ଗ ପରିଲକ୍ଷିତ ହୋଇନଥିଲା ।

## ୧୧. ମହାନ୍ ଗବେଷକ ଓ ଚିନ୍ତାନାୟକ

ଭାରତର କେତେକ ବିସ୍ମୟକର ବ୍ୟକ୍ତିମାନଙ୍କ ମଧ୍ୟରୁ ଅନ୍ୟତମ ହେଉଛନ୍ତି ଆମ୍ବେଦକର । ହୁଏତ ତାଙ୍କର ରାଜନୈତିକ ସଫଳତାକୁ ଲୋକେ ମନେ ରଖି ନପାରନ୍ତି କିନ୍ତୁ ତାଙ୍କ ଗବେଷଣା ଲବ୍ଧ ଜ୍ଞାନ, ଶିକ୍ଷା ଓ ପାଣ୍ଡିତ୍ୟ କ୍ଷେତ୍ରରେ ସେ ଜାଜ୍ୱଲ୍ୟମାନ । ଆମ୍ବେଦକର ରାଜନୈତିକ ନେତା, ସାମାଜିକ ବିପ୍ଳବୀ, ବୌଦ୍ଧ ଧର୍ମର ପ୍ରକ୍ଷେପକ ହୁଏତ ବିସ୍ମୃତିର ଗର୍ଭରେ ଲୀନ ହୋଇଯାଇପାରନ୍ତି, କିନ୍ତୁ ଆମ୍ବେଦକର ଗବେଷକ ଅମର । ସେ ଦାର୍ଶନିକ, ସତ୍ୟକୁ ଅନୁସନ୍ଧାନ କରିବାର ଅନିସନ୍ଧିତ୍ସୁ ।

ହାତ ଗଣତିରେ ଡିଗ୍ରୀ ନେଇ ବିଚାର କଲେ ଦେଶର ମୁଷ୍ଟିମେୟ କେତେକ ବ୍ୟକ୍ତିବିଶେଷଙ୍କ ମଧ୍ୟରେ ସେ ଅନ୍ୟତମ । ତାଙ୍କର ଶିକ୍ଷାଗତ ଯୋଗ୍ୟତା ଏମ୍.ଏ, ପି.ଏଚ୍.ଡି, ଡି.ଏସ୍.ସି. ଏବଂ ବାରିଷ୍ଟର ଆଟ୍.ଲ ।

ସେ ମହାନ୍ ଗବେଷକ ହେବା ସହିତ ମଧ୍ୟ ପୁସ୍ତକ ପ୍ରେମୀ । ୧୯୩୫ ମସିହାରେ ବମ୍ବେ, ଦାଦାରର ଠାରେ ତାଙ୍କର ରାଜଗୃହ ଆବାସ ନିର୍ମାଣ କରିବା ବେଳେ, ସେ ନିଜଘରର ଉପର ମହଲାକୁ ଏପରି ନିର୍ମାଣ କରିଥିଲେ ଯେ ଯେପରି ହଜାର ହଜାର ବହି ସୁରକ୍ଷିତ ହୋଇ ରହିପାରିବ । ତାଙ୍କର ବ୍ୟକ୍ତିଗତ ଲାଇବ୍ରେରୀ ବିରାଟ । ଯେ କୌଣସି ଆଗନ୍ତୁକ ଅତିଥି ସେହି ବିରାଟ ସଂଖ୍ୟାର ବହି ଦେଖି ତଟସ୍ଥ ହୋଇଯାଏ ।

ସମୁଦ୍ର ପରି ଅଗାଧ ଜ୍ଞାନର ଅଧିକାରୀ ଏବଂ ପୁସ୍ତକପ୍ରେମୀ ଆମ୍ବେଦକରଙ୍କର ଜୀବନଥିଲା ଜ୍ଞାନ ଅନ୍ୱେଷଣ ପାଇଁ ସଂଗ୍ରାମର ଜୀବନ । ଜୀବନର ପ୍ରାରମ୍ଭରୁ ସେ ନିଜର ଲକ୍ଷ୍ୟ ସ୍ଥିର କରିନେଇଥିଲେ । ତେଣୁ ତାଙ୍କର ଗବେଷଣାଲବ୍ଧ ଜ୍ଞାନ ଆନନ୍ଦ ପାଇବା ପାଇଁ ନଥିଲା ବା ନିଜ ମନ ଖୁସି କରିବା ପାଇଁ ସେ ଲେଖୁନଥିଲେ । ତାଙ୍କର ଗବେଷଣାଲବ୍ଧ ଜ୍ଞାନର ସେ ଯାହା ଲେଖିଯାଇଛନ୍ତି, ତାହା ଆଗାମୀ ଭବିଷ୍ୟତ ଗବେଷକ ମାନଙ୍କ ପାଇଁ ପ୍ରେରଣା ଓ ମାର୍ଗଦର୍ଶନର କାର୍ଯ୍ୟ କରୁଛି ।

୧୯୧୬ରୁ ୧୯୫୬ ମସିହା ମଧ୍ୟରେ ସେ ପ୍ରାୟ ୨୦ଟି ଇଂରାଜୀ ପୁସ୍ତକ ରଚନା କରିଛନ୍ତି । ସେହି ପୁସ୍ତକର ବିଷୟବସ୍ତୁ ବ୍ୟାପକ ଓ ବିସ୍ତୃତ । ଯେଉଁ କେତେଗୁଡ଼ିଏ ମୁଖ୍ୟ ପୁସ୍ତକ ଏବେ ମଧ୍ୟ ନୂତନତାର ଦିଗ୍‌ବଳୟ ଉନ୍ମୋଚନ କରେ ସେଗୁଡିକ ହେଲା

(୧) ଦି ପ୍ରୋବ୍ଲେମ ଅଫ୍ ରୁପି-ଇଟ୍‌ସ୍ ଆରିଜିନ୍ ଆଣ୍ଡ ଇଟିସ୍ ସଲ୍ୟୁସନ(୧୯୩୫)

(୨) ଦି ଇଭ୍ୟୁଲିସନ୍ ଅଫ୍ ପ୍ରଭିନିସିଆଲ ଫାଇନାସ ଇନ୍ ବ୍ରିଟିଶ୍ ଇଣ୍ଡିଆ (୧୯୨୫)

(୩) ଆନିହିଲେସନ୍ ଅଫ୍ କାଷ୍ଟ (୧୯୩୬)

(୪) ଥଟସ୍ ଅନ୍ ପାକିସ୍ଥାନ (୧୯୪୦,୧୯୪୬)

(୫) ରାନାଡେ, ଗାନ୍ଧି ଆଣ୍ଡ ଜିନ୍ନା (୧୯୪୩)

(୬) ହ୍ୱାଟ୍ କଂଗ୍ରେସ ଆଣ୍ଡ ଗାନ୍ଧି ହାଭ୍ ଡନ୍ ଟୁ ଦି ଅନ୍‌ଟଚେବୁଲସ(୧୯୪୫)

(୭) ହୁ ଓୟାର ଦି ଶୂଦ୍ରଜ୍ ? (୧୯୪୭)

(୮) ଦି ଅନ୍‌ଟଚେବୁଲସ (୧୯୪୮)

(୯) ଥଟସ୍ ଅନ୍ ଲିଙ୍ଗୁଇସ୍ଟିକ ଷ୍ଟେଟସ୍ (୧୯୫୫)

(୧୦) ଦି ବୁଦ୍ଧ ଆଣ୍ଡ ହିଜ୍ ଧାମ (୧୯୫୭)

ଡକ୍ଟର ଆମ୍ବେଦକରଙ୍କର ଗବେଷଣା ଲବ୍ଧ ପୁସ୍ତକର ବୈଶିଷ୍ଟ୍ୟ ହେଲା ସେ ସବୁକଥାକୁ ନିର୍ଭୀକ ଭାବରେ ଓ ରୋକ୍‌ଠୋକ୍ କହିପାରନ୍ତି । ପ୍ରଚଳିତ ବ୍ୟବସ୍ଥା ପ୍ରତି ସେଥିରେ ମଧ୍ୟ ଥାଏ ଦାରୁଣ ଆଘାତ ।

ଟଙ୍କା ସମସ୍ୟା (ଦି ପ୍ରୋବଲେମ ଅଫ୍ ରୁପି) ହେଉଛି ତାଙ୍କର ଡି.ଏସ୍.ସି ଥେସିସ୍ । ଏଥିପାଇଁ ୧୯୨୩ ମସିହାରେ ତାଙ୍କୁ ଲଣ୍ଡନ ବିଶ୍ୱବିଦ୍ୟାଳୟ ଉପାଧି ପ୍ରଦାନ କରିଥିଲେ । ସେହିବର୍ଷ ଲଣ୍ଡନର କୌଣସି ପ୍ରକାଶନ ସଂସ୍ଥା ଏହି ବହିଟିକୁ ଛାପିଥିଲେ । ଲଣ୍ଡନ ସ୍କୁଲ ଅଫ୍ ଇକୋନମିକ୍‌ସ ଓ ପଲିଟିକ୍‌ସର ପ୍ରଫେସର ଏଡଉଇଡ କାନନ ଏହାର ମୁଖବନ୍ଧରେ ଲେଖିଥିଲେ, "ମୁଁ ତାଙ୍କର ଯୁକ୍ତି ଓ ମତରୁ କିଛି ସତେଜତାର ମାଦକତା ଅନୁଭବ କଲି । କାର୍ଯ୍ୟରେ ଲଗାଇବା କ୍ଷେତ୍ରରେ ଆମ୍ବେଦକର ହିଁ ଠିକ୍ ।"

ଟଙ୍କାର ସମସ୍ୟା ସମ୍ପର୍କରେ ସେ, ତା'ର ଇତିହାସକୁ ଅନୁଧ୍ୟାନ କରି ମତ ଦେଇଥିଲେ ଯେ ଟଙ୍କାର ଦେଶ ଭିତରେ କିଣା ବିକା କରିବାର କ୍ଷମତାକୁ ଅବହେଳା କରାଯାଇଛି । ଏହାର ବିନିମୟ ମୂଲ୍ୟର ଗୁରୁତ୍ୱ ଯେତେ ବେଶି ନୁହେ, ତାର ଦେଶରେ କିଣିବାର ମୂଲ୍ୟ ସେତେ ଅଧିକା ଗୁରୁତ୍ୱପୂର୍ଣ୍ଣ । ସୁନା ଅନୁପାତରେ ଟଙ୍କାର ମୂଲ୍ୟ ସୁନାବେପାରୀଙ୍କ ପାଇଁ ଗୁରୁତ୍ୱ ବହନ କରେ କିନ୍ତୁ ଏହା ସାଧାରଣ ଲୋକମାନଙ୍କୁ କ୍ରୟ ପଦାର୍ଥ ନେଇ ଅସୁବିଧାରେ ପକାଏ । ଯେଉଁ ଟଙ୍କା ଚଳପ୍ରଚଳ ହୁଏ, ତାହା ସରକାରୀ ତହବିଲକୁ ଫେରେ ନାହିଁ । ସୁନା ଅନୁପାତରେ ଟଙ୍କା ମୂଲ୍ୟ ନିର୍ଦ୍ଧାରଣ ଏବଂ ଏହାର ଦେଣନେଣ ଏହି ମୂଳ ଉପରୁ ଆସିବା ଦରକାର । ସୁନା ମୂଲ୍ୟ ଭିତ୍ତିକ ହେଲେ ଟଙ୍କା ଦେଣନେଣ ସୁବିଧାଜନକ ହେବ ଏବଂ ମୁଦ୍ରାସ୍ଫୀତି ରୋକିବାକୁ ସମ୍ଭବ ହେବ ।

ଟଙ୍କାର ମୂଲ୍ୟ ସମ୍ପର୍କିତ ଏହି ପୁସ୍ତକ ଦେଶର ଆର୍ଥିକ ସମସ୍ୟା ସମାଧାନରେ ଥିଲା ଏକ ମାଇଲଖୁଣ୍ଟବୋଲି ବିଭିନ୍ନ ପତ୍ରପତ୍ରିକା ମତ ପ୍ରକାଶ କରିଥିଲେ । ଦି ଇଭୁ୍ୟଲ୍ୟୁସନ୍ ଅଫ୍ ପ୍ରଭିନିସିଆଲ ଫାଇନାନ୍ସ୍ ଇନ୍ ବ୍ରିଟିଶ ଇଣ୍ଡିଆ ପୁସ୍ତକ ଲେଖି ସେ ୧୯୧୭ ମସିହାରେ କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡି ଡିଗ୍ରୀ ପାଇଥିଲେ । ଏହା ୧୯୨୫ରେ ପ୍ରକାଶିତ ହୋଇଥିଲା । ବ୍ରିଟିଶ ସାମ୍ରାଜ୍ୟବାଦ କିପରି ଗରିବ କାରିଗରମାନଙ୍କ ଉପରେ ଟିକସ ଲଦି ଦେଉଛନ୍ତି, ତାର ବର୍ଣ୍ଣନା କରିଥିଲେ ।

୧୯୩୬ ମସିହା ଲାହୋର୍ ଠାରେ ଜାତ-ପାତ-ତୋଡକ ମଣ୍ଡଳ ଦ୍ୱାରା ଆହୂତ ବାର୍ଷିକ ସମ୍ମିଳନୀରେ 'ଆନିହିଲେସନ ଅଫ୍ କାଷ୍ଟ' ଶୀର୍ଷକ ବକ୍ତୃତା ଦେବାପାଇଁ ସ୍ଥିର କରିଥିଲେ । ଯଦିଓ ସେହି ସମ୍ମିଳନୀରେ ସେ ଏହି ବକ୍ତୃତାକୁ ଦେଇପାରିନଥିଲେ । ପରେ ଏହା ପ୍ରକାଶିତ ହୋଇଥିଲା ।

ଆମ୍ବେଦକର ଏହି ପୁସ୍ତକରେ ଦର୍ଶାଇଥିଲେ ଯେ, "ଜାତି ପ୍ରଥା କେବଳ ଶ୍ରମ ବିଭାଜନ ନୁହେ । ଏହା ଶ୍ରମିକମାନଙ୍କର ବିଭାଜନ ମଧ୍ୟ । ଶ୍ରମବିଭାଜନ ସ୍ୱତଃସ୍ଫୂର୍ତ୍ତ ନୁହେ ବା ପ୍ରାକୃତିକ ଅବସ୍ଥା ନୁହେ । ଏହା ପୂର୍ବନିର୍ଦ୍ଧାରିତ ସିଦ୍ଧାନ୍ତ ଉପରେ ଆଧାରିତ । ଜାତିପ୍ରଥା ସାଧାରଣ ଚେତନାକୁ ହତ୍ୟା କରିଛି । ଏହା ହିନ୍ଦୁ ସମାଜକୁ ସମ୍ପୂର୍ଣ୍ଣ ଭାବରେ ଅନୈତିକ ଓ ଅସଂଗଠିତ କରିଦେଇଛି । ଚାତୁର୍ବର୍ଣ୍ଣ ପରି ସବୁଠାରୁ ଘୃଣ୍ୟ ସାମାଜିକ ବ୍ୟବସ୍ଥା ଠାରୁ ଅନ୍ୟ କିଛି ନାହିଁ ।"

ଏହି ଜାତିପ୍ରଥାକୁ କିପରି ଦୂର କରାଯାଇପାରିବ ତାହା ସମ୍ପର୍କରେ ମତଦେଇ ସେ କହିଥିଲେ, ''ଯେଉଁ ଲୋକମାନେ ଜାତି ପ୍ରଥା ପାଳନ କରୁଛନ୍ତି, ସେମାନେ ଦୋଷୀ ନୁହଁନ୍ତି, ଦୋଷ ରହିଛି ଶାସ୍ତ୍ରରେ ଯାହା ଜାତିର ଧର୍ମ ଶିକ୍ଷା ଦିଏ । ତେଣୁ ନିରାକରଣର ବାଟ ହେଉଛି ଶାସ୍ତ୍ରର ପବିତ୍ରତା ସମ୍ପର୍କରେ ଥିବା ବିଶ୍ୱାସକୁ ସମ୍ପୂର୍ଣ୍ଣଭାବେ ଧ୍ୱଂସ କରିବା ।''

ଡକ୍ଟର ଆମ୍ବେଦକରଙ୍କର ଏହି ଭାଷଣ ବିଭିନ୍ନ ନେତୃବୃନ୍ଦଙ୍କ ଦୃଷ୍ଟି ଆକର୍ଷଣ କରିଥିଲା ଓ ଗାନ୍ଧିଜୀ କହିଥିଲେ ''ଡକ୍ଟର ଆମ୍ବେଦକର ହିନ୍ଦୁଧର୍ମକୁ ଆହ୍ୱାନ ଦେଇଛନ୍ତି ।''

ଯେତେବେଳେ ମୁସଲମାନମାନେ ପାକିସ୍ଥାନ ଗଠନ ନେଇ କଳ୍ପନା କରିନଥିଲେ, ଡକ୍ଟର ଆମ୍ବେଦକର ତାଙ୍କର ପୁସ୍ତକ ''ଥଟସ୍ ଅନ୍ ପାକିସ୍ଥାନ'' ଲେଖିଲେ । ସେ ଏହି ପୁସ୍ତକକୁ ବିଶ୍ୱାସ, ଦକ୍ଷତା ଓ ସାହସର ସହିତ ରଚନା କରିଥିଲେ । ଦେଶର ବିଭାଜନ ସମ୍ପର୍କରେ ନିଜର ଦୃଢ଼ମତ ପୋଷଣ କରି ସେ କହିଥିଲେ, ''ଗୋଟିଏ ଅଖଣ୍ଡ ଭାରତକୁ ରଖିବା ପାଇଁ ଯେଉଁ ସଂଗ୍ରାମ ହେଉଛି, ତାହାର ବାସ୍ତବିକ କିଛି ମୂଲ୍ୟ ଅଛିକି ନାହିଁ, ସେ ବିଷୟରେ ବିଚାର କରିବାର ଅଛି । ଏପରିକି ଯଦିଚ ଭାରତ ଅଖଣ୍ଡ ରହେ ତଥାପି ଏହା ଏକକ ହୋଇ ରହି ପାରିବ ନାହିଁ । ଭାରତ ହୁଏତ ନାମ ଅନୁସାରେ ଗୋଟିଏ ଦେଶ ହୋଇ ରହିପାରେ କିନ୍ତୁ ପ୍ରକୃତ ପକ୍ଷେ ଏହା ଦୁଇଟି ଦେଶ ପାକିସ୍ଥାନ ଏବଂ ହିନ୍ଦୁସ୍ଥାନ, ଯାହାକୁ ଜୋର ଜବରଦସ୍ତ କରି କୃତ୍ରିମ ଭାବରେ ଏକତ୍ର କରାଯାଇଛି ।''

ସେ ଦେଶ ବିଭାଜନକୁ ସ୍ପଷ୍ଟଭାବରେ ବ୍ୟକ୍ତ କରି ସଂଖ୍ୟାଲଘୁ ଲୋକେ ବା ହିନ୍ଦୁମାନେ ଭାରତକୁ ଚାଲି ଆସିବା ସପକ୍ଷରେ ମତ ଦେଇଥିଲେ ଯାହା ଦେଶ ବିଭାଜନ ବେଳେ ଘଟିଥିଲା । ଏହି ପୁସ୍ତକ ପ୍ରକାଶିତ ହେଲା ୧୯୪୬ରେ । ସେ ମୁସଲମାନ ସମାଜ ଉପରେ ମତ ଦେଇ ସେମାନଙ୍କର ଆନୁଗତ୍ୟ କେବଳ ମୁସଲମାନମାନଙ୍କ ପ୍ରତି ବୋଲି କହିଥିଲେ ।

୧୯୪୩ ଜାନୁଆରୀ ୧୮ ତାରିଖରେ ରାନାଡେଙ୍କର ୧୦୧ତମ ଜନ୍ମ ଦିବସରେ ଆମ୍ବେଦକର ପୁନାର ଗୋଖଲେ ମେମୋରିଆଲ ହଲ୍‌ରେ ଭାଷଣ

ଦେଇଥିଲେ । ସେଠାରେ ସେ ଇତିହାସ ସୃଷ୍ଟିରେ ମହାମନୀଷୀମାନଙ୍କର ଭୂମିକା ଶୀର୍ଷକ ଆଲୋଚନା ଆରମ୍ଭ କରି ଭିନ୍ନ ଭିନ୍ନ ତଥ୍ୟ ଓ ତତ୍ତ୍ୱ ଉପସ୍ଥାପିତ କରିଥିଲେ । ନୈତିକ ଗୁଣ ବ୍ୟତୀତ କୌଣସି ବ୍ୟକ୍ତି ମହାମନୀଷୀ ହୋଇପାରେ ନାହିଁ । ଜଣେ ବ୍ୟକ୍ତି ସେତେବେଳେ ବିଶିଷ୍ଟ ବ୍ୟକ୍ତିରେ ପରିଣତ ହୁଏ ଯେତେବେଳେ ସେ ସମାଜ ସମ୍ମୁଖୀନ ହେଉଥିବା ସମସ୍ୟାରୁ ତାକୁ ରକ୍ଷା କରିପାରେ । ରାନାଡେ ହିନ୍ଦୁ ସମାଜ ବ୍ୟବସ୍ଥାକୁ ଶକ୍ତି ସମ୍ପନ୍ନ କରି ଗଣତାନ୍ତ୍ରିକ ସମାଜ ଗଠନ କରିବାକୁ ଚେଷ୍ଟା କରିଥିଲେ । ସେଥିପାଇଁ ସେ ମହାମନୀଷୀ ଭାବରେ ବନ୍ଦନୀୟ ।

୧୯୪୫ ଜୁନ୍‌ମାସରେ ଗାନ୍ଧି ଏବଂ କଂଗ୍ରେସ ଅସ୍ପୃଶ୍ୟ ମାନଙ୍କ ପାଇଁ କ'ଣ କରିଛନ୍ତି ଶୀର୍ଷକରେ ଏକ ବହି ପ୍ରକାଶିତ କଲେ ।

ଏହି ପୁସ୍ତକ କଂଗ୍ରେସ ଦଳ ଉପରେ ଏକ ବୋମା ପରି ପଡିଲା । ସେ ଅସ୍ପୃଶ୍ୟମାନଙ୍କୁ ଗାନ୍ଧି ଓ ଗାନ୍ଧୀବାଦ ସମ୍ପର୍କରେ ସଚେତ ରହିବାକୁ କହିଲେ । ତାଙ୍କ ମତରେ, ''ଗାନ୍ଧୀବାଦ ମଧ୍ୟରେ ସାଧାରଣ ମଣିଷର କୌଣସି ଆଶା ନାହିଁ । ଏହା ମଣିଷକୁ ପଶୁପରି ବ୍ୟବହାର କରେ, ତାହାଠାରୁ ଅଧିକ କିଛି ନୁହେ । ମନୁଷ୍ୟ ଓ ପଶୁ ମଧ୍ୟରେ ପାର୍ଥକ୍ୟ ହେଉଛି ସଂସ୍କୃତି । ତେଣୁ ପ୍ରତ୍ୟେକ ମନୁଷ୍ୟ ସମାଜ ପ୍ରତ୍ୟେକ ମନୁଷ୍ୟକୁ ସଂସ୍କୃତି ସଚେତନ ହୋଇ ଜୀବନ ଯାପନ କରିବାର ସୁଯୋଗ ଦେବା ଉଚିତ । କିନ୍ତୁ ପ୍ରକୃତରେ ତାହା ଘଟୁନାହିଁ । ଗାନ୍ଧୀବାଦ ଶ୍ରେଣୀ ବ୍ୟବସ୍ଥା ରକ୍ଷିବା ଉପରେ ଗୁରୁତ୍ୱ ଦିଏ ଏବଂ ଆର୍ଥିକ ଦିଗରୁ ଧନୀ, ଗରୀବ, ଉଚ୍ଚନୀଚ, ମାଲିକ ଓ ଶ୍ରମିକ ସାମାଜିକ ସଙ୍ଗଠନର ଅଂଶ ବୋଲି ବିଚାର କରେ । ଏହା ଏକ ସନ୍ତୁଳିତ ସମାଜବ୍ୟବସ୍ଥା ସୃଷ୍ଟି କରିବାର ସହାୟକ ନୁହେ ।

୧୯୪୬ରେ ଆମ୍ବେଦକର ଅନ୍ୟ ଏକ ପୁସ୍ତକ ପ୍ରକାଶ କଲେ । ତାର ନାଁ ହେଉଛି ''ଶୂଦ୍ର କେଉଁମାନେ ?'' ଇଣ୍ଡୋ-ଆର୍ଯ୍ୟ ସମାଜରେ ସେମାନେ କିପରି ଚତୁର୍ଥ ବର୍ଣ୍ଣ ହେଲେ ? ଇଣ୍ଡୋ-ଆର୍ଯ୍ୟ ସମାଜ ବ୍ୟବସ୍ଥା ଚାତୁର୍ବର୍ଣ୍ଣ ବ୍ୟବସ୍ଥା ଉପରେ ଅବସ୍ଥିତ । ଏହା ସମାଜକୁ ଚାରିଭାଗରେ ବିଭକ୍ତ କରିଛି - ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଓ ଶୂଦ୍ର । କେବଳ ସେତିକି ନୁହେ ଚାତୁର୍ବର୍ଣ୍ଣ ସମାଜକୁ ଚାରିଭାଗରେ ବିଭକ୍ତ କରିବା ସହିତ ଏହା ସହିତ ଜୀବନ କିପରି ଭାବରେ ସମ୍ପୃକ୍ତ ତାହା ଉଲ୍ଲେଖ

କରି ଅସମାନତାର ନୀତି ନିର୍ଦ୍ଧାରଣ କରିଛି । ଏବଂ ଏହି ନୀତିକୁ ଆଇନ ସମ୍ମତ କରି ଦଣ୍ଡବିଧାନ ମଧ୍ୟ କରିଛି । ତେଣୁ ହିନ୍ଦୁମାନଙ୍କ ମଧ୍ୟରେ ଶୂଦ୍ରମାନେ ସବୁଠାରୁ ନୀଚ ଓ ସେମାନଙ୍କୁ ଘୃଣା ଦୃଷ୍ଟିରେ ଦେଖାଯାଏ ।

ସେ ତାଙ୍କର ଏହି ଗବେଷଣାଲବ୍ଧ ପୁସ୍ତକକୁ ବିଶ୍ଳେଷଣ କରି ଲେଖିଥିଲେ,

(୧) ଶୂଦ୍ରମାନେ ଆର୍ଯ୍ୟ ସମ୍ପ୍ରଦାୟର ବଂଶୋଦ୍ଭବ

(୨) ଏପରି ଏକ ସମୟ ଥିଲା ଯେତେବେଳେ ଆର୍ଯ୍ୟ ସମାଜ କେବଳ ତିନିଗୋଟି ବର୍ଣ୍ଣକୁ ସ୍ୱୀକୃତି ପ୍ରଦାନ କରିଥିଲା -ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ ।

(୩) ଶୂଦ୍ର ଗୋଟିଏ ପୃଥକ୍ ବର୍ଣ୍ଣ ନୁହେ, ଏହା କ୍ଷତ୍ରିୟ ବର୍ଣ୍ଣର ଅଂଶ ବିଶେଷ ।

(୪) ଶୂଦ୍ରରାଜା ଓ ବ୍ରାହ୍ମଣମାନଙ୍କ ମଧ୍ୟରେ ସଦାସର୍ବଦା ଦ୍ୱନ୍ଦ ଲାଗିରହିଥିଲା ।

(୫) ଶୂଦ୍ରମାନଙ୍କ ପ୍ରତି ଘୃଣାଭାବ ହେତୁ ବ୍ରାହ୍ମଣମାନେ ଶୂଦ୍ରମାନଙ୍କର ଉପନୟନ ସମ୍ପନ୍ନ କରିବାକୁ ନାସ୍ତି କଲେ ।

(୬) ଉପନୟନରୁ ବଞ୍ଚିତ ହୋଇ, ଶୂଦ୍ରମାନେ ସମାଜର ନିମ୍ନସ୍ଥାନକୁ ଖସିଗଲେ, ବୈଶ୍ୟମାନଙ୍କ ତଳକୁ ଚାଲିଯାଇ ଚତୁର୍ଥବର୍ଣ୍ଣ ଶୂଦ୍ର ହେଲେ ।

୧୯୪୮ ଅକ୍ଟୋବର ମାସରେ ଆମ୍ବେଦକର ପ୍ରକାଶ କଲେ ''ଅସ୍ପୃଶ୍ୟ କେଉଁମାନେ ଓ କିପରି ଅସ୍ପୃଶ୍ୟ ହେଲେ ?''

ତାଙ୍କ ମତରେ ଶୂଦ୍ରମାନଙ୍କ ପରେ ହିନ୍ଦୁ ସଭ୍ୟତା ଆଉ ତିନିଗୋଟି ସାମାଜିକ ଶ୍ରେଣୀ ସୃଷ୍ଟି କଲା । ସେମାନେ ହେଲେ (୧) ଅପରାଧୀ ଜନଜାତି (୨)ଆଦିମ ଅଧିବାସୀ (୩) ଅସ୍ପୃଶ୍ୟ । ସେ ଏହି ପୁସ୍ତକରେ ଅତ୍ୟନ୍ତ ବ୍ୟଙ୍ଗ, ଶାଣିତ ଓ ତିର୍ଯ୍ୟକ ଭାବରେ ସମାଜ ବ୍ୟବସ୍ଥା ଉପରେ ଆକ୍ରମଣ କରିବା ସହିତ କହିଛନ୍ତି, ''ଅସ୍ପୃଶ୍ୟ ମାନଙ୍କର ଉଦ୍ଭବ କେବେ ତାହା ଅତୀତ ଭିତରେ ମୃତ ହୋଇ ପୋତି ହୋଇଯାଇଛି ।'' ସେ କହିଛନ୍ତି ଯେ ବୌଦ୍ଧ ଧର୍ମାବଲମ୍ବୀମାନଙ୍କ ପ୍ରତି ବ୍ରାହ୍ମଣମାନଙ୍କର ଘୃଣାରୁ ଅସ୍ପୃଶ୍ୟମାନଙ୍କର ଉତ୍ପତ୍ତି । ଏହା ହିଁ ଭାରତ ଇତିହାସର ମୋଡ ବଦଳାଇ ଦେଇଛି ।

ଭାଷାଭିତ୍ତିକ ରାଜ୍ୟ ଗଠନ ପୁସ୍ତକରେ ସେ ଭାଷାଭିତ୍ତିରେ ରାଜ୍ୟଗଠନ ହେବାକୁ ଗ୍ରହଣ କରିଛନ୍ତି । ଯଦିଓ ଏହା ଦେଶର ଏକତା ଓ ଅଖଣ୍ଡତାକୁ ବ୍ୟାହତ କରିପାରେ ତଥାପି ଏହାଦ୍ୱାରା ନିର୍ଦ୍ଦିଷ୍ଟ ରାଜନୈତିକ ସୁବିଧା ରହିଛି । ୧୯୫୫ରେ ତାଙ୍କର ଏହି ପୁସ୍ତକ ପ୍ରକାଶିତ ହେଲା । ସେ ହିନ୍ଦୀକୁ ଭାରତର ସରକାରୀ ଭାଷା ଭାବରେ ରଖିବାକୁ ମତ ଦେବା ସହିତ ଯେ ପର୍ଯ୍ୟନ୍ତ ହିନ୍ଦୀ ଉପଯୁକ୍ତ ନହୋଇଛି ଇଂରାଜୀ ସେ ପର୍ଯ୍ୟନ୍ତ ସରକାରୀ ଭାଷା ରୂପେ ବ୍ୟବହୃତ ହେବ ବୋଲି ମତ ଦେଲେ ।

୧୯୫୬ରେ ତାଙ୍କର ପ୍ରସିଦ୍ଧ ପୁସ୍ତକ 'ବୁଦ୍ଧ ଓ ତାଙ୍କର ଧର୍ମ' ପ୍ରକାଶିତ ହେଲା । ସେ କେବଳ ଚିନ୍ତାନାୟକ, ଦାର୍ଶନିକ, ଗବେଷକ, ସମାଜସଂସ୍କାରକ, ସମ୍ବିଧାନ ପ୍ରଣେତା ନଥିଲେ । ସେ ହୋଇଗଲେ ଧାର୍ମିକ ନେତା, ବୋଧିସତ୍ୱ ।

ସେ ବୌଦ୍ଧ ଧର୍ମର ସାରବତ୍ତାକୁ ସମୟର ଆବଶ୍ୟକତା ଅନୁଯାୟୀ ଲିପିବଦ୍ଧ କଲେ । ତାଙ୍କର ଏହି ପୁସ୍ତକରେ ସେ ବୁଦ୍ଧଙ୍କ ଜୀବନୀ ଓ ବାଣୀର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରିଛନ୍ତି ।

ଡକ୍ଟର ଆମ୍ବେଦକର ତାଙ୍କର ଏହି ପୁସ୍ତକ ଗୁଡିକରେ ଏବଂ ଅନ୍ୟାନ୍ୟ ବହୁ ପ୍ରକାଶିତ ଲେଖାରେ ସମାଜରେ ଘଟୁଥିବା ଘଟଣା ସହିତ ରାଷ୍ଟ୍ର ପରିଚାଳନାରେ କିପରି ସାମ୍ୟ ରକ୍ଷା କରାଯାଇପାରିବ, ସେ ସମ୍ପର୍କରେ ନିଜର ନିଜସ୍ୱ ମତ ଦେଇ, ନିଜର ଗବେଷଣା ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି ।

## ୧୨. ଅନ୍ତିମ ଯାତ୍ରା

ଡକ୍ଟର ଆମ୍ବେଦକର ନାଗପୁରଠାରେ ବୌଦ୍ଧଧର୍ମ ଗ୍ରହଣ କରିବା ସହିତ ବହୁଲୋକ ବୌଦ୍ଧ ଧର୍ମ ଗ୍ରହଣ କଲେ । ଧର୍ମ ଇତିହାସରେ ଏହା ଏକ ଉଲ୍ଲେଖଯୋଗ୍ୟ ଘଟଣା ଯେ ଏତେ ସଂଖ୍ୟାରେ ଲୋକ କେବେ ହେଲେ ଧର୍ମାନ୍ତରୀକରଣରେ ଭାଗ ନେଇ ନଥିଲେ ।

୧୯୫୬ ଅକ୍ଟୋବର ୩୦ ତାରିଖ ଦିନ ଶ୍ରୀ ବାଳାସିଂହଙ୍କୁ ଏକ ପତ୍ରରେ ଲେଖିଥିଲେ, ''ନାଗପୁର ଦୀକ୍ଷା ସମାରୋହ ଏକ ମହାନ୍ ଘଟଣା । ଏବଂ ଯେତେବେଳେ ଦୀକ୍ଷା ନେବାପାଇଁ ଦୀକ୍ଷାଭୂମିରେ ଉପସ୍ଥିତ ଥିଲେ, ତାହା ମୋର

ଆଶାତୀତ ଥିଲା । ବୁଦ୍ଧଙ୍କୁ ଅଶେଷ ଧନ୍ୟବାଦ ଯେ ସବୁକିଛି ଠିକ୍ ଭାବରେ ହୋଇଗଲା ।''

ଏଲିଫାଣ୍ଟା କଲେଜର ଅଧକ୍ଷ କଲେଜର ଶତବାର୍ଷିକୀ ପାଳନ ପାଇଁ ଗୋଟିଏ ଲେଖାପଠାଇବାକୁ ଅନୁରୋଧ କଲେ । ସେ ''ଲୋକତନ୍ତ୍ର କ'ଣ ଓ ଭାରତରେ ତା'ର ଭବିଷ୍ୟତ'', ସମ୍ପର୍କରେ ଲେଖି ପଠାଇବାକୁ ତାଙ୍କୁ ଉତ୍ତର ଦେଲେ । ତାଙ୍କର ସ୍ୱାସ୍ଥ୍ୟ ଅବସ୍ଥା ଭଲନଥିବାରୁ ଉତ୍ସବରେ ଯୋଗଦେବା ସମ୍ଭବ ନୁହେ ବୋଲି ଜଣାଇଲେ ।

ଯଦିଓ ବାବା ସାହେବଙ୍କର ଦେହ ଖରାପ ଥିଲା, ତଥାପି କାଠମାଣ୍ଡୁଠାରେ ଅନୁଷ୍ଠିତ ହେବାକୁ ଥିବା ବିଶ୍ୱ ବୌଦ୍ଧ ସମ୍ମିଳନୀରେ ଯୋଗଦେବାକୁ ସେ କାଠମାଣ୍ଡୁ ଗଲେ । ୧୪ ନଭେମ୍ବର ୧୯୫୬ରେ ସେ ପାଟନା ବିମାନ ବନ୍ଦରରୁ କାଠମାଣ୍ଡୁ ଅଭିମୁଖେ ଯାତ୍ରା କଲେ । ୪ର୍ଥ ବିଶ୍ୱ ବୌଦ୍ଧ ସମ୍ମିଳନୀକୁ ନେପାଳର ରାଜା ମହେନ୍ଦ୍ର ଉଦ୍‌ଘାଟନ କଲେ ୧୫ ନଭେମ୍ବର ୧୯୫୬ ମସିହାରେ । ସେ ସେଠାରେ ''ବୁଦ୍ଧ ଓ କାର୍ଲମାର୍କସ'' ସମ୍ପର୍କରେ ଭାଷଣ ଦେଲେ ।

ତାଙ୍କ ଭାଷଣରେ ସେ କହିଲେ, ''ବୁଦ୍ଧ ଓ ମାର୍କସଙ୍କର ଲକ୍ଷ୍ୟ ଏକ । ମାର୍କସ କହିଥିଲେ ବ୍ୟକ୍ତିଗତ ସମ୍ପତ୍ତି ଦୁଃଖର କାରଣ । ବୁଦ୍ଧ ମଧ୍ୟ ଦୁଃଖ ଦୂର କରିବାକୁ ଚାହୁଁଥିଲେ । ବୌଦ୍ଧ ସାହିତ୍ୟରେ ସମ୍ପତ୍ତିକୁ ଦୁଃଖ ଅର୍ଥରେ ବ୍ୟବହାର କରାଯାଇଛି । ବୁଦ୍ଧଙ୍କ ମତରେ ପ୍ରତ୍ୟେକ ବିନାଶଶୀଳ ଏବଂ ସମ୍ପତ୍ତି ପାଇଁ ସଂଘର୍ଷ କୌଣସି କାରଣ ନାହିଁ । ଭିକ୍ଷୁମାନଙ୍କୁ ନିଜର ବ୍ୟକ୍ତିଗତ ସମ୍ପତ୍ତି ରଖିବାକୁ ମନା ।''

ବୌଦ୍ଧ ଧର୍ମ ଓ ମାର୍କସବାଦର ମୂଳ ପାର୍ଥକ୍ୟ ହେଲା ଲକ୍ଷ୍ୟ ହାସଲର ମାର୍ଗନେଇ । କମ୍ୟୁନିଜମ୍ ସମ୍ପତ୍ତିର ବିଲୋପ ପାଇଁ ହିଂସାର ମାର୍ଗକୁ ଗ୍ରହଣ କରେ କିନ୍ତୁ ବୌଦ୍ଧଧର୍ମର ମାର୍ଗ ଅହିଂସା । ମାର୍କସଙ୍କର ମାର୍ଗରୁ ଫଳ ଚଞ୍ଚଳ ମିଳିବାବେଳେ ବୁଦ୍ଧଙ୍କ ମାର୍ଗରେ ସମୟ ସାପେକ୍ଷ ଓ କଠିନ । କିନ୍ତୁ ଏହା ଅତ୍ୟନ୍ତ ବିଶ୍ୱସନୀୟ ମାର୍ଗ । ମାର୍କସଙ୍କର ପଥ ଶକ୍ତି ଉପରେ ଆଧାରିତ ।''

କାଠମାଣ୍ଡୁରୁ ଫେରି ସେ ବନାରସ ଗଲେ ଓ ସେଠାରେ ହିନ୍ଦୁ ବିଶ୍ୱବିଦ୍ୟାଳୟ

ଓ କାଶୀ ବିଦ୍ୟାପୀଠରେ ଜ୍ୱାଳାମୟୀ ଭାଷଣ ଦେଲେ । ୩୦ ନଭେମ୍ବର ୧୯୫୬ରେ ସେ ଫେରିଆସିଲେ ଦିଲ୍ଲୀ । ଦେହ ଖରାପ ଲାଗୁଥିଲା । ତାଙ୍କର ବିଶ୍ୱସ୍ତ ସେବକ ରତ୍ତୁ କୁ ନିଜ ପାଖରେ ରଖିଲେ । ୧ ତାରିଖ ଡିସେମ୍ବର ଦିନ ଦିଲ୍ଲୀର ମଥୁରା ରୋଡ ଠାରେ ପ୍ରଦର୍ଶନୀକୁ ଦେଖିବାକୁ ଯାଇଥିଲେ । କେହି ତାଙ୍କୁ ବୁଦ୍ଧଙ୍କର ମୂର୍ତ୍ତି ବିଭିନ୍ନ ଦେଶରେ ଭିନ୍ନ ଭିନ୍ନ ବୋଲି ପ୍ରଶ୍ନର ଉତ୍ତରରେ ସେ କହିଥିଲେ, "ବୁଦ୍ଧଙ୍କର ମହାନିର୍ବାଣର ୬୦୦ ବର୍ଷ ପର୍ଯ୍ୟନ୍ତ ବୁଦ୍ଧଙ୍କର କୌଣସି ମୂର୍ତ୍ତି ବା ଛବି ନଥିଲା । କେହି ଜଣେ କାଳ୍ପନିକ ମୂର୍ତ୍ତି ନିର୍ମାଣ କରିବାପରେ, ବିଭିନ୍ନ ଦେଶରେ ମୂର୍ତ୍ତି ଭିନ୍ନ ଭିନ୍ନ ହେଲା ; ନିଜ ନିଜ ଦେଶର ପ୍ରଚଳିତ ସିଦ୍ଧାନ୍ତ ଅନୁସାରେ ସେମାନେ ମୂର୍ତ୍ତି ଗଢ଼ିଲେ ।"

ଡିସେମ୍ବର ୨ ତାରିଖ ଦିନ ନିଜର ମାଳୀର ସ୍ୱାସ୍ଥ୍ୟାବସ୍ଥା ବୁଝିବାକୁ ଯାଇ, ତାକୁ ପ୍ରବୋଧନା ସହିତ ମୃତ୍ୟୁକୁ ନ ଡରିବାକୁ ଉପଦେଶ ଦେଇଥିଲେ । ୧୬ ଡିସେମ୍ବରକୁ ତାଙ୍କର ବମ୍ବେ ଯିବାର କାର୍ଯ୍ୟକ୍ରମ ଥାଏ । କିନ୍ତୁ ୬ ଡିସେମ୍ବର ସକାଳୁ ଶ୍ରୀମତୀ ସାରଦା କବୀର (ଶ୍ରୀମତୀ ଆମ୍ବେଦକର) ଯେତେବେଳେ ଆମ୍ବେଦକରଙ୍କ କୋଠରୀରେ ପ୍ରବେଶ କଲେ, ସେତେବେଳକୁ ସବୁ ଶେଷ ହୋଇଯାଇଥିଲା ।

ବାବାସାହେବ ଆଉ ଏହି ଇହଜଗତରେ ନଥିଲେ । ଯେଉଁ ମହାପୁରୁଷ ନିରାଶ୍ରୟ ଲୋକମାନଙ୍କର ଆଶ୍ରୟ ଥିଲେ, ଦଳିତ ବର୍ଗର ଥିଲେ ତ୍ରାଣକର୍ତ୍ତା, କୋଟି କୋଟି ଲୋକଙ୍କର ଆଶାର ଆଲୋକ, ତାହା ସ୍ତିମିତ ହୋଇଗଲା । ଭାରତ ଆକାଶରୁ ଖସି ପଡ଼ିଲା ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ । ପଣ୍ଡିତ ନେହେରୁ, ଗୋବିନ୍ଦ ବଲ୍ଲଭ ପନ୍ଥ, ଜଗଜୀବନ ରାମ ଏବଂ ଅନ୍ୟମାନେ ତତ୍‌କ୍ଷଣାତ୍ ୨୬, ଆଲିପୁର ରୋଡ୍ ବାସଭବନରେଆସି ପହଞ୍ଚି, ତାଙ୍କର ପାର୍ଥିବ ଶରୀରକୁ ବମ୍ବେ ପଠାଇବାର ବ୍ୟବସ୍ଥା କଲେ ।

ସାନ୍ତାକ୍ରୁଜ ବିମାନ ବନ୍ଦରରେ ସକାଳ ୩ଟା ବେଳେ ତାଙ୍କର ମରଶରୀର ପହଞ୍ଚିବା ବେଳକୁ ହଜାର ହଜାର ଜନତା ସେଠାରେ ଉପସ୍ଥିତ ଥିଲେ । ତାଙ୍କର ବମ୍ବେଠାରେ ଥିବା ବାସଭବନ 'ରାଜଗୃହ'କୁ ନିଆଯାଇ ସାଧାରଣ ଲୋକମାନଙ୍କର ଦର୍ଶନ ପାଇଁ ରଖାଗଲା । ତାଙ୍କର ଶବାଧାରରେ ପ୍ରାୟ ୧ ନିୟୁତ ଲୋକ ଯୋଗ

ଦେଇଥିଲେ । ବମ୍ବେର ଦାଦାର ହିନ୍ଦୁ କ୍ରିମୋଟୋରିୟମ୍‌ରେ ବୌଦ୍ଧ ପୁରୋହିତ ମାନଙ୍କ ଦ୍ୱାରା ଶେଷକ୍ରିୟା ସମ୍ପନ୍ନ କରାଗଲା ।

କୋଟି କୋଟି ଲୋକଙ୍କୁ ଜାଗ୍ରତ କରିଥିବା ବାବାସାହେବଙ୍କର ତିରୋଧାନରେ ଦଳିତ ଇତିହାସର ପୃଷ୍ଠା ବନ୍ଦ ହୋଇଗଲା ।

## ୧୩. ଶ୍ରଦ୍ଧାଞ୍ଜଳି

ବାବାସାହେବଙ୍କ ପ୍ରତି ଶ୍ରଦ୍ଧାସୁମନ ବିଛୁ ହୋଇପଡିଲା । ଲୋକ ସଭା ଦିବଂଗତ ନେତାଙ୍କ ପ୍ରତି, ଡିସେମ୍ବର ୧୯୫୬ ଦିନ ଶ୍ରଦ୍ଧାଞ୍ଜଳି ଅର୍ପିତ କରିବା ସ୍ଥଗିତ କରାଗଲା । ପଣ୍ଡିତ ନେହେରୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରି କହିଲେ, ''କୁହାଯାଏ ଯେ ଡକ୍ଟର ଆମ୍ବେଦକର ଭାରତୀୟ ସମ୍ବିଧାନର ନିର୍ମାତା । ଏହା ନିଃସନ୍ଦେହ ଭାବରେ କୁହାଯାଇପାରେ ଯେ ସମ୍ବିଧାନ ପ୍ରସ୍ତୁତ କରିବା ପାଇଁ ସେ ଯେତେ ପରିଶ୍ରମ କରିଛନ୍ତି ଏବଂ ସେଥିପାଇଁ ଯେଉଁ ଭୂମିକା ସେ ପାଳନ କରିଛନ୍ତି, ସେପରି କେହି କରିନାହାନ୍ତି । ସେଥିପାଇଁ ସେ ସଦାସର୍ବଦା ସ୍ମରଣରେ ରହିବେ ।''

''ହିନ୍ଦୁ ଆଇନ୍‌ରେ ସଂଶୋଧନ ଏକ ଐତିହାସିକ ଓ ସ୍ମରଣୀୟ ଢଙ୍ଗରେ କରିବା ହୁଏତ ହୋଇପାରିଲା ନାହିଁ ଯେପରି ଡକ୍ଟର ଆମ୍ବେଦକର ହିନ୍ଦୁ ଆଇନକୁ ପ୍ରସ୍ତୁତ କରିଥିଲେ, ତଥାପି ମୁଁ ଖୁସି ଯେ ଡକ୍ଟର ଆମ୍ବେଦକର ନିଜ ଜୀବନରେ ହିନ୍ଦୁ ଆଇନ୍‌ରେ କିଛି ସଂଶୋଧନ ଦେଖିପାରିଲେ । ମୋ ମତରେ ଡକ୍ଟର ଆମ୍ବେଦକରଙ୍କୁ ଏଥିପାଇଁ ସବୁଠାରୁ ବେଶି ମନେ ପକାଇବା କାରଣ ସେ ହିନ୍ଦୁ ସମାଜର ସମସ୍ତ ଅତ୍ୟାଚାରୀ ଲକ୍ଷଣର ବିଦ୍ରୋହର ଚିହ୍ନ ଥିଲେ । ଯେଉଁ କଥା ବିରୁଦ୍ଧରେ ସେ ବିଦ୍ରୋହ କରିଥିଲେ, ସମସ୍ତେ ତାହା ବିରୋଧରେ ବିଦ୍ରୋହ କରିବା ଉଚିତ୍ ।''

କମ୍ୟୁନିଷ୍ଟ ପାର୍ଟି ତରଫରୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରି ଶ୍ରମତୀ ରେଣୁ ଚକ୍ରବର୍ତ୍ତୀ କହିଲେ, ''ଏହା ନିଃସନ୍ଦେହ ଯେ ତାଙ୍କ ସହିତ ଆମର ମତଭେଦ ଥିଲା । କିନ୍ତୁ ଆମେ ଆଦୌ ଭୁଲିପାରିବୁ ନାହିଁ ଯେ ସେ ଯେପରି ଭାବରେ ଆମର ବିସଙ୍ଗତ କାର୍ଯ୍ୟପ୍ରଣାଳୀ ଦ୍ୱାରା ଅତ୍ୟାଚାରିତ ଓ ଦୁଃର୍ବ୍ୟବହାର ପାଉଥିବା ବହୁ ସଂଖ୍ୟକ ଲୋକମାନଙ୍କର ଉନ୍ନତି କହେ ବିଦ୍ରୋହ କରି ଆମ୍ଭର ଅନ୍ତଃକରଣକୁ ଜାଗ୍ରତ

କଲେ । ମୋର ନିଜ ବିଚାର ଅନୁସାରେ ହିନ୍ଦୁ କୋର୍ଡବିଲ୍ ପାଇଁ ଯେଉଁ ଆଇନ୍ ଆମ୍ବେଦକର ପ୍ରସ୍ତୁତ କଲେ, ତାହା ବହୁଭାଗରେ ବିଭକ୍ତ ହୋଇ ଗୃହୀତ ହୋଇଥିବା ହିନ୍ଦୁ କୋର୍ଡବିଲ୍ ଠାରୁ ଅଧିକ ପ୍ରାଞ୍ଜଳ ଓ ସ୍ପଷ୍ଟ ଥିଲା । ଆମେ ଡକ୍ଟର ଆମ୍ବେଦକରଙ୍କର ବିଚକ୍ଷଣ ବୁଦ୍ଧିମତ୍ତା ଯାହା ସାମାଜିକ ଅସମାନତା ଏବଂ ଅନ୍ୟାନ୍ୟ ନୀଚତା ବିରୁଦ୍ଧରେ ତାଙ୍କର ସଂଗ୍ରାମ ପାଇଁ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ ।''

ସମାଜବାଦୀ ନେତା ଶ୍ରୀ ଅଶୋକ ମେହେଟ୍ଟା କହିଲେ, ''ମୋତେ କେତେଥର ଆମ୍ବେଦକରଙ୍କ ସହିତ କାର୍ଯ୍ୟ କରିବାର ସୁଯୋଗ ମିଳିଛି । ମହାରାଷ୍ଟ୍ରରେ ଲୋକମାନେ ତାଙ୍କୁ ଜଣେ ମାର୍ଗଦର୍ଶକଭାବେ, ଜଣେ ଅର୍ଥନୀତିଜ୍ଞ ରୂପେ, ଜଣେ ଶ୍ରମିକ ନେତା ଓ ସର୍ବୋପରି ଜଣେ ରାଜନୈତିକ ନେତା ଭାବେ ସଦାସର୍ବଦା ମନେ ପକାଇବୁ । ଯେଉଁ ମହାନ୍ କାର୍ଯ୍ୟ ସେ ସରକାରରେ ଓ ସଂସଦ ଗୃହରେ ରହି କଲେ, ତା'ଠାରୁ ଅଧିକ କାର୍ଯ୍ୟ ମୋ ପରି ଦଳିତ ବର୍ଗ ଲୋକମାନଙ୍କର ଜାଗୃତି ପାଇଁ କଲେ । ତାଙ୍କରି କୃପା ଫଳରେ ମୁଁ ଯେଉଁ ବର୍ଗରୁ ଆସିଛି, ସେହି ବର୍ଗର ଲୋକମାନଙ୍କୁ ସମାଜରେ ସ୍ଥାନ ମିଳିଲା ଏବଂ ସେମାନଙ୍କ ମଧ୍ୟରେ ଆତ୍ମବିଶ୍ୱାସର ଭାବନା ଜନ୍ମ ନେଲା । ମୋର ବିଶ୍ୱାସ ଯେ ଯଦି ଆମ୍ବେଦକର ଜନ୍ମ ହୋଇନଥାନ୍ତେ, ତେବେ ମହାରାଷ୍ଟ୍ର ଯାହା ଆଜି ହୋଇଛି ତାହା ହୋଇପାରିନଥାନ୍ତା ।''

ଆଙ୍ଗ୍ଲୋଇଣ୍ଡିଆନ୍ ନେତା ଶ୍ରୀ ଫ୍ରାଙ୍କ୍ ଆନ୍ଥୋନୀ ନିଜର ଶ୍ରଦ୍ଧାଞ୍ଜଳି ଅଭିବ୍ୟକ୍ତିରେ କହିଲେ, ''ମୋତେ କେତେବର୍ଷ ଧରି ଆମ୍ବେଦକରଙ୍କୁ ଜାଣିବାର ସୌଭାଗ୍ୟ ମିଳିଛି । ଏବଂ ମୁଁ ଅନୁଭବ କରୁଛି ଯେ ସ୍ୱଳ୍ପ କେତୋଟି ମିନିଟ୍‌ରେ ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରାଯାଇପାରିବ ନାହିଁ । ସେ ଥିଲେ ବହୁଦର୍ଶୀ ମହାମାନବ । ତାଙ୍କର ବ୍ୟକ୍ତିତ୍ୱ ଥିଲା ତାର୍କିକ । ମୋ ମତରେ ଯେଉଁ ମହାପୁରୁଷ ଅଜେୟ ଯୋଦ୍ଧା ରୂପେ ସଂଗ୍ରାମ କରନ୍ତି, ସେମାନେ ତାର୍କିକ (ତର୍କସମ୍ପନ୍ନ) ଏବଂ ବିବାଦଯୁକ୍ତ ହୁଅନ୍ତି । ସେ ନିଜର ଅଜେୟ ଶକ୍ତି ହେତୁ ସେହି ଅସଂଗତିମାନଙ୍କୁ ନିଜ ନିୟନ୍ତ୍ରଣରେ ରଖିପାରିଲେ ଏବଂ ଯାହା ସବୁ କରିଥିଲେ । ଯଦି ଅନ୍ୟ କେହି ଦୁର୍ବଳ ବ୍ୟକ୍ତି ହୋଇଥା'ନ୍ତା, ତେବେ ସେ ଏହା ତଳେ ଦଳିତକଟି ଶେଷ

ହୋଇଯାଇଥା'ନ୍ତା । ଡକ୍ଟର ଆମ୍ବେଦକର ନିଃସନ୍ଦେହ ଭାବରେ ଅତ୍ୟନ୍ତ ଗରିବ ଅବସ୍ଥାରୁ ଉଠିଲେ କିନ୍ତୁ ତାଙ୍କର ନାମ ଇତିହାସର ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । କେବଳ ଦଳିତ ଶ୍ରେଣୀପାଇଁ ନୁହେ ବରଂ ସମଗ୍ର ଭାରତ ଏହି ମହାନ୍ ସୁପୁତ୍ର ପାଇଁ ଗର୍ବ ଅନୁଭବ କରିବ ।''

ଶ୍ରୀ ଏନ୍.ଭି. ଗାଡଗିଲ କହିଲେ, ''ମୋତେ ଦୀର୍ଘ ୩୫ ବର୍ଷ ଧରି ଡକ୍ଟର ଆମ୍ବେଦକରଙ୍କର ବନ୍ଧୁ ହେବାର ସୌଭାଗ୍ୟ ମିଳିଛି । ସେ ଆମପରି ମହାରାଷ୍ଟ୍ରର ଲୋକମାନଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ । ସେ ଦଳିତ ବର୍ଗ ମଧ୍ୟରେ ଆତ୍ମସମ୍ମାନ ଭାବନାର ଜନ୍ମ । ତାଙ୍କର ବକ୍ତବ୍ୟ ଯଦିଓ ଥିଲା ଅତ୍ୟନ୍ତ କଠିନ କିନ୍ତୁ ସେ ମନରେ ଅତ୍ୟନ୍ତ ନିର୍ମଳ ଓ ମାଧୁର୍ଯ୍ୟପୂର୍ଣ୍ଣ ଥିଲେ ।''

ବୀର ସାବରକର, ''ଭାରତ ଡକ୍ଟର ଆମ୍ବେଦକରଙ୍କ ମୃତ୍ୟୁରେ ଜଣେ ପ୍ରକୃତ ମହାନ୍ ବ୍ୟକ୍ତିଙ୍କୁ ହରାଇଲା,'' ବୋଲି କହିବା ବେଳେ ବମ୍ବେ ହାଇକୋର୍ଟର କାର୍ଯ୍ୟକାରୀ ମୁଖ୍ୟ ବିଚାରପତି କୋୟାଜୀ, ଡଃ ଆମ୍ବେଦକର ଏକ ଉଦ୍ଦେଶ୍ୟପୂର୍ଣ୍ଣ ଜୀବନ ବିତାଇବା ସହିତ ତାଙ୍କ ଜୀବନର ଉଦ୍ଦେଶ୍ୟ ଦଳିତ ବର୍ଗର ଉତ୍ଥାନକୁ ସମ୍ପୂର୍ଣ୍ଣ ଭାବେ ପାଳନ କରିଗଲେ, ବୋଲି ମତ ଦେଲେ । ଡକ୍ଟର ରାଜେନ୍ଦ୍ର ପ୍ରସାଦ ଭାରତର ତତ୍କାଳୀନ ରାଷ୍ଟ୍ରପତି କହିଥିଲେ ଯେ ଆମ୍ବେଦକର ଆମ ସମ୍ବିଧାନର ପ୍ରଣେତା ଏବଂ ବିଭିନ୍ନ ଦାୟିତ୍ୱରେ ରହି ତାଙ୍କର ସେବା ବିଶେଷ କରି ଦଳିତ ଶ୍ରେଣୀର ଉନ୍ନତି ପାଇଁ ଅବର୍ଣ୍ଣନୀୟ ।

ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ କହିଥିଲେ ଯେ ଆମ୍ବେଦକରଙ୍କର କ୍ରୋଧର ପରିପ୍ରକାଶ ତାଙ୍କର ବୌଦ୍ଧଧର୍ମ ଗ୍ରହଣରେ ପ୍ରକାଶିତ ହୋଇଥିଲା । ଦୁର୍ଭାଗ୍ୟବଶତଃ ଏହା ବୌଦ୍ଧଧର୍ମର କରୁଣା ଓ ନ୍ୟାୟ ପରାୟଣତା ପରିବର୍ତ୍ତେ ହିନ୍ଦୁଧର୍ମ ବିରୋଧୀ ଥିଲା । ସେ ଆମ୍ବେଦକରଙ୍କୁ ଜଣେ ସ୍ପଷ୍ଟବାଦୀ, ନ୍ୟାୟ ସମ୍ପନ୍ନ, ଦାମ୍ଭିକ ହୃଦୟ, ପ୍ରଗାଢ଼ ଜ୍ଞାନ ଏବଂ ବନ୍ଧୁବତ୍ସଳ ବ୍ୟକ୍ତିଭାବେ ବର୍ଣ୍ଣନା କରି କହିଲେ ଯେ ଏପରି ବ୍ୟକ୍ତିମାନେ ସେମାନଙ୍କ ଜୀବନର କାର୍ଯ୍ୟ ସମ୍ପନ୍ନ କରି ହିଁ ଶାନ୍ତି ପାଇଥାନ୍ତି ।

ବିଭିନ୍ନ ଖବରକାଗଜମାନଙ୍କରେ ତାଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରାଯାଇଥିଲା । ଦି ଟାଇମ୍ସ ଅଫ ଇଣ୍ଡିଆ ମତ ଦେଇ ଲେଖିଥିଲେ ସେ ଥିଲେ

ଦକ୍ଷ, ଶକ୍ତିଶାଳୀ ଏବଂ ବହୁଶାସ୍ତ୍ର କୁଶଳ ବ୍ୟକ୍ତି ଯେ କି ବିଭିନ୍ନ ପରିସ୍ଥିତିରେ ହୁଏତ ନିଜଦେଶ ଓ ବର୍ଗ ପାଇଁ ଅନେକ ବେଶି ସେବା କରିପାରିଥାନ୍ତେ ।

ଦି ହିନ୍ଦୁସ୍ଥାନ ଟାଇମ୍‌ସ ଅତ୍ୟନ୍ତ ବିଚାରବନ୍ତ ଭାବରେ ମତ ଦେଇଥିଲେ, "ଅବଶିଷ୍ଟ ଯାହା ରହିଯିବ, ତାହା ହେଉଛି ଏ ଦେଶପାଇଁ ତାଙ୍କର ମହାନ୍ ସେବା ଏବଂ ତାଙ୍କର ସମସାମୟିକ ମାନଙ୍କ ଉପରେ ଭାବନାର ଚିହ୍ନ ସେ ଛାଡିଗଲେ ତାହା ପର୍ଯ୍ୟାପ୍ତ, ସ୍ପଷ୍ଟ ବ୍ୟକ୍ତିତ୍ୱର ପରିପ୍ରକାଶ ।"

କଲିକତାରୁ ପ୍ରକାଶ ପାଉଥିବା ଦି ଷ୍ଟେଟସ୍‌ମ୍ୟାନ ବିଭିନ୍ନ କ୍ଷେତ୍ରରେ ବିଶେଷ କରି ଆଇନ୍, ଅର୍ଥନୀତି, ସମାଜଶାସ୍ତ୍ର, ଶ୍ରମ ଓ ରାଜନୀତିରେ ତାଙ୍କର ଅଗାଧ ଜ୍ଞାନ ତାଙ୍କୁ ବିଶ୍ୱ ସାହିତ୍ୟରେ ମହାନ୍ ଯୋଗଦାନକାରୀ ରୂପେ ଚିରଦିନ ଉଲ୍ଲେଖ ରଖିବ ବୋଲି ଲେଖିଥିଲେ ।

ଦି ନିଉୟର୍କ ଟାଇମ୍‌ସ ତାଙ୍କୁ ଅସ୍ପୃଶ୍ୟମାନଙ୍କର ରକ୍ଷକ ଭାବେ ଚିତ୍ରିତ କରିବା ସହିତ ଭାରତୀୟ ଆଇନ୍ ଗଠନରେ ପ୍ରମୁଖସ୍ଥାନ ଛାଡିଗଲେ ବୋଲି କହିଲେ । ଦି ଟାଇମ୍‌ସ, ଲଣ୍ଡନ ଉଲ୍ଲେଖ କରିଥିଲେ ଯେ ବ୍ରିଟିଶ ଶାସନର ଶେଷ ପର୍ଯ୍ୟାୟରେ ଭାରତର ସାମାଜିକ ଓ ଆର୍ଥିକ ସ୍ଥିତିର ଉଦ୍ଭବ ଓ ବିକାଶରେ ଆମ୍ବେଦକରଙ୍କ ଭୂମିକା ଉଲ୍ଲେଖନୀୟ ହୋଇରହିବ ।

ବର୍ମାର ପ୍ରଧାନମନ୍ତ୍ରୀ ୟୁନୁ ତାଙ୍କର ଶ୍ରଦ୍ଧାଞ୍ଜଳି ଆମ୍ବେଦକରଙ୍କ ପ୍ରତି ଅର୍ପଣ କରି କହିଥିଲେ ଯେ ଏଥିରେ କୌଣସି ସନ୍ଦେହ ନାହିଁ ଯେ ସେ ଉଚ୍ଚ ପ୍ରତିଷ୍ଠିତ ବ୍ୟକ୍ତି ବିଶେଷ ଭାବେ ମହାନ୍ ଦେଶ ଭାରତ ଇତିହାସର ଗଠନରେ ନିଜର ଭୂମିକା ସମ୍ପନ୍ନ କରିଛନ୍ତି । ଯେତେବେଳେ ପରିବର୍ତ୍ତିତ ଧାରା ଓ ଅବସ୍ଥା ଜାତୀୟ ଜୀବନ ଓ ସାମାଜିକ ଅବସ୍ଥା ଉପରେ ଏକ ବିଶେଷ ଛାପ ପକାଉଥିଲା । ସେ ଏହି ସାମାଜିକ ପରିବର୍ତ୍ତନକୁ ତ୍ୱରାନ୍ୱିତ କଲେ । ଯେଉଁ ପରିବର୍ତ୍ତନ ଲକ୍ଷ ଲକ୍ଷ ଲୋକଙ୍କୁ ଭବିଷ୍ୟତର ଏକ ଉନ୍ନତ ସୁଖମୟ ଜୀବନ ଯାପନ ପାଇଁ ସମ୍ଭାବନା ଆଣିଦେଲା ।

ଚିତାଗ୍ନି ନିକଟରେ ଶୋକାକୁଳ ଜନତାଙ୍କୁ ନିଜ ଅନ୍ତରର ବାଣୀ ଶୁଣାଇ ଭିକ୍ଷୁ ଆନନ୍ଦ କୌଶଲ୍ୟାୟନ କହିଥିଲେ, "ଡକ୍ଟର ଆମ୍ବେଦକର ଜଣେ ମହାନ୍ ନେତା ।

ସେ ଦେଶର ସେବା କରି ନିର୍ବାଣ ପ୍ରାପ୍ତ ହେଲେ । ସିଂହଳ ଓ ମାଳୟର ବୌଦ୍ଧ ଭିକ୍ଷୁ ମଧ୍ୟ ନିଜର ଶୋକ ସନ୍ଦେଶ ସେଠାରେ ବ୍ୟକ୍ତ କରିଥିଲେ । ଆଚାର୍ଯ୍ୟ ପି.କେ. ଆତ୍ରେ ଗୁରୁଗମ୍ଭୀର କଣ୍ଠରେ କହିଥିଲେ, "ଡକ୍ଟର ଆମ୍ବେଦକର ଦଳିତ ବର୍ଗର ଅଧିକାର ପାଇଁ ନିର୍ଯାତିତ ହୋଇଥିଲେ ଓ ସଂଗ୍ରାମ ଚଳାଇ ରଖିଥିଲେ । ସେ ଅନ୍ୟାୟ, ନିର୍ଯ୍ୟାତନା ଓ ଅସମାନତା ବିରୁଦ୍ଧରେ ସଂଗ୍ରାମ କରିଥିଲେ । ହିନ୍ଦୁ ଧର୍ମ ବିରୁଦ୍ଧରେ ବିପ୍ଳବ ନକରି ସେ ଚେଷ୍ଟା କରିଥିଲେ ଏହାର ସଂସ୍କାର କରିବାକୁ ।"

ତାଙ୍କର ଜୀବନ ଓ ସଂଗ୍ରାମ ଥିଲା ମାନବିକ ସୁରକ୍ଷାର ରକ୍ଷା କରିବା । ସମଗ୍ର ଦେଶରେ ତାଙ୍କର ମୃତ୍ୟୁରେ ଶୋକ ପାଳନ କରାଯାଇ ଶୋକସଭାମାନ ଅନୁଷ୍ଠିତ ହେଲା । ଜୀବନର ବହୁ ଘାତ ପ୍ରତିଘାତ ମଧ୍ୟରେ, ଦୁଃଖ ଦୈନ୍ୟ ଓଯନ୍ତ୍ରଣା ମଧ୍ୟରେ, ଦାରିଦ୍ର୍ୟ ଓ ଅସ୍ପୃଶ୍ୟତାର ଘୃଣ୍ୟ ବ୍ୟବହାର ମଧ୍ୟରେ, ଲାଞ୍ଛନା ଓ ନିର୍ଯ୍ୟାତନାର କଠୋରତା ମଧ୍ୟରେ ସେ ନିଜର ନିଷ୍ଠା, ସାଧନା, ଏକାଗ୍ରତା ଏକନିଷ୍ଠତା ଓ ସଂଗ୍ରାମ ଦ୍ୱାରା ବିଶ୍ୱର ସର୍ବୋଚ୍ଚ ବିଶ୍ୱବିଦ୍ୟାଳୟର ଡିଗ୍ରୀ ହାସଲ କରିଥିଲେ । ତାଙ୍କର ପ୍ରତ୍ୟେକ ପାଦ ଏ ଭୂଇଁ ଉପରେ ଶକ୍ତ ଭାବରେ ପତିତ ହୋଇ ବିଭିନ୍ନ କ୍ଷେତ୍ରରେ ନିଜର ସ୍ୱକୀୟ ପ୍ରତିଭାର ସ୍ପଷ୍ଟ ଚିହ୍ନ ରଖିଗଲା । ସେ ନାମ, ଯଶ, ପ୍ରତିଷ୍ଠା ଓ ଦେଶପ୍ରେମର ଜ୍ୱଳନ୍ତ ବହ୍ନିମାନ୍ ଶିଖା ପାଲଟିଗଲେ । ମାନବଜାତିର ଇତିହାସରେ ତାଙ୍କ ସମାନ ବ୍ୟକ୍ତିତ୍ୱ ବିରଳ ଓ ଅଦ୍ୱିତୀୟ । ଧୂଳୀରୁ ଜନ୍ମଲାଭ କରି ସେ ସମଗ୍ର ଆକାଶକୁ ବ୍ୟାପ୍ତ ହେଲେ । ତାଙ୍କର ବ୍ୟାପ୍ତି ଓ ବିସ୍ତୃତିର ଆକଳନ କଳ୍ପନା ସାପେକ୍ଷ ।

ପ୍ରତ୍ୟେକ ମାନବ ଆତ୍ମା ସେହି ଅବ୍ୟକ୍ତ ବ୍ରହ୍ମ । ଲକ୍ଷ୍ୟ ହେଉଛି ସେହି ଅବ୍ୟକ୍ତ ବ୍ରହ୍ମର ସମ୍ପୂର୍ଣ୍ଣ ପରିପ୍ରକାଶ । ବାବାସାହେବ ଆମ୍ବେଦକର ନିଜର ଧୈର୍ଯ୍ୟଶୀଳ ପରିଶ୍ରମ, ଏକନିଷ୍ଠ ସାଧନା, ଅତୁଟ ସାହସ ଏବଂ ନିଃସ୍ୱାର୍ଥ ତ୍ୟାଗ ଦ୍ୱାରା ଅସମ୍ଭବକୁ ସମ୍ଭବ କରି ମହାମାନବ ସ୍ତରକୁ ଉନ୍ନୀତ ହୋଇଗଲେ ।

ଆମ୍ବେଦକର କହିଥିଲେ, "If I fail to do away the abominable thraldom and inhuman justice under which the class, in to which I was born, has been groaning, I will put an end to my life with a bullet."

ଭାରତରତ୍ନ ବାବାସାହେବ ଆମ୍ବେଦକର ତାଙ୍କର ଜୀବଦ୍ଦଶାରେ ଏହା ପ୍ରମାଣିତ କରିଦେଇଗଲେ ।

## ୧୪. ଅସମାପ୍ତ ବିପ୍ଳବ

ଆମ୍ବେଦକରଙ୍କର ଜୀବନ ଓ ଚିନ୍ତାରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ସେ ଭାରତରେ ସମ୍ପୂର୍ଣ୍ଣ ବିପ୍ଳବ ଚାହୁଁଥିଲେ । ଏହି ବିପ୍ଳବ ଗାନ୍ଧି, ଜୟପ୍ରକାଶ ଓ ନେହେରୁଙ୍କ ବିପ୍ଳବଠାରୁ ଭିନ୍ନ । ଭାରତର ବାସ୍ତବତାକୁ ଲକ୍ଷ୍ୟରଖି ତାଙ୍କର ବିପ୍ଳବ ଉଦ୍ଦିଷ୍ଟ । ତାଙ୍କର ଲକ୍ଷ୍ୟ ଭାରତର ଆଧୁନିକ ସମାଜ ବ୍ୟବସ୍ଥା ସମାନତା, ସ୍ୱାଧୀନତା ଓ ଭ୍ରାତୃତ୍ୱ ଉପରେ ଗଠିତ ହେଉ । ସେଥିପାଇଁ ସେ ଗାନ୍ଧୀଜୀଙ୍କ ପରି ଧର୍ମ ଉପରେ ଗୁରୁତ୍ୱ ଦେଇଥିଲେ କାରଣ ଧର୍ମ ମନୁଷ୍ୟର ଅବିଚ୍ଛେଦ୍ୟ ଅଙ୍ଗ ବୋଲି ତାଙ୍କର ମତ । ଭାରତ ଇତିହାସରେ ବୌଦ୍ଧ ଧର୍ମ ବିପ୍ଳବ ତାଙ୍କର ଉପର ବର୍ଣ୍ଣିତ ବିଚାରକୁ ପୁଷ୍ଟ କରୁଥିଲା । ଏହି କାରଣରୁ ଯେତେବେଳେ ସେ ନିଜେ ହିନ୍ଦୁ ଧର୍ମ ଛାଡି ବୌଦ୍ଧ ଧର୍ମ ଗ୍ରହଣ କଲେ ଓ ତାଙ୍କର ଅନୁଗାମୀମାନଙ୍କୁ ବୌଦ୍ଧ ଧର୍ମରେ ଦୀକ୍ଷିତ କରାଇଲେ, ତାହା ଭାରତରେ ଦ୍ୱିତୀୟ ବିପ୍ଳବ ବୋଲି କୁହାଯାଇପାରେ । ଆମ୍ବେଦକରଙ୍କର ତାର୍କିକ ମନ ହିଂସା ଆଚରଣ ସୃଷ୍ଟି କରୁଥିବା ହେତୁ, କ୍ରମାଗତ ହିଂସା ଦ୍ୱାରା ସଫଳତା ପାଇବା ଅପେକ୍ଷା ଗଣତାନ୍ତ୍ରିକ ପଦ୍ଧତିରେ ଅର୍ଥାତ୍ ପ୍ରବର୍ତ୍ତନା (Persuation) ମାଧମରେ ମନ ଓ ହୃଦୟ ପରିବର୍ତ୍ତନ ଏବଂ ଧର୍ମାନ୍ତରୀକରଣ ଏକ ବାସ୍ତବିକ ପଦକ୍ଷେପ ଯାହା ସାମାଜିକ ବିପ୍ଳବ ଆଣିପାରେ ବୋଲି ବିଚାର କରୁଥିଲା । ମଣିଷ ମନରେ ଯଦି ପରିବର୍ତ୍ତନ ବା ସଂସ୍କାର ହୁଏ ତେବେ ତାହା ଗଣତାନ୍ତ୍ରିକ ବ୍ୟବସ୍ଥାକୁ ସୁଦୃଢ଼ କରେ ।

ଗଣତାନ୍ତ୍ରିକ ପଦ୍ଧତିର ଶାସନ ବ୍ୟବସ୍ଥାର ସଫଳତା ସାମାଜିକ ନ୍ୟାୟ ଉପରେ ପ୍ରତିଷ୍ଠିତ । ଗଣତନ୍ତ୍ର ଓ ସାମାଜିକ ନ୍ୟାୟ ପାଇଁ ଶିକ୍ଷା ଉପରେ ଆମ୍ବେଦକର ଗୁରୁତ୍ୱ ଦେଇ ଏହା ସମସ୍ତଙ୍କ ନିକଟକୁ ପହଞ୍ଚିବାର ଆବଶ୍ୟକତା ଉପରେ ଜୋର ଦେଇଥିଲେ । ସେ ବୌଦ୍ଧଧର୍ମ ଗ୍ରହଣ କରି ମଧ ବୁଦ୍ଧଙ୍କର ଉପଦେଶ "ଦୁଃଖରୁ ମୁକ୍ତି ପାଇଲେ ନିର୍ବାଣ" ତତ୍ତ୍ୱକୁ ଗ୍ରହଣ କରିପାରିନଥିଲେ । ସେ ଦେଶର ସାମାଜିକ ଓ ଅର୍ଥନୀତିକ ବ୍ୟବସ୍ଥାର ପୁନର୍ଗଠନ ଉପରେ ଗୁରୁତ୍ୱ

ଦେଇ ନିଷ୍ପେଷିତ ଓ ନିର୍ଯ୍ୟାତିତ କୋଟି କୋଟି ଦଳିତ ବର୍ଗର ଆଶା ଆକାଂକ୍ଷାକୁ ପୂରଣ କରିବାପାଇଁ ଭାରତୀୟ ସମ୍ବିଧାନରେ ସେଥିପାଇଁ ବ୍ୟବସ୍ଥା କଲେ । ଏପରିକି ସମ୍ବିଧାନରେ ମୌଳିକ ଅଧିକାର (Fundamental rights) ରଖି ଖଣ୍ଡ ବିଖଣ୍ଡିତ ଭାରତକୁ ସୁରକ୍ଷା ପ୍ରଦାନ କଲେ । ଏହା କେତେ ମାତ୍ରାରେ ସଫଳ ହୋଇଛି, ତାହାକୁ ନିରୀକ୍ଷଣ କଲେ ଦେଖାଯାଏ ଯେ କେବଳ କ୍ଷମତାଧାରୀ ମାନେ ଏହାକୁ ଯଦିଓ କ୍ରମାଗତ ଭାବରେ ଉପଭୋଗ କରି ଚାଲିଛନ୍ତି, ତଥାପି ଦେଶକୁ ସାମ୍ବିଧାନିକ ବ୍ୟବସ୍ଥା ସୁରକ୍ଷା ପ୍ରଦାନ କରୁଛି ।

ଆମ୍ବେଦକର ତାଙ୍କର ସଂଗ୍ରାମର ଯାତ୍ରା ଆରମ୍ଭ କରିଥିଲେ ଜାତି ବ୍ୟବସ୍ଥାରୁ । ଜାତି ପ୍ରଥା ହିନ୍ଦୁ ଧର୍ମର ଥିଲା ସବୁଠାରୁ ବଡ ଦୁର୍ବଳତା । ଜାତି ବ୍ୟବସ୍ଥା କେବଳ ଶାରୀରିକ ନୁହେ, ଏହା ଏକ ମାନସିକ ଅବସ୍ଥା । ସେ ଏହି ଜାତି ବ୍ୟବସ୍ଥା ଉପରେ କରିଥିଲେ କଠୋର ଆଘାତ । ହିନ୍ଦୁ ସମାଜ ବ୍ୟବସ୍ଥାରେ ଆମୂଳ ପରିବର୍ତ୍ତନ ଓ ହିନ୍ଦୁମାନଙ୍କର ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ହିଁ ନୈତିକତା ଓ ଚେତନାରେ ବୃଦ୍ଧି କରିବ ବୋଲି ତାଙ୍କର ଦୃଢ଼ମତ ଥିଲା । ଏପରିକି ହିନ୍ଦୁ କୋର୍ଡ ବିଲ୍ ପାର୍ଲାମେଣ୍ଟରେ ଆଣିବା ବେଳେ ସେ ମହିଳାମାନଙ୍କର ଅଧିକାରକୁ ସାବ୍ୟସ୍ତ କରିବାକୁ ଚାହୁଁଥିଲେ । ସାମ୍ବିଧାନିକ ଓ ଆଇନଗତ ସୁରକ୍ଷା ପ୍ରଦାନ କରାଯାଇଥିଲେ ମଧ ଅଦ୍ୟାବିଧି ବହୁ ଅନୁସୂଚିତ ଜାତି ଓ ଜନଜାତିର ଲୋକମାନେ ଏବେ ବି ନିଷ୍ପେଷିତ, ଅବହେଳିତ ଏବଂ ସେମାନଙ୍କର ଅବସ୍ଥାରେ କୌଣସି ପରିବର୍ତ୍ତନ ଘଟିନାହିଁ ଯଦିଓ ସେମାନଙ୍କୁ କିଛି ସୁବିଧା ଓ ସୁଯୋଗ ପ୍ରଦାନ କରାଯାଇଛି । ସେ ଉଲ୍ଲେଖ କରିଥିଲେ ଦଳିତ ବର୍ଗଙ୍କର ଦୁଇଟି ଶତ୍ରୁ (୧) ବ୍ରାହ୍ମଣବାଦ (୨) ପୁଞ୍ଜିବାଦ । କିନ୍ତୁ ଏହା ବିରୁଦ୍ଧରେ ସଂଗ୍ରାମ କରିବାର ମାର୍ଗ କ'ଣ ଥିଲା ? କେବଳ ଗଣତାନ୍ତ୍ରିକ ପଦ୍ଧତି ପ୍ରୟୋଗରେ ନୁହେ, ବରଂ ଶ୍ରେଣୀ ସଂଘର୍ଷ ଜରିଆରେ । ଏବଂ ଏ ଶ୍ରେଣୀ ସଂଘର୍ଷ ବେଳେ ଅନ୍ୟାନ୍ୟ ରାଜନୈତିକ ଦଳମାନେ ଯେଉଁମାନେ ସେଥିରେ ବିଶ୍ୱାସ କରନ୍ତି, ସେମାନଙ୍କର ସହଯୋଗ ନେଇ । କିନ୍ତୁ ଆମ୍ବେଦକର ତାହା କରି ପାରିନଥିଲେ । ଏହା ତାଙ୍କ ରାଜନୈତିକ ଚିନ୍ତନର ତ୍ରୁଟି ବୋଲି କୁହାଯାଇପାରେ ।

ଆମ୍ବେଦକର ଯଦିଓ ଥିଲେ ସାମାଜିକ ବିପ୍ଳବୀ କିନ୍ତୁ ତାଙ୍କର ବିଚାରକୁ 'ସାମାଜିକ ମାନବତାବାଦ' ପର୍ଯ୍ୟାୟ ଅନ୍ତର୍ଭୁକ୍ତ କରାଯାଇପାରେ । ଭାରତରେ ରାଜନୈତିକ ଆଦର୍ଶ ଓ ସାମାଜିକ ଆଦର୍ଶ ପରସ୍ପର ପରସ୍ପରର ବିରୋଧୀ । ଆମ୍ବେଦକର ବିଚାର କରୁଥିଲେ ଯେ ସଂଖ୍ୟା ଗରିଷ୍ଠ ଲୋକମାନଙ୍କର ରାଜନୈତିକ ଆଦର୍ଶ ସମସ୍ତ ଲୋକଙ୍କର ସାମାଜିକ ଆଦର୍ଶରେ ରୂପାନ୍ତରିତ ହେବ । ସେ ରାଜନୀତିରେ ପ୍ରାଧାନ୍ୟ ବିସ୍ତାର କରିନଥିଲେ ହେଁ କେତେକ ରାଜନୈତିକ ନିଷ୍ପତ୍ତିକୁ ପ୍ରଭାବିତ କରିଥିଲେ । ଏପରିକି ନିଜେ ଦଳିତ ବର୍ଗର ନେତା ହୋଇମଧ୍ୟ ଭାରତୀୟ ରାଜନୀତିକୁ ଧର୍ମନିରପେକ୍ଷ କରିବାକୁ ଚେଷ୍ଟା କରିଥିଲେ ।

ଦଳିତ ଆନ୍ଦୋଳନ ବିଶେଷ କରି ଶ୍ରେଣୀ ବ୍ୟବସ୍ଥାର ପ୍ରଶ୍ନ ନେଇ ବାମପନ୍ଥୀ ଆନ୍ଦୋଳନ ହାତଧରାଧରି ହୋଇ ଚାଲୁନଥିଲେ । ଆମ୍ବେଦକର ଜାତିକୁ "air tight division of labourers" କହିବା ବେଳେ ମାର୍କସ ଏହାକୁ "division of labourers by races" ବୋଲି ବର୍ଣ୍ଣନା କରିଥିଲେ । ଯଦିଓ ଏହି ଦୁଇଟି ବିଚାର ଏକା କିନ୍ତୁ ଉଭୟଙ୍କୁ ଏକତ୍ର କରି ରାଜନୈତିକ ପଦକ୍ଷେପ (Intervention) କରାଯାଇପାରିନାହିଁ । ଭାରତର ଭବିଷ୍ୟତ ବୈପ୍ଳବିକ କାର୍ଯ୍ୟକ୍ରମ ପାଇଁ "ମାର୍କସ କିମ୍ବା ଆମ୍ବେଦକର" ନ ହୋଇ "ମାର୍କସ ଓ ଆମ୍ବେଦକର" ଦିଗ ନିର୍ଦ୍ଦେଶରେ ନୀତି ହେବା ଉଚିତ୍ ସମ୍ପର୍କରେ ବିଚାର କରାଯାଇପାରେ ।

ଆମ୍ବେଦକର ନୂତନ ପିଢ଼ି ମାନ୍ଙ୍କ ଉପରେ ତାଙ୍କର ଆସ୍ଥା ସ୍ଥାପନ କରିପାରିନଥିଲେ । ସେ ଲକ୍ଷ୍ୟ କରି ଦେଖିଥିଲେ ନୂତନ ପିଢ଼ି ଯେତେ ସୁଖସ୍ୱାଚ୍ଛନ୍ଦ୍ୟ ପାଇବା ପାଇଁ ବ୍ୟସ୍ତ, ସେତେ ଆଦର୍ଶ ପ୍ରତି ଆଗ୍ରହାନ୍ୱିତ ନୁହନ୍ତି । ଆଦର୍ଶ, ନୀତି ଓ କାର୍ଯ୍ୟ ବ୍ୟତୀତ ରାନାଡେ, ତିଲକ ଓ ଗୋଖଲେଙ୍କ ପରି ଯୁଗସ୍ରଷ୍ଟା ବ୍ୟକ୍ତିବିଶେଷ ଜନ୍ମହେବେ ନାହିଁ ।

ଆମ୍ବେଦକର ଦଳିତ ଶ୍ରେଣୀମଧ୍ୟରେ ଆତ୍ମସମ୍ମାନ ଜାଗ୍ରତ କଲେ ଓ ରାଜନୀତି ପ୍ରତି ଆଗ୍ରହ ସୃଷ୍ଟି କଲେ । କିନ୍ତୁ ଅର୍ଥନୈତିକ ସ୍ୱାବଲମ୍ବନଶୀଳତା ପାଇଁ ଏବେ ବି ଅନ୍ୟ ଉପରେ ନିର୍ଭର କରିବାକୁ ପଡେ ଯାହା ଦଳିତମାନଙ୍କର ଉନ୍ନତିମାର୍ଗର ବାଧକ ।

ବର୍ତ୍ତମାନ ଭାରତର ଅବକ୍ଷୟମୁଖୀ ରାଜନୈତିକ ମୂଲ୍ୟବୋଧ, ବ୍ୟକ୍ତିଗତ ଅଭିଳାଷାକୁ ଚରିତାର୍ଥ କରୁଥିବା ରାଜନୈତିକ ନେତାମାନଙ୍କର ପରିଣତ ହୋଇଥିବା ଭାରତର ରାଜନୀତି, ମନ୍ଦିର ମସ୍‌ଜିଦ୍ ଦ୍ୱନ୍ଦ ଓ ଜାତୀୟତାବାଦର ସ୍ଲୋଗାନରୁ ଜନ୍ମ ନେଉଥିବା ସାମ୍ପ୍ରଦାୟିକତାବାଦୀ ରାଜନୀତି ଭାରତରେ ଏକ ନୂତନ ବିପ୍ଳବର ପୂର୍ବାଭାସ । ଏହି ନୂତନ ରାଜନୈତିକ ବିପ୍ଳବର ସୂତ୍ର ଆମ୍ବେଦକରଙ୍କ ବିଚାର ମଧ୍ୟରେ ନିହିତ ।

ବିଂଶ ଶତାବ୍ଦୀ ନବଜାଗରଣର ସୁମହାନ ପୁଷ ବାବାସାହେବ ଆମ୍ବେଦକରଙ୍କର ଦୁଃଖ ଓ ନିରାଶାଜନକ ମୃତ୍ୟୁ ନୂତନ ବିପ୍ଳବ ପାଇଁ ଆହ୍ୱାନ କରେ ଏବଂ ପ୍ରେରଣାର ମାର୍ଗ ଭାବରେ ଏବେ ବି ଆଲୋକ ପ୍ରଦାନ କରେ । ସେଥିପାଇଁ ତାଙ୍କୁ ଭାରତରତ୍ନରେ ଭୂଷିତ କରି ଏ ଜାତି ଓ ଦେଶ ସେହି ଆଲୋକକୁ ଉଜ୍ଜୀବିତ କରି ରଖିବାକୁ ଚେଷ୍ଟା କରିଛି ।



# BIBLOGRAPHY


1. Dr. Ambedkar - Life & Mission - Dhananjay Keer
   Popular Prakashan, Bombay - 1990 Edn.
2. Ambedkar - A critical Study - W.N. Kuber.
   Peoples' Publishing House,
   New Delhi - Edn. March, 1991
3. A Champion of Human Rights - R.H. Deshpande,
   Rastriya Sanskrutik Seva Samiti
   Thane - Edn. 1990
4. Gandhi, Ambedkar and the Exptirpation
   of untouchability - Hirendranath Mukherjee
   Peoples' Publishing House
   New Delhi - Edn. 1992
5. The Legacy of Dr. Ambedkar - D.H. Ahir
   D.K. Publishers Distributors (P) Ltd.
   New Delhi Edn. 1990
6. Dr. B.R. Ambedkar. The Man and his message
   Edited by Sudarshan Agarwal,
   Rajya Sabha Secretariat - Edn.1991
7. B.R. Ambedkar - W.N. Kuber
   Publication Division,
   New Delhi - Edn. 1990.
8. B.R. Ambedkar and Human Rights
   B.K. Ahluwalia, Sashi Ahluwalia
   Manas Publication
   New Delhi - Edn. 1990

9. Dr. Ambedkar - Life & Mission in Hindi
By L.R. Bali
Sumat Prakashan Co. Nagpur Edn. 1987

10. Dr. Babasaheb Ambedkar (Hindi)
By Basant Mun.
Translated. Presant Pande
National Book Trust, New Delhi - Edn. 1991.

11. Dr. Ambedkar - A Memorial Album
Editor - Dhananjaya Keer
Popular Prakashan
Bombay - Edn. 1982

12. Babasaheb Ambedkar - 2nd Edn. 1998
K. Rahavendra Rao
Sahitya Ekademi,
New Delhi.

13. Dr. Babasheb Ambedkar - Writing and
Speeches Vol.1 to 8
Education Deptt.
Govt. of Maharastra, Bombay - 1987





ଶ୍ରୀଯୁକ୍ତ ସୌରୀବଂଧୁ କର ବିଂଶଶତକ ଓଡ଼ିଆ ଗଦ୍ୟ ସାହିତ୍ୟର ଅନ୍ୟତମ କୃତବିଦ୍ୟ ସାଧକ ଭାବରେ ସୁପରିଚିତ । ଜଣେ ସୁସାହିତ୍ୟିକ, ସ୍ତମ୍ଭକାର ଓ ସଂଗଠକ ଭାବରେ ସେ ଜଣେ ଉଲ୍ଲେଖଯୋଗ୍ୟ ବ୍ୟକ୍ତିତ୍ୱ । ତାଙ୍କ ଲେଖନୀରେ ମଣିଷର ସାମାଜିକ, ଆଧ୍ୟାତ୍ମିକ ଓ ଆବେଗଗତ ସମସ୍ୟାଠାରୁ ଆରମ୍ଭ କରି ରାଜ୍ୟର, ଦେଶର ଓ ସମଗ୍ର ବିଶ୍ୱର ବହୁବିଧ ସମସ୍ୟା ରୂପାୟିତ । ତାଙ୍କର ଲେଖନୀ ଓ କାର୍ଯ୍ୟ ମାଧ୍ୟମରେ ଅବହେଳିତ ଓ ନିଷ୍ପେଷିତଙ୍କର ସାମାଜିକ ଉନ୍ନତି ଆଣିବାରେ ସେ ସତତ ସଂଗ୍ରାମରତ । ତାଙ୍କର ପ୍ରତ୍ୟେକ ଲେଖା ପାଠକକୁ ଏକ ସ୍ୱଚ୍ଛ ଓ ଉଦାର ଦୃଷ୍ଟିଭଙ୍ଗୀ ଦେବାସହ ସାଧନାରେ ବ୍ରତୀ ହେବାକୁ ଉତ୍ସାହିତ କରେ ।

ଓଡ଼ିଶା ତଥା ଭାରତର ବହୁ ସାହିତ୍ୟ ଓ ଶ୍ରମିକ ସଂଗଠନ ସହ ସଂପୃକ୍ତ ଶ୍ରୀଯୁକ୍ତ କର ବର୍ତ୍ତମାନ ଅଖିଳ ଭାରତ ଟ୍ରେଡ୍ ୟୁନିୟନ କଂଗ୍ରେସ, ଓଡ଼ିଶା ରାଜ୍ୟ କମିଟିର ସାଧାରଣ ସଂପାଦକ ।

-ପ୍ରକାଶକ

I.S.B.N.- 81-87989-24-6